ଓଁ ପରଂବ୍ରହ୍ମଣ ଶ୍ରୀ ଗୁରୁ ଅଚ୍ୟୁତ ଗୋଲୋକନାଥାୟ ନମଃ



ବ୍ୟାସୋଶାସ୍ତ୍ରୋପବନତଃ ସୁମନାଂସି ବିଚିନ୍ୱତା ।
ପ୍ରଣୀତଂ ପ୍ରବୁଦ୍ଧଦତ୍ତେନ ମାଳା 'ଭଗବତୀ କଥା' ॥

: ଶ୍ରୀ ହରି :

# ଭାଗବତ କଥା

( ଅଷ୍ଟଚତ୍ୱାରିଂଶତ୍ ଖଣ୍ଡ )


ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଶ୍ରୀ ନୃସିଂହ ପ୍ରସାଦ ମିଶ୍ର

ଅନୁବାଦ :

ପଣ୍ଡିତ ଉପେନ୍ଦ୍ର ନାଥ ହୋତା



ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

( ଅଷ୍ଟଚତ୍ୱାରିଂଶତ୍ ଖଣ୍ଡ )

ପ୍ରକାଶକ :
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ—୧୯୯୫

ପ୍ରକାଶନ ଉପଦେଷ୍ଟା :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର

ମୁଦ୍ରଣ :
ଶଶିକା ପ୍ରିଣ୍ଟିଂ ପ୍ରେସ
ଅଲିଶାବଜାର, କଟକ-୨

ମୂଲ୍ୟ : ଟ ୩୦-୦୦

# BHAGABATA KATHA

48th Part

*Publisher* :
Cuttack Students' Store
Balubazar, Cuttack-753002

*Publication Adviser* :
Sri N. P. Misra

First Edition : 1995

Price : Rs. 30-00

# ସୂଚୀ

# ଭଗବାନଙ୍କର ସପ୍ତମ ବିବାହ

ବରଂ ବିଲୋକ୍ୟାଭିମତଂ ସମାଗତଂ
ନରେନ୍ଦ୍ରକନ୍ୟା ଚକମେ ରମାପତିମ୍ ।
ଭୂୟାଦୟଂ ମେ ପତିରାଶିଷୋଽନଳାଃ
କରୋତୁ ସତ୍ୟା ଯଦି ମେ ଧୃତୋ ବ୍ରତୈଃ ।। *

( ଶ୍ରୀ ଭା. ୧୦ ସ୍କ. ୫୮ ଅ. ୩୬ ଶ୍ଳୋକ )

## ଛପ୍ପୟ

ଭୟୋ ସାତବୋଂ ବ୍ୟାହ ଶ୍ୟାମକୋ ସତ୍ୟା ସଁଗ ମହଁ ।
କୋଶଲେମଜୀ ସୁତା ସୁନ୍ଦରୀ ସୁବିଦିତ ଜଗ ମହଁ ।।
ନୃପ ପ୍ରନ କୀୟୋ ସାତ ବୈଲ ଜୋ ନାଥେ ଭୂପତି ।
ତାକୁଁ କନ୍ୟା ଦେହୁଁ ସୁନତ ତହଁ ପହୁଁଚେ ଶ୍ରୀପତି ।।
ପ୍ରନ ସୁନି ଉତରେ ଫେଂଟ କସି, ସାତ ରୁପ ହରି ଧରି ଲୟୋ ।
ହଁସତ ହଁସତ ନାଥେ ବୃଷଭ, ନିରଖି ମୁଦିତ ସବ ଜନ ଭୟୋ ।।

ଭଗବାନ୍ ଭକ୍ତକୁ ଦେଖନ୍ତି । ସେ ବାହ୍ୟବସ୍ତୁ ଆଡ଼କୁ ଧ୍ୟାନ ଦିଅନ୍ତି ନାହିଁ । ଭକ୍ତ ମନରେ ଶଙ୍କା ହେଲେ ସେ ତାହାର ସମାଧାନ କରନ୍ତି । ଯଦି ବିଶ୍ୱାସ ଦୃଢ଼

---

* ରାଜକୁମାରୀ କୃଷ୍ଣେ ଚାହିଁ । ଆନନ୍ଦ ମନେ ବିଚାରଇ ।।
ପୂର୍ବେ ମୋହର ତପ ଯେବେ । ସାଧିଲି ଅଛୁ ଶୁଦ୍ଧଭାବେ ।।
ଇଷ୍ଟଦେବତା ହୋଇ ତୋଷ । ସଫଳ କରିବେ ମୋ ଆଶ ।।
ଅଶେଷ-ବ୍ରହ୍ମାଣ୍ଡର ପତି । ହେ ମୋର ହେଉ ପ୍ରାଣପତି ।।

( ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ : ୬୩ ଅ.)

ଯାଇଥାଏ, ତାହାହେଲେ ସେ ବିଶ୍ୱାସ ଦୃଢ଼ କରନ୍ତି, ଅସମ୍ଭବ ଘଟଣା ଦର୍ଶନ କରନ୍ତି, ଅସମ୍ଭବକୁ ସମ୍ଭବ କରାଇ ସେ ଦେଖାନ୍ତି; କିନ୍ତୁ ଭକ୍ତର ତାଙ୍କଠାରେ ଦୃଢ଼ ବିଶ୍ୱାସ ଥିବା ଏକାନ୍ତ ଆବଶ୍ୟକ । ଦୃଢ଼ ବିଶ୍ୱାସ ହେଲେ ଭଗବାନ ବିଶ୍ୱେଶ୍ୱର ଦର୍ଶନ ଦିଅନ୍ତି ।

ସୂତ କହୁଛନ୍ତି—"ମୁନିଗଣ ! ମୁଁ ଆପଣମାନଙ୍କୁ ଭଗବାନଙ୍କର ଷଷ୍ଠ ବିବାହ ପର୍ଯ୍ୟନ୍ତ କଥା କହିଥିଲି । ଏବେ ଆପଣମାନେ ତାଙ୍କର ସପ୍ତମ ବିବାହ କଥା ଶ୍ରବଣ କରନ୍ତୁ ।

ଯେଉଁ ସମୟରେ ଦ୍ୱାରକାରେ ଭଗବାନ ପ୍ରକଟ ଲୀଳା ପ୍ରଦର୍ଶନ କରୁଥିଲେ, ସେହି ସମୟରେ କୋଶଳ ଦେଶରେ ନଗ୍ନଜିତ ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ସେ ଅତ୍ୟନ୍ତ ଭଗବଦ୍‌ଭକ୍ତ ଓ ଧାର୍ମିକ ପ୍ରକୃତିର ରାଜା ଥିଲେ । ତାଙ୍କର ଧାର୍ମିକତା ସର୍ବତ୍ର ବିଦିତ ଥିଲା । ତାଙ୍କର ନାଗ୍ନଜିତୀ ନାମରେ ଏକ କନ୍ୟା ଥିଲା । ନଗ୍ନଜିତ୍‌ଙ୍କର କନ୍ୟା ହୋଇଥିବାରୁ, ତାଙ୍କୁ ନାଗ୍ନଜିତୀ କୁହାଯାଉଥିଲା । ତାହାର ପ୍ରକୃତ ନାମ ଥିଲା 'ସତ୍ୟା' । ସତ୍ୟା ଅତ୍ୟନ୍ତ ସୁନ୍ଦରୀ, ସୁଶୀଳା ତଥା ସର୍ବଗୁଣସମ୍ପନ୍ନା ଥିଲା । ସେ ବିବାହ ଯୋଗ୍ୟା ହେବାରୁ ଅନେକ ରାଜା ତାଙ୍କୁ ବିବାହ କରିବାକୁ ଚାହିଁଲେ । ରାଜା ଚାହୁଁଥିଲେ, ତାଙ୍କ କନ୍ୟାର ବିବାହ କିପରି ଭଗବାନ୍ ଯାଦବେନ୍ଦ୍ରଙ୍କ ସହିତ ହେଉ । କିନ୍ତୁ ସେ କୌଣସି ରାଜାଙ୍କୁ ପ୍ରତ୍ୟକ୍ଷରେ ମନା କରିପାରୁ ନଥିଲେ । ତେଣୁ ସେ ଏଥିପାଇଁ ଏକ ପଣ ରଖିଲେ । ରାଜା ବଡ଼ ବଡ଼ ମୁନିଆଁ ଶିଙ୍ଗ ବିଶିଷ୍ଟ, ଅତ୍ୟନ୍ତ ହୃଷ୍ଟପୁଷ୍ଟ, ଅତ୍ୟନ୍ତ ମାରଣା ସାତଟି ଷଣ୍ଢ ପାଳିଥିଲେ, ସେମାନେ ଏତେ କ୍ରୋଧୀ ଥିଲେ ଯେ, ମନୁଷ୍ୟର ଗନ୍ଧ ପାଇବା ମାତ୍ରେ ତାଙ୍କୁ ଆକ୍ରମଣ କରୁଥିଲେ । କେହି ସାଧାରଣତଃ ଗୋଟିକୁ କୌଣସି ପ୍ରକାରେ ଧରି ନେଉଥିଲେ ମଧ୍ୟ ସେହି ସାତଟି ଯାକ ଅତ୍ୟନ୍ତ ଦୁର୍ଦ୍ଧର୍ଷ ଥିଲେ । କୋଶଳେଶ ମହାରାଜ ନଗ୍ନଜିତ୍ ପ୍ରତିଜ୍ଞା କରିଥିଲେ ଯେ ଯେଉଁ ରାଜା ମୋର ଏହି ସାତଟି ଷଣ୍ଢଙ୍କୁ ଏକସଙ୍ଗେ ସେମାନଙ୍କ—ନାକ ଫୋଡ଼ି, ରସିବାନ୍ଧି ବଶ କରିପାରିବେ ତାଙ୍କ ସହିତ ସେ ନିଜର ସର୍ବସୁଲକ୍ଷଣସମ୍ପନ୍ନା ସୁଶୀଳା ସତ୍ୟାଙ୍କୁ ବିବାହ ଦେବେ ।

ଏହି ସମାଚାର ଶୁଣି ନିଜ ନିଜକୁ ଅତି ବଳବାନ୍ ମନେ କରୁଥିବା ବହୁତ ରାଜା ଓ ରାଜକୁମାର ସେଠାକୁ ଆସିଲେ । ଯଦି ଅସ୍ତ୍ରଶସ୍ତ୍ର ବ୍ୟବହାର କରିବାକୁ ପାଉନ୍ତା, ତାହାହେଲେ ଲଢ଼ିବା ପାଇଁ ସେମାନେ ଧନୁର୍ବେଦର କଳା ପ୍ରଦର୍ଶନ କରି କେହି ହେଲେ ପଣରେ ଜୟଯୁକ୍ତ ହୋଇ କନ୍ୟାକୁ ବିବାହ କରନ୍ତେ । ଷଣ୍ଢ ସହିତ ଲଢ଼ିବା ତଥା ଗୋଟିଏ ଷଣ୍ଢ ବି ନୁହେଁ ଏକ ସଙ୍ଗେ ସାତଟି ଷଣ୍ଢଙ୍କ ସହିତ ଲଢ଼ିବା କୌଣସି ସାଧାରଣ ଲଢ଼େଇ ନୁହେଁ । ଯେଉଁ ରାଜା ଲଢ଼ିବାକୁ ଆସିଲେ ସେ କ୍ଷତବିକ୍ଷତ ଶରୀର ହୋଇ ପଳାୟନ ଦେଲେ । ଷଣ୍ଢ କେତେକ ରାଜାଙ୍କ ପେଟକୁ ଶିଙ୍ଗରେ ଭୁସି ଫଟାଇ ଦେଲେ ଓ କେତେକ ରାଜାଙ୍କର ଆଖି ଫଟାଇଦେଲେ । କେତେକ ରାଜାଙ୍କର ହାତଗୋଡ଼ ମଧ୍ୟ

ଚନ୍ଦ୍ରା ଜର ଚ୍ଚେଷ୍ଟା କେମିଁ କରିଦେଲେ । ଏହିପରି ହଜାର ହଜାର ବଡ଼ ବଡ଼ କ୍ଷତ୍ରିୟ କ୍ଷତ୍ରୀଙ୍କ ସହିତ ଯୁଦ୍ଧ କରି ଅଙ୍ଗହୀନ ହୋଇ ଲଜ୍ଜାରେ ଫେରିଗଲେ ।

ଭଗବାନ ଯେତେବେଳେ ଏ ଘଟଣା ଶୁଣିଲେ ଯେ ସାତଟି ଷଣ୍ଢଙ୍କର ନାକ ଫୋଡ଼ି, ତନ୍ଥିରେ ରସିବାନ୍ଧି ତାଙ୍କୁ ଆୟତ୍ତ କରି ପାରିଲେ ସୁନ୍ଦରୀ କୈକେୟୀ ମିଳି ପାରିବ, ସେତେବେଳେ ସେ ଆଉ କାଳବିଳମ୍ବ ନକରି ସେନା ସଜ କରି ଅଯୋଧ୍ୟାପୁରୀ (କୋଶଳ) ଅଭିମୁଖେ ଅଗ୍ରସର ହେଲେ । ଭଗବାନ ଚିନ୍ତାକଲେ, ମୁଁ ରାମ ଅବତାରରେ ତ ଅଯୋଧ୍ୟାପୁରୀରେ ଜନ୍ମ ଗ୍ରହଣ କରିଥିଲି, ଏବେ ସେଠାକୁ ଯାଇ ମୋର ଶ୍ୱଶୁରାଳୟ କରିନେବି । ଅଧା ସମ୍ବନ୍ଧ ତ ଆଗରୁ ହୋଇ ସାରିଛି । ଷଣ୍ଢ ମାନଙ୍କର ନାକ ଫୋଡ଼ିବାଟା ମୋ ପକ୍ଷେ ବଡ଼ କଥା ନୁହେଁ । ପିଲାଦିନୁ ମୁଁ ତ ଏହିସବୁ କାମ କରିଆସୁଛି । ବ୍ରଜରେ ରହି ହଜାର ହଜାର ଅଣ୍ଡିରା ବାଛୁରିଙ୍କର ମୁଁ ନାକ ଫୋଡ଼ିଛି । ଏହି କଥା ଚିନ୍ତାକରି ସେ ଅବଧପୁରୀରେ ସେନା ସହିତ ଯାଇ ପହଞ୍ଚିଗଲେ ।

ମହାରାଜ ନଗ୍ନଜିତ୍ ଯେତେବେଳେ ଶୁଣିଲେ ଯେ, ଯାଦବେନ୍ଦ୍ର ଆସୁଛନ୍ତି, ସେତେବେଳେ ସେ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ସଙ୍ଗେ ସଙ୍ଗେ ଯାଇ ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତିରେ ତାଙ୍କର ସ୍ୱାଗତ ସତ୍କାର କଲେ । ଆସନାଦି ଦେଇ ପୂଜା କଲେ ଓ ହାତଯୋଡ଼ି କହିଲେ, 'ହେ ଯଦୁନନ୍ଦନ ! ଆପଣ ନିଜର ଦୈବଦୁର୍ଲ୍ଲଭ ଦର୍ଶନ ଦେଇ ଏ ସାଧନହୀନ ସାଧନ ବିହୀନ ଦାସକୁ କୃତାର୍ଥ କଲେ । ହେ ବୃଷ୍ଣିବଂଶାବତଂସ ! ମୁଁ ଆପଣଙ୍କର କି ସେବା କରିବି, ଆଜ୍ଞା ଦିଅନ୍ତୁ ।'

ଭଗବାନ କହିଲେ—"ରାଜନ୍ ! ଆପଣ ପରମଧାର୍ମିକ, ଆପଣଙ୍କ ପ୍ରଶଂସା ଶୁଣି ମୁଁ ଆପଣଙ୍କ ଦର୍ଶନ ନିମିତ୍ତ ଆସିଅଛି । ଆପଣ ଆସନ, ପାଦ୍ୟଅର୍ଘ୍ୟାଦି ଦ୍ୱାରା ମୋର ଯେଉଁ ସ୍ୱାଗତ ସତ୍କାର କଲେ, ତାହା ମୁଁ ଆନନ୍ଦରେ ସ୍ୱୀକାର କଲି । ଏବେ ମୁଁ ଆପଣଙ୍କୁ ଏକ ସାମାନ୍ୟବସ୍ତୁ ଯାଚଜ୍ଞା କରୁଛି ?"

ରାଜା ଏହା ଶୁଣି ଅତ୍ୟନ୍ତ ଉଲ୍ଲାସର ସହିତ କହିଲେ—"ମାଧବ ! ଅନ୍ୟକୁ ତ ଯାଚଜ୍ଞା କରାଯାଏ । ଏ ରାଜ୍ୟ, ମୁଁ ଓ ମୋର ପରିବାର ସବୁକିଛି ତ ଆପଣଙ୍କର । ଆପଣ ଆଜ୍ଞା କରନ୍ତୁ, ମୁଁ କେଉଁ ବସ୍ତୁଦ୍ୱାରା ଆପଣଙ୍କର ସେବା କରିବ ?" ଏହାଶୁଣି ଭଗବାନ୍ କିଛି କହିବାକୁ ଯାଉଥିଲେ; କିନ୍ତୁ ଲାଜରେ ଅଟକିଗଲେ । ରାଜା ସଙ୍ଗେ ସଙ୍ଗେ କହିଲେ, "ଯଦୁନନ୍ଦନ ! ଆପଣ ଲାଜ ନକରି ମୋତେ ଆଜ୍ଞା କରନ୍ତୁ ।"

ଏହା ଶୁଣି ଭଗବାନ କହିଲେ—"ରାଜନ୍ ! ଦେଖନ୍ତୁ, ଏ ସଂସାରରେ ଯାଚଜ୍ଞା କରିବା ଅତି ନିନ୍ଦନୀୟ କଥା । ଯାଚକଙ୍କୁ ଦେଖି ସମସ୍ତେ ଘୃଣା କରନ୍ତି । ବ୍ରାହ୍ମଣ ହୋଇ ଯଦି ଯାଚଜ୍ଞା କରନ୍ତି, ତେବେ ତାହା ସ୍ୱାଗତଯୋଗ୍ୟ । ବ୍ରାହ୍ମଣଙ୍କ ପାଇଁ ବିଧାତା ଏହି

ବୃତ୍ତି ସ୍ଥିର କରିଛନ୍ତି, କିନ୍ତୁ ଧର୍ମରେ ସ୍ଥିତ କ୍ଷତ୍ରିୟଙ୍କ ପକ୍ଷେ ଯାଚଜ୍ଞା କରିବା ନିନ୍ଦିତ କଥା ବୋଲି ବିଦ୍ୱାନମାନେ କହିଯାଇଛନ୍ତି । ଯେଉଁ କ୍ଷତ୍ରିୟ ଅନାପଦ୍ କାଳରେ ଯାଚଜ୍ଞା କରେ, ସେ କ୍ଷତ୍ରିୟତ୍ୱରୁ ପତିତ ହୁଏ । ତଥାପି ମୁଁ ଯେଉଁ ବସ୍ତୁ ଯାଚଜ୍ଞା କରିବାକୁ ଚାହୁଁଛି, ତାହା ସେପରି କୌଣସି ଅସମ୍ଭବ ବସ୍ତୁ ନୁହେଁ । ସେହି ବସ୍ତୁ ଯୋଗୁ ହିଁ ଆମ ନିଜ ନିଜ ମଧ୍ୟରେ ପ୍ରେମଭାବ ବଢ଼ିବ ଓ ସମ୍ବନ୍ଧ ସ୍ଥାପିତ ହେବ । ଉଭୟଙ୍କ ମଧ୍ୟରେ ଆନନ୍ଦୋଲ୍ଲାସ ବୃଦ୍ଧି ପାଇବ ।"

ମହାରାଜ ନଗ୍ନଜିତ୍ କହିଲେ—"ତେବେ ଆପଣ ଆଜ୍ଞା କରନ୍ତୁ ବାସୁଦେବ !"

ଭଗବାନ କହିଲେ—"ମୁଁ ଶୁଣିଛି, ଆପଣଙ୍କର ଏକ କନ୍ୟା ଅଛି, ସେ ଅତ୍ୟନ୍ତ ସୁଶୀଳା, ସର୍ବଗୁଣସମ୍ପନ୍ନା ଓ ବିବାହ ଯୋଗ୍ୟା । ମୁଁ ତାଙ୍କୁ ହିଁ ଯାଚଜ୍ଞା କରିବାକୁ ଆସିଅଛି ।

ଏହା ଶୁଣି କୋଶଳେନ୍ଦ୍ର ମହାରାଜ ଅତି ଆନନ୍ଦରେ କହିଲେ—"ଦ୍ୱାରକାନାଥ ! ମୁଁ ବଡ଼ ଭାଗ୍ୟବାନ୍ । ଯାହାଙ୍କ ଅଙ୍ଗରେ ନିରନ୍ତର ଲକ୍ଷ୍ମୀ ନିବାସ କରୁଛନ୍ତି, ସେହି ସର୍ବେଶ୍ୱର, ସର୍ବଗୁଣ ସମ୍ପନ୍ନ ଆପଣ ଯଦି ମୋର କନ୍ୟାକୁ ଗ୍ରହଣ କରନ୍ତି, ତାହାହେଲେ ମୋର ଏକୋଇଶ ପୁରୁଷ ଉଦ୍ଧାର ହୋଇଯିବେ ଓ ମୁଁ ଧନ୍ୟ ହେବି । ଆପଣଙ୍କ ପରି ବର ସଂସାରରେ ଅନ୍ୟତ୍ର ପାଇବା ମୋ ପକ୍ଷେ ଦୁଃସାଧ୍ୟ । କିନ୍ତୁ ହେ ସାତ୍ୱତର୍ଷଭ ! ମୁଁ ଏଥିପାଇଁ ଏକ ପଣ କରିଛି, ତାହା ପୂର୍ଣ୍ଣ କରି ହିଁ ଆପଣ ମୋର କନ୍ୟାକୁ ଲାଭ କରିପାରିବେ ।"

ଭଗବାନ କହିଲେ—"ତେବେ କି ପଣ କରିଛନ୍ତି ଆପଣ ମୋତେ କୁହନ୍ତୁ । କିନ୍ତୁ ଗୋଟିଏ କଥା ମନେ ରଖନ୍ତୁ, ଅନେକ କୁଳରେ ଏପରି ନିନ୍ଦନୀୟ ପ୍ରଥା ଅଛି ଯେ, ବର ପକ୍ଷରୁ କନ୍ୟାର କିଛି ମୂଲ୍ୟ ଗ୍ରହଣ କରିସାରି କନ୍ୟା ପ୍ରଦାନ କରାଯାଏ । ଏପରି କନ୍ୟାର ସନ୍ତାନ ଶ୍ରାଦ୍ଧ ତର୍ପଣ କରିବାର ଯୋଗ୍ୟ ହୁଅନ୍ତି ନାହିଁ । ଏପରି ପ୍ରଥା ଆମର ଏଠାରେ ନାହିଁ କିମ୍ବା ଏଠାରେ କେହି ହେଲେ କନ୍ୟାର ଶୁଳ୍କ ନିଅନ୍ତି ନାହିଁ କି ଦିଅନ୍ତି ନାହିଁ ।"

ମହାରାଜ ନଗ୍ନଜିତ୍ ସଙ୍ଗେ ସଙ୍ଗେ କହିଲେ—"ନା, ନା, ଯଦୁନନ୍ଦନ ! ଆମ କୁଳରେ ଏପରି ପ୍ରଥା ନାହିଁ । କନ୍ୟାର ଧାନ୍ୟକୁ ଭଲା କେଉଁ କୁଳୀନ ପିତା ଖାଇ ପାରିବ ? ମୁଁ ତ ବରର ଶକ୍ତି ପରୀକ୍ଷା ପାଇଁ ଏକ ପଣ କରିଛି । ଯେଉଁ କ୍ଷତ୍ରିୟ ସେହି ପଣ ପୂର୍ଣ୍ଣ କରିଦେବ, ତା ସହିତ ମୁଁ ମୋର କନ୍ୟାକୁ ବିବାହ କରାଇ ଦେବି ।"

ଭଗବାନ କହିଲେ—"ସେହି ପଣ କଥା ମୋତେ ତେବେ କୁହନ୍ତୁ । ଯଦି ସମ୍ଭବ ହୁଏ, ତେବେ ମୁଁ ମଧ୍ୟ ତାହା ପୂର୍ଣ୍ଣ କରିବାକୁ ପ୍ରଯତ୍ନ କରିବି ।"

ମହାରାଜ ନଗ୍ନଜିତ୍ କହିଲେ—"ଦେଖନ୍ତୁ ମାଧବ ! ମୋ ନିକଟରେ ଅତି ତୀକ୍ଷ୍ଣ ଶିଙ୍ଗ ବିଶିଷ୍ଟ ଅତି ଦୁର୍ଦ୍ଦାନ୍ତ ସାତଟି ମାରଣା ଷଣ୍ଢ ଅଛନ୍ତି । ସେହି ଷଣ୍ଢମାନଙ୍କ ନାକକୁ ଯେଉଁ ବ୍ୟକ୍ତି ଫୋଡ଼ି ତାଙ୍କୁ ବଶ କରିପାରିବ, ତାଙ୍କ ସହିତ ମୋର କନ୍ୟାକୁ ମୁଁ ଆନନ୍ଦରେ ବିବାହ ଦେଇପାରିବି । ହେ ଯାଦବେନ୍ଦ୍ର ! ସେହି ଷଣ୍ଢମାନେ ଅନେକ ରାଜକୁମାରଙ୍କୁ କ୍ଷତବିକ୍ଷତ କରି ଅଙ୍ଗହୀନ କରି ଦେଇଛନ୍ତି । ଅନେକ ରାଜା ଅତି ଉତ୍ସାହରେ ସହିତ ଆସିଥିଲେ; କିନ୍ତୁ ହତୋତ୍ସାହ ହୋଇ ଫେରିଗଲେ । ଆପଣ ଯଦି ସେହି ଷଣ୍ଢମାନଙ୍କୁ ନିଜ ଦଳିତାର୍ଥରେ ବଶ କରିପାରିବେ, ତାହାହେଲେ ସତ୍ୟା ସହିତ ଆପଣଙ୍କର ବିବାହ ନିଶ୍ଚିତ ଭାବରେ ହେବ ।"

ଏହା ଶୁଣି ଭଗବାନ କହିଲେ—"ତେବେ ଠିକ୍ ଅଛି, ମୁଁ କାଲି ପରୀକ୍ଷା କରିବି । ଆପଣଙ୍କ ପ୍ରତିଜ୍ଞାକୁ ଭଙ୍ଗକରି କନ୍ୟାକୁ ନେବା ପାଇଁ ମୁଁ ପ୍ରସ୍ତୁତ ନାହିଁ ।"

କୋଶଳେନ୍ଦ୍ର ମହାରାଜ ଏହା ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ । ଏହି ସମାଚାର ସଙ୍ଗେ ସଙ୍ଗେ ସାରା ରାଜ୍ୟରେ ପ୍ରଘଟ ହୋଇଗଲା । ଲକ୍ଷ ଲକ୍ଷ ନରନାରୀ ଭଗବାନଙ୍କ ଦର୍ଶନ ପାଇଁ ଓ ଏହି ଖେଳ ଦେଖିବା ପାଇଁ କୋଶଳ ପୁରକୁ ଆସିବାକୁ ଲାଗିଲେ ।

ରାଜକୁମାରୀ ସତ୍ୟା ଯେତେବେଳେ ଘରେ ଲୁଚିରହି ଝରକା ଫାଙ୍କରେ ଶ୍ୟାମସୁନ୍ଦରଙ୍କୁ ଦର୍ଶନ କଲେ, ସେତେବେଳେ ତାଙ୍କର ସର୍ବାଙ୍ଗ ଶିଥିଳ ହୋଇଗଲା । ତାଙ୍କ ପିତାଙ୍କର ପଣ ଯୋଗୁଁ ସେ କ୍ଷୋଭ ପ୍ରକାଶ କଲେ । ସେ ସର୍ବାନ୍ତଃକରଣରେ ଶ୍ୟାମସୁନ୍ଦରଙ୍କ ଚରଣ କମଳରେ ନିଜକୁ ସମର୍ପିତ କରିଦେଲେ । ମନେ ମନେ ଦେବଦେବୀଙ୍କୁ ସ୍ମରଣ କଲେ । କହିଲେ ହେ ଦେବଦେବୀଗଣ ! ମୋର ମନକାମନା ପୂର୍ଣ୍ଣ କର । ଭଗବାନ ଶ୍ୟାମସୁନ୍ଦର ଯେପରି ମୋତେ ନିଜ ଚରଣର ଦାସୀ ରୂପେ ସ୍ୱୀକାର କରନ୍ତୁ । ଏହିପରି ଚିନ୍ତାକରି ରାଜକୁମାରୀ ଭଗବାନଙ୍କର ଭୁବନମୋହନ ରୂପକୁ ଧ୍ୟାନ କରି ପ୍ରେମାଶ୍ରୁ ବିସର୍ଜନ କରିବାକୁ ଲାଗିଲେ । ପ୍ରେମରେ ନିରନ୍ତର ଶଙ୍କା ଉପୁଜେ । ତାଙ୍କର କେବେ କେବେ ଭୟଜାତ ହେଉଥାଏ ଯେ ସେହି ଦୁଷ୍ଟ ଷଣ୍ଢଗୁଡ଼ିକ କାଳେ ଶ୍ୟାମସୁନ୍ଦରଙ୍କ ସୁନ୍ଦର ଶରୀରକୁ ଶିଙ୍ଗରେ ଭୁଷି କ୍ଷତବିକ୍ଷତ କରିଦେବେ । ତାଙ୍କର ଯେପରି କୌଣସି ଅନିଷ୍ଟ ନ ହେଉ, ସେ ଏହି କଥା ଚିନ୍ତା କରି ଦେବଦେବୀଙ୍କୁ ଜଣାଉଥାନ୍ତି ।

ସୂତ କହୁଛନ୍ତି—"ମୁନିଗଣ ! ରାଜକନ୍ୟା ଏହି ପ୍ରକାର ଚିନ୍ତା କରୁ କରୁ ପ୍ରାତଃକାଳ ହୋଇଗଲା । ଏଣେ ଦର୍ଶନାର୍ଥୀମାନଙ୍କର ପ୍ରବଳ ଭିଡ଼ ହେବାକୁ ଲାଗିଲା । ଭଗବାନ କହିଲେ—"କାହାନ୍ତି ସେହି ସାତଟି ଷଣ୍ଢ ? ସେମାନଙ୍କୁ ବାହାରକୁ ଶୀଘ୍ର ଅଣାଯାଉ ।"

ସେବକମାନେ ଉତ୍ତର କହିଲେ—"ପ୍ରଭୋ ! ସେମାନଙ୍କୁ ବାହାରକୁ ଆଣିବାକୁ କାହାର ସାହସ ନାହିଁ । ଆପଣ ନିଜେ ଘେର ଭିତରକୁ ଚାଲିଯାଆନ୍ତୁ ।

ଭଗବାନ କହିଲେ—"କ'ଣ ସେ ଷଣ୍ଢମାନଙ୍କର ଏପରି କଥାମତ ? ଆଚ୍ଛା ଦେଖେ କିପରି ସେମାନେ ବାହାରକୁ ନ ଆସୁଛନ୍ତି ? ଏହା କହି ଭଗବାନ ଦୋକଚ୍ଛ ଭିଡ଼ି ବାହାସ୍ଫୋଟ ମାରି ଘେର ଭିତରେ ପ୍ରବେଶ କଲେ ଓ ନିଜର ଯୋଗମାୟା ବଳରେ ସାତ ରୂପ ହୋଇ ଏକସଙ୍ଗେ ସାତଟି ଯାକ ଷଣ୍ଢଙ୍କର ନାକ ଫୋଡ଼ି ତହିଁରେ ରସିବାନ୍ଧି ସମସ୍ତଙ୍କୁ ଏପରି ଏକ ସଙ୍ଗେ ଟାଣି ଟାଣି ବାହାରକୁ ଆଣିଲେ ଯେ, ଯେପରି ପିଲାମାନେ କୁକୁର ଛୁଆଙ୍କୁ ବାନ୍ଧି ଟାଣି ଟାଣି ଆଣନ୍ତି । ଏହା ଦେଖି ଦର୍ଶକମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ସମସ୍ତେ ଏକ ସ୍ୱରରେ ସାଧୁ ସାଧୁ କହିବାକୁ ଲାଗିଲେ ଓ ଭଗବାନଙ୍କ ଉପରେ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ ।"

ମହାରାଜ ନଗ୍ନଜିତ୍ ଏହା ଦେଖି ଅତି ବିସ୍ମିତ ହେଲେ । ଆନନ୍ଦରେ ତାଙ୍କର ମନ ଉତ୍ଫୁଲ୍ଲ ହୋଇ ଉଠିଲା । ନାଗ୍ନଜିତ୍‌ଙ୍କ ଆନନ୍ଦର ସୀମା ମଧ୍ୟ ରହିଲା ନାହିଁ । ରାଜା ଶୁଭ ଲଗ୍ନ ଦେଖି ଶ୍ୟାମସୁନ୍ଦରଙ୍କ ସହିତ ସତ୍ୟାଙ୍କର ବିବାହ ସମ୍ପନ୍ନ କଲେ । ଭଗବାନ ମଧ୍ୟ ଅଯୋଧ୍ୟା ପୁରୀରେ ସେହି କନ୍ୟାକୁ ବିଧିବିଧାନ ପୂର୍ବକ ଗ୍ରହଣ କରିନେଲେ ।

ମହାରାଜ ନଗ୍ନଜିତ୍‌ଙ୍କର ରାଣୀମାନେ ଯେତେବେଳେ ଦେଖିଲେ, ତାଙ୍କ କନ୍ୟା ନିଜର ଅନୁରୂପ ବର ଲାଭ କଲା, ସେତେବେଳେ ସେମାନେ ପରମ ଆନନ୍ଦରେ ଉତ୍ଫୁଲ୍ଲିତ ହେଲେ । ସମସ୍ତ ନଗର ଏହି ଆନନ୍ଦୋତ୍ସବ ଉପଲକ୍ଷେ ସୁସଜ୍ଜିତ ହୋଇଥିଲା । ଶଙ୍ଖ, ଭେରୀ, ମୃଦଙ୍ଗ, ବୀଣା, ପଣବ ତଥା ଢୋଲକ ଆଦି ବାଦ୍ୟରେ ଗଗନ ପବନ ମୁଖରିତ ହେଉଥିଲା । ବ୍ରାହ୍ମଣଗଣ ବରକନ୍ୟାଙ୍କୁ ଆଶୀର୍ବାଦ କରୁଥିଲେ ଓ ବେଦପାଠ କରୁଥିଲେ । ନଗର ବାସୀ ନରନାରୀ ନଯ୍ନାଭିରାମ ନଟନାଗରଙ୍କୁ ଦର୍ଶନ କରି ନୟନରୁ ନୀର ବିସର୍ଜନ କରୁଥିଲେ । ସମସ୍ତେ ସ୍ୱଚ୍ଛ ସୁସଜ୍ଜିତ ସୁନ୍ଦର ସୁନ୍ଦର ବସ୍ତ୍ର ଓ ମାଳା ପରିଧାନ କରି ଇତସ୍ତତଃ ଭ୍ରମଣ କରୁଥିଲେ । ମହାରାଜ କୋଶଳେନ୍ଦ୍ର ଦଶହଜାର ଗାଈ, ଦିବ୍ୟ ବସ୍ତ୍ର ଭୂଷଣରେ ସଜା ହୋଇଥିବା ତିନିହଜାର ସେବିକା, ନଅ ହଜାର ଗଜ, ଶତଗୁଣ ରଥ, ଅଶ୍ୱ ଓ ସେବକ ଯୌତୁକ ଆକାରରେ ଦେଇଥିଲେ । ଶ୍ୟାମସୁନ୍ଦର ସୁନ୍ଦରୀ ପତ୍ନୀ ଓ ଏ ସମସ୍ତ ଯୌତୁକ ପାଇ ପରମ ପ୍ରସନ୍ନ ହେଲେ ।

ଶୌନକ ପଚାରିଲେ—"ହେ ସୂତ ! ଭଗବାନ ସାତଟି ଯାକ ଷଣ୍ଢଙ୍କ ନାକ ଫୋଡ଼ି ଆଣିବା ପାଇଁ ସାତ ରୂପ କାହିଁକି ହୋଇଥିଲେ ? ସେ କ'ଣ ଏକ ରୂପରେ ସେହି ସାତଟି ଷଣ୍ଢଙ୍କୁ ଆୟତ୍ତ କରିପାରି ନଥାନ୍ତେ ?"

ସୂତ କହିଲେ—"ହଁ ପାରିଥାନ୍ତେ, ମହାରାଜ ! କିନ୍ତୁ ସାତ ରୂପ ଧାରଣ କରିବା ମୂଳରେ ଏକ ରହସ୍ୟ ଥିଲା । ଯେଉଁ ସମୟରେ ଭଗବାନ ଷଣ୍ଢମାନଙ୍କ ନାକ ଫୋଡ଼ିବାକୁ ଗଲେ, ସେହି ସମୟରେ ମହଲର ଝିଙ୍କରୁ ନାଗ୍ନଜିତ ସତ୍ୟା ମଧ୍ୟ ଏହା ଦର୍ଶନ କରୁଥିଲେ । ସେ ଭଗବାନଙ୍କ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟକୁ ଦେଖି ଆପେ ଆପେ ବାହାରି ଆସୁଥିଲେ । ତାଙ୍କୁ ଏପରି ବୋଧ ହେଉଥିଲା, ସତେ ଯେପରି ଭଗବାନଙ୍କ ମଧୁରିମାକୁ ସେ ନେତ୍ରଦ୍ୱାରା ପାନ କରିନେବେ । ଏକ ମୁହୂର୍ତ୍ତି ପାଇଁ ମଧ୍ୟ ସେହି ମାଧୁର୍ଯ୍ୟ ମୂରତି ତାଙ୍କ ନୟନ ପଥରୁ ଯେପରି ଦୂର ନ ହୁଅନ୍ତୁ । ସେହି ସମୟରେ ତାଙ୍କର ସ୍ମରଣ ହେଲା ଯେ, ତାଙ୍କର ତ ଆହୁ ଛଅ ରାଣୀ ଅଛନ୍ତି । ଛଅଦିନ ସକାଶେ ମୋତେ ତ ତାଙ୍କ ବିରହରେ କାଳଯାପନ କରିବାକୁ ପଡ଼ିବ, ତେବେ ଏତେଦିନ ମୁଁ କିପରି ଜୀବନ ଧାରଣ କରି ରହିପାରିବି ? ମୁଁ ତ ତାଙ୍କ ବିନା ଦଣ୍ଡେ ହେଲେ ରହିପାରିବି ନାହିଁ ? ଏହି କଥା ଚିନ୍ତା କରିବା ମାତ୍ରେ ତାଙ୍କର ମୁଖ ମଳିନ ପଡ଼ିଗଲା । ଅନ୍ତର୍ଯ୍ୟାମୀ ଭଗବାନ ତାଙ୍କ ମନକଥା ଜାଣିପାରି ସଙ୍ଗେ ସଙ୍ଗେ ସାତରୂପ ଧାରଣ କରି ସାତଟି ଷଣ୍ଢଙ୍କୁ ଏକ ସଙ୍ଗେ ଆୟତ୍ତ କରିନେଲେ । ଏପରି ସାତରୂପ ଦର୍ଶାଇ ସେ ଏହା ସତ୍ୟାମନରେ ବିଶ୍ୱାସ ଜନ୍ମାଇ ଦେଲେ ଯେ, ଯେପରି ମୁଁ ସାତରୂପ ଧାରଣ କରି ମୁହୂର୍ତ୍ତିକ ମଧ୍ୟରେ ସାତଟି ଷଣ୍ଢଙ୍କୁ ବଶ କରିପାରିଲି, ସେହିପରି ତୁମ ସାତଜଣଙ୍କ ପାଇଁ ମୁଁ ପୃଥକ୍ ପୃଥକ୍ ସାତରୂପ ହୋଇ ତୁମ୍ଭମାନଙ୍କୁ ସନ୍ତୁଷ୍ଟ କରିପାରିବି । ତୁମକୁ ଦିନେ ହେଲେ ବି ମୋ ବିୟୋଗ କଷ୍ଟ ସହିବାକୁ ପଡ଼ିବ ନାହିଁ ।"

ଭଗବାନଙ୍କର ସାତରୂପ ଦର୍ଶନ କରି ସତ୍ୟା ସନ୍ତୁଷ୍ଟ ହେଲେ ଓ ଶୋକମୋହ ପରିତ୍ୟାଗ କଲେ । ବିଧିବଦ୍ଧ ବିବାହ ପରେ ସେ ଭଗବାନଙ୍କର ସପ୍ତମ ପତ୍ନୀ ହେଲେ ।

ସୂତ କହିଲେ—"ମୁନିଗଣ ! ଭଗବାନଙ୍କର ଏହିପରି ସାତ ବିବାହ ହେଲା । ଏବେ ଆପଣମାନେ ତାଙ୍କର ଅଷ୍ଟମ ବିବାହ ବୃତ୍ତାନ୍ତ ଶ୍ରବଣ କରନ୍ତୁ ।

## ଛପ୍ପୟ

ହେ ପ୍ରସନ୍ନ ନୃପ କରେ୍ୟା ବ୍ୟାହ ସତ୍ୟାକୋ ହରି ସଂଗ ।
ପାଇ ପରମେଶ୍ୱର ପାଇ ସମାଇ ନହିଁ ଫୂଲୀ ଅଂଗ ॥
ଦୀୟେ୍ୟା ବହୁତ ଦହେଜ ଦ୍ୱାରକା ଚଲେ ଭୁବନ ପତି ।
ପଥ ମହଁ ନୃପ ବହୁ ମିଲେ କରୀ ଜିନ ବୃଷଭନ ଦୁର୍ଗତି ॥
ତେଜନ ଜୂଁ ଜେଂ ଭେଜ୍ୟୁ, ଛିନ ମହଁ ଦେଇ ଗାଇଟେଂ ।
ନୃପତି ଭଗାଅୟୁ ପାର୍ଥ ତେଂ, ଦିଵ୍ୟ ବାନ ବରସାଇକେଂ ॥

—*—

# ଭଗବାନଙ୍କର ଅଷ୍ଟମ ବିବାହ

ସୁତାଂ ଚ ମଦ୍ରାଧିପତେର୍ଲକ୍ଷ୍ମଣାଂ ଲକ୍ଷଣୈର୍ଯୁତାମ୍ ।
ସ୍ୱୟମ୍ବରେ ଜହାରୈକଃ ସ ସୁପର୍ଣ୍ଣଃ ସୁଧାମିବ ॥ *

(ଶ୍ରୀ. ଭା. ୧୦ ସ୍କ. ୫୮ ଅ. ୫୭ ଶ୍ଳୋକ)

## ଛପ୍‌ପୟ୍

ଆଯ୍ୟେ ସାତ୍ୟା ସଙ୍ଗ ଦ୍ୱାରକା ଯଦୁନନ୍ଦନ ପୁନ ।
ମଦ୍ରଦେଶ ମହଁ ଗଯ୍ୟେ ଲକ୍ଷ୍ମଣା ନୃପ କନ୍ୟା ସୁନ ॥
ଭଯ୍ୟୋ ସ୍ୱୟମ୍ବର ଭୂପ ଦେଶ ଦେଶନ ତେ ଆଯ୍ୟେ ।
ଅନୂପମ କନ୍ୟା ନିରଖି ନୃପକ୍ଷଗନ ସବ ଲଲଚାଯ୍ୟେ ॥
ରଙ୍ଗଭୂମି ଆଇ ଲଲୀ, ଜୟମାଲ କର ଧାରି ଜବ ।
ରଥ ମହଁ ପକରି ବଠାଇ ହରି, ଭଗେ କହାରେଂ ଭୂପ ସବ ॥

ଭାଗ୍ୟଶାଳୀ ବ୍ୟକ୍ତି ଯେଉଁଠାକୁ ଯାଆନ୍ତି, ସେଠାରେ ଇଷ୍ଟବସ୍ତୁକୁ ପ୍ରାପ୍ତ ହୁଅନ୍ତି । ସେମାନେ ଶୂନ୍ୟ ହସ୍ତରେ କେବେ ଫେରନ୍ତି ନାହିଁ । ଏକ ବସ୍ତୁ ପାଇଁ ହଜାର ହଜାର ଲୋକ ଉତ୍ସୁକ ହୁଅନ୍ତି; କିନ୍ତୁ ସେମାନଙ୍କ ମଧ୍ୟରୁ ଜଣେ କେବଳ ସେହି ବସ୍ତୁକୁ ପାଏ । ଅନ୍ୟମାନେ ଦେଖି ଦେଖି ରହି ଯାଆନ୍ତି । ଏହା ଭାଗ୍ୟ ବ୍ୟତୀତ ଅନ୍ୟ କିଛି ନୁହେଁ । ଭାଗ୍ୟବାନ୍‌ର ପ୍ରତିକୂଳ ପରିସ୍ଥିତି ସୃଷ୍ଟିବ ବି ଅନୁକୂଳ ହୋଇଯାଏ । ଏହାର ବିପରୀତରେ ଭାଗ୍ୟହୀନ ବ୍ୟକ୍ତିର ସମସ୍ତ ଉପଯୋଗୀ ସାଧନ ମଧ୍ୟ ବ୍ୟର୍ଥ ହୋଇଯାଏ । ବହୁତ ରାଜା ସୈନ୍ୟ ସାମନ୍ତ ସଜାଇ ବଡ଼ ସମାରୋହରେ ଏକତ୍ରିତ ହୋଇ ଯାଆନ୍ତି, ସେମାନେ ଦେଖି ଦେଖି ରହି ଯାଆନ୍ତି; କିନ୍ତୁ ଜଣେ ବିନା ସୈନ୍ୟ ସାମନ୍ତରେ ଏକୁଟିଆ ଆସି ସମସ୍ତଙ୍କ ପରାସ୍ତକରି ବିଜୟଲାଭ କରି ଚାଲିଯାଏ ।

---

* ମଦ୍ରାଧିପତିର ଦୁଲଣୀ । ଲକ୍ଷଣା ନାମେ ସୁଲକ୍ଷଣୀ ॥
ତାହାର ସ୍ୱୟମ୍ବର କାଳେ । କୃଷ୍ଣ ହରିଲେ ତାକୁ ବଳେ ॥
ଦୁର୍ଗମ ଲକ୍ଷ ହେଳେ ଛେଦି । ସମରେ ଭୂପବଳ ଭେଦି ॥
ଦେବଙ୍କ ମଧ୍ୟୁଁ ସୁଧାହରି । ଗରୁଡ଼ ଯେସନେ ଗଗରି ॥

(ଭାଗବତ, ଜଗନ୍ନାଥ ଦାସ: ୧୦ମ ସ୍କନ୍ଧ: ୬୩ ଅ)

ସୂତ କହିଲେ—"ମୁନିଗଣ ! କାଳିନ୍ଦୀଙ୍କ ବିବାହପରେ ଅର୍ଜୁନ ଭଗବାନଙ୍କ ନିକଟରେ ପ୍ରାୟ ଅଧିକ ସମୟ ରହୁଥିଲେ । ନାଗ୍ନଜିତୀ ସତ୍ୟାଙ୍କ ବିବାହରେ ସେ ଭଗବାନଙ୍କ ସହିତ ମଧ୍ୟ ଯାଇଥିଲେ । ସାତଟି ବୃଷଭଙ୍କୁ ଏକସଙ୍ଗେ ଆୟତ୍ତ କରି ଯେତେବେଳେ ଭଗବାନ ସତ୍ୟାଙ୍କ ସହିତ ବିବାହ କଲେ, ସେତେବେଳେ ଅର୍ଜୁନ ଅତ୍ୟନ୍ତ ପ୍ରସନ୍ନ ହେଲେ । ରାଜା ନଗ୍ନଜିତ୍ ଅନେକ ଯୌତୁକ ଦେଇଥିଲେ । ସେ ସମସ୍ତ ନେଇ ଭଗବାନ ଦ୍ୱାରକା ଅଭିମୁଖେ ଯାତ୍ରା କଲେ । ରକ୍ଷା କରିବାର ସମସ୍ତ ଭାର ଅର୍ଜୁନଙ୍କ ଉପରେ ନ୍ୟସ୍ତ ଥିଲା । ପଥ ମଧ୍ୟରେ ଅନେକ ବିଦ୍ୱେଷୀ ରାଜା ବାଟଗୁଡ଼ିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ସତ୍ୟାଙ୍କ ସହିତ ବିବାହ କରିବାକୁ ଯାଇ ଷଣ୍ଢମାନଙ୍କ ଦ୍ୱାରା କ୍ଷତ ବିକ୍ଷତ ହୋଇ ଫେରି ଆସିଥିଲେ । ଏବେ ଯେତେବେଳେ ସେମାନେ ଶୁଣିଲେ ଯେ, ସାତଟି ଷଣ୍ଢଙ୍କୁ ପରାସ୍ତକରି ଶ୍ୟାମସୁନ୍ଦର ସତ୍ୟାଙ୍କୁ ବିବାହ କରି ସଙ୍ଗରେ ନେଇ ଯାଉଛନ୍ତି, ସେତେବେଳେ ସେମାନଙ୍କ ମନରେ ଈର୍ଷା ଜାତହେଲା । ସେମାନେ ଚିନ୍ତା କରିବାକୁ ଲାଗିଲେ—ଏହି ଶ୍ରୀକୃଷ୍ଣ ତ ଆମ୍ଭମାନଙ୍କୁ ବଡ଼ ଅପମାନିତ କଲା । ଆସ ଆମେ ସମସ୍ତେ ମିଳିମିଶି ତାଙ୍କଠାରୁ ଯୌତୁକ ଦ୍ରବ୍ୟ ଓ ରାଜକୁମାରୀଙ୍କୁ ଛଡ଼ାଇ ନେବା ।" ସେମାନଙ୍କ ମଧ୍ୟରେ ଏପରି ଅନେକ ରାଜା ଥିଲେ, ଯେଉଁମାନେ କି ପ୍ରଥମେ ଯାଦବଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ଓ ସେମାନଙ୍କର ଯାଦବଙ୍କ ସହିତ ଦ୍ୱେଷ ଥିଲା । ତେଣୁ ସେମାନେ ସମସ୍ତେ ଶ୍ରୀକୃଷ୍ଣଙ୍କ ସହିତ ବିଦ୍ୱେଷ ରଖି ଏକତ୍ର ମିଳିତ ହୋଇ ପଥ ମଧ୍ୟରେ ଭଗବାନଙ୍କୁ ଘେରିଗଲେ ।

ସେହି ରାଜାମାନଙ୍କର ଅଭିପ୍ରାୟ ବୁଝିପାରି ବନ୍ଧୁପ୍ରିୟକାମୀ ଅର୍ଜୁନ ମନେ ମନେ ହସିଲେ । ସେ ସଙ୍ଗେ ସଙ୍ଗେ ତାଙ୍କର ବିକଟବାଣ ବର୍ଷା କରି ରାଜାମାନଙ୍କୁ ମାରି ଛିନ୍ନଭିନ୍ନ କରିଦେଲେ । ତାଙ୍କର ଗାଣ୍ଡୀବ ଧନୁରୁ ଏକ ସଙ୍ଗେ ଅସଂଖ୍ୟ ବାଣ ବୃଷ୍ଟି ହେଉଥିଲା । ତାହା ଶତ୍ରୁମାନଙ୍କର ମର୍ମସ୍ଥଳ ଭେଦକରିବା ଦ୍ୱାରା ସେମାନେ ମୃତ୍ୟୁ ବରଣ କଲେ । ଅନେକ ରାଜା ରଣକ୍ଷେତ୍ର ଛାଡ଼ି ଭୟରେ ପଳାଇ ଗଲେ ।

ଏହିପରି ରାସ୍ତାରେ ମାର୍ଗର କଣ୍ଟକ ସ୍ୱରୂପ ରାଜାମାନଙ୍କୁ ପଦଦଳିତ କରି ଭଗବାନ ସକୁଶଳେ ଦ୍ୱାରକାପୁରୀରେ ଯାଇ ପହଞ୍ଚିଲେ । ସେଠାରେ ନବବଧୂଙ୍କୁ ସମସ୍ତେ ସ୍ୱାଗତ ସମ୍ମାନ କଲେ । ସମସ୍ତଙ୍କ ପ୍ରତି ପ୍ରେମ ପ୍ରଦର୍ଶନ କରି ଯଦୁନନ୍ଦନ ସୁଖରେ ନିଜ ପୁରୀରେ ରହିବାକୁ ଲାଗିଲେ ।

ଏବେ ଭଗବାନଙ୍କର ଏହି ଲୀଳା ଶୁଣିଲ ଯେ କେଉଁଠାରେ କେଉଁ ରାଜକନ୍ୟା ପାଇଁ ସ୍ୱୟମ୍ବର ହେଉଛି, ସେଠାକୁ ଯାଇ ନବବଧୂ ଧରି ଆସିବେ । ତେଣିକି କେହି ଆମନ୍ତ୍ରଣ କରନ୍ତୁ ବା ନ କରନ୍ତୁ, ଶୁଣିବା ମାତ୍ରେ ଭଗବାନ ସେଠାରେ ଯାଇ ହାଜର । ଅସୁର ପ୍ରକୃତିର ବହୁତ ରାଜା ଭଗବାନଙ୍କ ସହିତ ଦ୍ୱେଷ କରୁଥିଲେ । ସେମାନେ

କ୍ଷତ୍ରିୟ ସମାଜକୁ ଭଗବାନଙ୍କୁ ଆମନ୍ତ୍ରିତ କରୁ ନ ଥିଲେ । କିନ୍ତୁ ଭଗବାନଙ୍କୁ ତ କାହାର ଆମନ୍ତ୍ରଣକୁ ଅପେକ୍ଷା କରିବାକୁ ପଡ଼ୁ ନ ଥିଲା ? ତେଣୁ ସେ ବିନା ଆମନ୍ତ୍ରଣରେ ନିଜର ସ୍ୱଜନଙ୍କ ନିମିତ୍ତ ସେଠାରେ ଯାଇ ପହଞ୍ଚି ଯାଉଥିଲେ ।

ଯେଉଁଦିନ ଭଗବାନ ସତ୍ୟାଙ୍କୁ ବିବାହ କରି ଫେରୁଥିଲେ, ସେହିଦିନ ସେ ଶୁଣିବାକୁ ପାଇଲେ ଯେ, ମଦ୍ରଦେଶର ରାଜାଙ୍କର ସର୍ବସୁଲକ୍ଷଣ ସମ୍ପନ୍ନା ଲକ୍ଷ୍ମଣା ନାମକ ଏକ କନ୍ୟା ଅଛି । ସେ ଅତି ସୁନ୍ଦରୀ । ଏହା ଶୁଣିବା ମାତ୍ରେ ଭଗବାନ ଚିନ୍ତା କଲେ— "କଉରବଙ୍କୁ କିମ୍ବା ସେନାପତିଙ୍କୁ ଯଦି ମୁଁ ଏ କଥା କହିବି, ତେବେ ସେମାନେ ଭାବିବେ ଯେ, 'ଏହାଙ୍କୁ ବିବାହ କରିବାର ଏକ ବ୍ୟସନ ଗ୍ରାସ କରିଛି । 'ତେଣୁ ସେ କାହାରିକୁ କିଛି ନ କହି ଏକା ରଥରେ ଦଶ ଦିନେ ଚୁପ୍ ହୋଇ ଉଆସରୁ ବାହାରି ପଡ଼ିଲେ ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଏହା ତ ଜାଣିବା ସମ୍ଭବ ନୁହେଁ ଯେ, କେତେ ରାଜକୁମାରୀଙ୍କର ବିବାହ କେବେ ହେଉଥିବ ? ଭଗବାନ କ'ଣ ସମସ୍ତଙ୍କ ବିବାହକୁ ବିନା ଆମନ୍ତ୍ରଣରେ ଚାଲି ଯାଉଥିଲେ ?"

ସୂତ କହିଲେ—"ନାହିଁ, ମହାରାଜ ! ଭଗବାନ ତ ପ୍ରେମ କ୍ଷୁଧାରେ ସଦା ସର୍ବଦା କ୍ଷୁଧିତ । ଯେ ତାଙ୍କୁ ହୃଦୟରେ ଚାହୁଁଥିଲା, ତାଙ୍କୁ ସେ ସବୁପ୍ରକାର ନଜର କରି ନେଉଥିଲେ । ଯେ ତାଙ୍କର ଅନୁଗତ, ଶରଣାଗତ ଯେ ତାଙ୍କୁ ହୃଦୟରେ ସ୍ଥାନ ଦେଇ-ଥାଏ, ତାହାପାଇଁ ଭଗବାନ ଧାଇଁ ଯାଆନ୍ତି । ଏହି ଲକ୍ଷ୍ମଣା ହୃଦୟରେ ଭଗବାନଙ୍କୁ ସ୍ଥାନ ଦେଇଥିଲା ଓ ତାଙ୍କୁ ଚାହୁଁଥିଲା ।

ଶୌନକ ପଚାରିଲେ—"ହେ ସୂତ ! ମଦ୍ରଦେଶ କେଉଁଠି, ଦ୍ୱାରକା କେଉଁଠି, ଲକ୍ଷ୍ମଣା କିପରି ଭଗବାନଙ୍କୁ ଏତେ ଦୂରରେ ଥାଇ ଦେଖିଲା ?"

ସୂତ କହିଲେ—"ମହାରାଜ ! ଖୁବ୍ କମ ଲୋକ ପ୍ରେମଦର୍ଶନ କରନ୍ତି । ବ୍ୟକ୍ତିକୁ ନ ଦେଖି, କେବଳ ଗୁଣ ଶ୍ରବଣ କରି ମଧ୍ୟ ପ୍ରେମ ହୋଇଥାଏ । ଏଥିପାଇଁ ନାରଦ କହନ୍ତି—'ଏପାଖ କଥା ସେପାଖରେ ଭିଡ଼ା ଯାଉଛି ।' ନାରଦଙ୍କୁ ଯେତେବେଳେ ଅବସର ମିଳେ, ସେ ସେତେବେଳେ ମଦ୍ରଦେଶ ବୁଲିଆସନ୍ତି । ସେ ରାଜ୍ୟର ରାଜା ବୃହତ୍ସେନ ଅତ୍ୟନ୍ତ ଭଗବତଭକ୍ତ ଥିଲେ । ତାଙ୍କ ସଭାରେ ଉପସ୍ଥିତ ହୋଇ ନାରଦ ବାରମ୍ବାର ଭଗବାନଙ୍କ ଦିବ୍ୟ ଜନ୍ମ ଓ କର୍ମ ସମ୍ବନ୍ଧରେ ଆଲୋଚନା କରୁଥିଲେ । ପିତାଙ୍କ ନିକଟରେ ବସି ଲକ୍ଷ୍ମଣା ସେ ସମସ୍ତ କଥା ଶ୍ରବଣ କରୁଥିଲେ । ଅନବରତ ଗୁଣ ଶ୍ରବଣ କରିକରି ତାଙ୍କର ଭଗବାନଙ୍କ ପ୍ରତି ସ୍ୱାଭାବିକ ଭାବରେ ଅନୁରାଗ ଜାତ ହେଲା । ଯେତେବେଳେ ସେ ବଡ଼ ହୋଇଗଲେ ଓ ତାଙ୍କର ବିବାହ ବୟସ ହେଇଗଲା, ସେ ଚିନ୍ତା କରିବାକୁ ଲାଗିଲେ

ଯେ, "ସମସ୍ତ ଦେବତାଙ୍କୁ ପରିତ୍ୟାଗ କରି ଯେ ସ୍ୱୟଂ ଲକ୍ଷ୍ମୀ ଦେବୀଙ୍କୁ ବରଣ କରିଥିଲେ, ସେହି ଶ୍ୟାମସୁନ୍ଦର ଯଦି ମୋର ପତି ହୋଇ ପାରନ୍ତି ତେବେ ମୋ ଜୀବନ ଧନ୍ୟ ହୋଇଯିବ । ତା ହା ନ ହେଲେ ଏ କାମ କ୍ରୋଧ ବଶୀଭୂତ ତୁଚ୍ଛ ରାଜାମାନଙ୍କୁ ମୁଁ ମୋର ଅଙ୍ଗସ୍ପର୍ଶ କରାଇ ଦେବି ନାହିଁ ।" ରାଜକୁମାରୀ ଏହିପ୍ରକାର ଦୃଢ଼ ନିଷ୍ଠିତ ହୋଇ ସେହି ଶୁଭ ମୁହୂର୍ତ୍ତିକୁ ଅପେକ୍ଷା କରିଥିଲେ ।

ତାଙ୍କର ମନୋଗତ ଭାବ ସଖୀମାନଙ୍କ ଦ୍ୱାରା ତାଙ୍କ ମା ଜାଣି ପାରିଲେ ଓ ସେ ଏହା ନିଜର ପତି ବୃହତ୍‌ସେନଙ୍କୁ ଜଣାଇଲେ । ନିଜ ସ୍ନେହର କନ୍ୟା ଶୁଭ ସଂକଳ୍ପ କରିଥିବା କଥା ଜାଣି ତାହା ପୂର୍ଣ୍ଣ କରିବା ପାଇଁ ମହାରାଜ ଏକ ଉପାୟ ଚିନ୍ତା କଲେ । ସେ ଦ୍ରୌପଦୀଙ୍କ ସ୍ୱୟମ୍ବରକୁ ଯାଇଥିଲେ । ସେଠାରେ ସେ ଦେଖିଥିଲେ, ମହାରାଜା ଦ୍ରୁପଦ ଏକ ବିରାଟ ଖମ୍ବ ପୋତି ତା ଉପରେ ଏକ ଯନ୍ତ୍ର ଉପରେ ମାଛଟିଏ ଝୁଲାଇଥିଲେ । ସେହି ଯନ୍ତ୍ର (ଚକ୍ର) ନିରନ୍ତର ଘୂରୁଥିଲା । ସେହି ମାଛକୁ ଶରବିଦ୍ଧ ଯେ କରିପାରିବ, ସେହି ହିଁ କନ୍ୟାକୁ ପ୍ରାପ୍ତ ହେବ ବୋଲି ପଣ ରଖିଥିଲେ । ବହୁ ରାଜା ମାଛକୁ ଲକ୍ଷ୍ୟ କରି ଶର ସନ୍ଧାନ କରିବା ସମୟରେ ଚକ୍ର ଘୂରୁଥିବାରୁ ତାହା ମାଛ ଦେହରେ ବାଜୁ ନଥିଲା । କିନ୍ତୁ ଅର୍ଜୁନ ଏହି କାର୍ଯ୍ୟରେ ସଫଳ ହେବାରୁ ସେ ଦ୍ରୌପଦୀଙ୍କୁ ବିବାହ କଲେ । ଏହି ମଦ୍ରାଧିପ ମହାରାଜ ବୃହତ୍‌ସେନ ତାହାଙ୍କୁ ଆନୁକୂଳ କରି ସେହିପରି ଏକ ଖମ୍ବ ଉପରେ ମାଛ ଝୁଲାଇ ତା ତଳକୁ ଚକ୍ର ଘୁରାଇ, ଖମ୍ବର ନିମ୍ନ-ଦେଶରେ ଏକ ଜଳପୂର୍ଣ୍ଣ କୁଣ୍ଡ ପ୍ରସ୍ତୁତ କରାଇ ପଣ ରଖିଲେ ଯେ, ଯେଉଁ ରାଜପୁତ୍ର ଜଳ ମଧ୍ୟରେ ପଡ଼ିଥିବା ମାଛର ଛାଇକୁ ଲକ୍ଷ କରି ଉପରକୁ ଧନୁରେ ଶରମାରି ମାଛର ଆଖିରେ ଶରବିଦ୍ଧ କରିପାରିବ, ସେ ତାଙ୍କ କନ୍ୟାକୁ ବିବାହ କରିବ । ଏପରି ଶରବିଦ୍ଧ କରିବା ସାଧାରଣ କାର୍ଯ୍ୟ ନ ଥିଲା । ରାଜା ଜାଣିଶୁଣି ଏହା କରିଥିଲେ ଯେ, ଭଗବାନଙ୍କ ବ୍ୟତୀତ ଅନ୍ୟ କେହି ଏପରି ଲକ୍ଷ୍ୟଭେଦ କରିପାରିବେ ନାହିଁ । ସେ ଏହି ସ୍ୱୟମ୍ବର ସଭାକୁ ରାଜାମାନଙ୍କୁ ଆମନ୍ତ୍ରଣ କଲେ । ଭଗବାନଙ୍କୁ ମଧ୍ୟ ଏଥିରେ ଯୋଗ ଦେବାକୁ ଆମନ୍ତ୍ରଣ କଲେ । ଭଗବାନ ବଡ଼ ସୈନ୍ୟ ସାମନ୍ତରେ ମଦ୍ରଦେଶରେ ଆସି ପହଞ୍ଚିଲେ । ସ୍ୱୟମ୍ବର କଥା ଶୁଣି ବିଭିନ୍ନ ରାଜ୍ୟରୁ ସହସ୍ର ସହସ୍ର ରାଜା ଓ ରାଜକୁମାର ମଦ୍ରଦେଶରେ ଆସି ପହଞ୍ଚିଲେ । ସମସ୍ତେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ନିଜ ନିଜର ମନ୍ତ୍ରୀ, ପୁରୋହିତ ଓ ସୈନ୍ୟସାମନ୍ତଙ୍କ ସଙ୍ଗରେ ଧରି ଆସି-ଥିଲେ । ମହାରାଜ ବୃହତ୍‌ସେନ ସମସ୍ତ ଅଭ୍ୟାଗତ ରାଜାମାନଙ୍କୁ ସ୍ୱାଗତ ସତ୍କାର କରି ଆସନ ପ୍ରଦାନ କରିଥିଲେ । ରାଜସଭା ଏକ ରଙ୍ଗଭୂମିରେ ପରିଣତ ହୋଇଥିଲା । ସଭାର ମଧ୍ୟ ସ୍ଥଳରେ ସେହି ଲକ୍ଷ ଭେଦର ସ୍ତମ୍ଭ ରହିଥିଲା । ସୁସଜ୍ଜିତ ମଞ୍ଚରେ ଆଗତ ରାଜା ଓ ରାଜକୁମାର-ମାନେ ଉପବେଶନ କରିଥିଲେ । ରାଜକୁମାରୀଙ୍କୁ ଲାଭ କରିବା ଇଚ୍ଛାରେ ଏବେ ସମସ୍ତ ରାଜା ନିଜ ନିଜ ହୋଇ ସ୍ତମ୍ଭ ପାଖକୁ ଆସି ଲକ୍ଷ୍ୟଭେଦ କରିବାକୁ ତତ୍ପର ହେଲେ । ନିମ୍ନ ଦେଶରେ ଏକ ବିଶାଳ ଧନୁ ରଖା ଯାଇଥିଲା । ସେହି ଧନୁକୁ ଉଠାଇ ତହିଁରେ ଗୁଣ

ଚଢ଼ାଇ ଓ ବାଣ ଯୋଖି, କୁଣ୍ଡରେ ଥିବା ପାଣି ଭିତରର ମାଛ ଗୁଡ଼ିକୁ ଦେଖି ମାଛର ଆଖିକୁ ଶରବିଦ୍ଧ କରିବା ଥିଲା ସେମାନଙ୍କର କାର୍ଯ୍ୟ । ଅନେକ ରାଜା ସେହି ଧନୁଟିକୁ ଟେକି ଉଠାଇ ପାରି ନଥିଲେ । ଅନେକ ରାଜା ଧନୁକୁ କୌଣସିମତେ ଉଠାଇଲେ, କିନ୍ତୁ ତହିଁରେ ଗୁଣ ଚଢ଼ାଇ ପାରିଲେ ନାହିଁ । ଅନେକ ରାଜା ଧନୁର ଡୋରକୁ ଏକ ମୁଣ୍ଡରୁ ନେଇ ଅନ୍ୟ ମୁଣ୍ଡରେ ଟାଣି ବାନ୍ଧିବାକୁ ଚେଷ୍ଟାକରି ବିଫଳ ହେଲେ ଓ ଧନୁ ଦଣ୍ଡର ଆଘାତରେ ସେମାନେ କ୍ଷତବିକ୍ଷତ ହେଲେ । ଏହିପରି ଭାବରେ ସେମାନେ ଲଜ୍ଜିତ ହୋଇ ଦେହରୁ ଧୂଳି ଝାଡ଼ିଝୁଡ଼ି ହୋଇ ଯାଇ ଆସନରେ ବସିଲେ । ରାଜାମାନଙ୍କ ମଧ୍ୟରେ ବି ଅନେକ ପରମ ପରାକ୍ରମୀ ବୀର ରାଜା ଥିଲେ, ସେମାନଙ୍କର ଦଶ ଦଶ ସହସ୍ର ହାତୀମାନଙ୍କର ବଳ ଥିଲା । ସେମାନଙ୍କ ମଧ୍ୟରେ ଜରାସନ୍ଧ, ଅମ୍ବଷ୍ଠ, ଶିଶୁପାଳ, ଭୀମସେନ, ଦୁର୍ଯ୍ୟୋଧନ ଓ କର୍ଣ୍ଣ ଆଦି ପ୍ରଧାନ ଥିଲେ ।' ଏମାନେ ଧନୁରେ ଗୁଣ ଚଢ଼ାଇଲେ କିନ୍ତୁ ଜଳ ମଧ୍ୟକୁ ଚାହିଁ ଖମ୍ବ ଉପରେ ଥିବା ମାଛର ଆଖିକୁ ଲକ୍ଷ୍ୟଭେଦ କରିବାରେ ବିଫଳ ହେଲେ । ସେମାନେ ବାଣ ଛାଡ଼ିଥିଲେ, କିନ୍ତୁ ତାହା ଲକ୍ଷ୍ୟଭେଦ କରିପାରି ନଥିଲା । ଅର୍ଜୁନ ବଡ଼ ଲକ୍ଷ୍ୟଭେଦୀ ଥିଲେ । ସେ ଭଗବାନଙ୍କ ଆଡ଼କୁ ଚାହିଁବାରୁ ମାଧବ ତାଙ୍କୁ ହସି ହସି କହିଲେ—'ଭାଇ ! ତୁ ମଧ୍ୟ ଏହି ଲକ୍ଷ୍ୟଭେଦ କରିବାକୁ ଚେଷ୍ଟା କର ।' ଅର୍ଜୁନ ଭଗବାନଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ଧନୁ ଉଠାଇଲେ, ଗୁଣ ଚଢ଼ାଇଲେ ଓ ଧନୁରେ ବାଣ ଯୋଖିଲେ । ଜଳ ମଧ୍ୟରେ ମାଛର ପ୍ରତିବିମ୍ବକୁ ଚାହିଁ ମାଛର ସ୍ଥିତିକୁ ଭଲଭାବେ ଲକ୍ଷ୍ୟ କରି ବାଣ ମାରିଲେ, କିନ୍ତୁ ସେହି ବାଣ ମାଛକୁ ସ୍ପର୍ଶକରି ଅନ୍ୟ ବାଟରେ ଚାଲିଗଲା । ମାଛର ଆଖିରେ ତାହା ବାଜିଲା ନାହିଁ ।

ଯେତେବେଳେ ସମସ୍ତଙ୍କର ମାନ ମର୍ଦ୍ଦନ ହୋଇଗଲା, ସେତେବେଳେ ବାସୁଦେବ ନିଜେ ଉଠିଲେ । ସେ ଖେଳାଳିଭଳି ଧନୁ ଉଠାଇ ତହିଁରେ ଗୁଣ ଚଢ଼ାଇଲେ ଓ ବାଣ ଦେଇ ପୁରୋହିତଙ୍କୁ କହିଲେ—"ଏବେ କୁହନ୍ତୁ ପୁରୋହିତେ ! ଗ୍ରହ ନକ୍ଷତ୍ରଙ୍କ ସ୍ଥିତି କିପରି ?"

ପୁରୋହିତ ବିନମ୍ର ସହିତ କହିଲେ—"ବାସୁଦେବ ! ଆପଣ ଗ୍ରହ ନକ୍ଷତ୍ର ଅନୁସାରେ ଚାଲିବେ ନା ଗ୍ରହ ନକ୍ଷତ୍ର ଆପଣଙ୍କ ସଙ୍କେତରେ ନାଚିବେ ? ଏହି ସମୟରେ ସମସ୍ତ ଗ୍ରହ ନକ୍ଷତ୍ର ସ୍ୱତଃ ଅନୁକୂଳ ହୋଇଗଲେ । ସୂର୍ଯ୍ୟ ଅଭିଜିତ ନକ୍ଷତ୍ରରେ ଅବସ୍ଥାନ କରିଛନ୍ତି । ରାଜକୁମାରୀ ଆପଣଙ୍କୁ ହିଁ ବରଣ କରିବେ । ଆପଣ ଲକ୍ଷ୍ୟଭେଦ କରନ୍ତୁ ।" ଏହା ଶୁଣି ଭଗବାନ ଅରେମାତ୍ର ଜଳ ମଧ୍ୟକୁ ଚାହିଁ ଏପରି ଶର ସନ୍ଧାନ କଲେ ଯେ, ମତ୍ସ୍ୟର ନେତ୍ର ବିଦ୍ଧ ହୋଇ ତାହା ଛିନ୍ନ ଭିନ୍ନ ହୋଇ ତଳେ ପଡ଼ିଗଲା ।

ସେହି ସମୟରେ ଧରାବକ୍ଷରେ ଓ ଅନ୍ତରୀକ୍ଷରେ ଆନନ୍ଦର ଲହରୀ ଖେଳିଗଲା । ଦେବଗଣ ଆକାଶମାର୍ଗରୁ ଜୟ ଜୟକାର ଧ୍ୱନି କରିବାକୁ ଲାଗିଲେ । ସେମାନଙ୍କର

ଦୁନ୍ଦୁଭି ସୁମଧୁର ସ୍ୱରରେ ବାଜିବାକୁ ଲାଗିଲା । ଦେବତାଗଣ ଆନନ୍ଦରେ ବିଭୋର ହୋଇ ସୁରଦ୍ରୁମର ସୁଗନ୍ଧିତ ସୁମନ ବୃଷ୍ଟି କରିବାକୁ ଲାଗିଲେ ।

ରାଜକନ୍ୟା ଲକ୍ଷ୍ମଣା ଏହି ସମାଚାର ଶୁଣିବା ମାତ୍ରେ ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସଖୀମାନେ ରାଜକନ୍ୟାଙ୍କୁ ସୁନ୍ଦର ବେଶରେ ସୁସଜ୍ଜିତ କରାଇ ବହୁମୂଲ୍ୟ ବସ୍ତ୍ରାଭୂଷଣ ପିନ୍ଧାଇ ପୁଷ୍ପମାଳ୍ୟ ଓ ମଣି ମାଣିକ୍ୟ ମାଳାରେ ଭୂଷିତ କରାଇ ଥାଆନ୍ତି । ରାଜକୁମାରୀ ବିଜୟମାଳା ନିଜ ହସ୍ତରେ ଧାରଣ କରି ମନ୍ଦ ମନ୍ଦ ହସି, ଲାଜ ଲାଜ ହୋଇ ପାଦ ଆଭୂଷଣର ଛନ୍ଦେ ଛନ୍ଦେ ଧୀରେ ଧୀରେ ରଙ୍ଗଶାଳାକୁ ଆସିଲେ । ସେ ସମୟରେ ତାଙ୍କର ଉତ୍ତମ ଅଳକାବଳୀ ତଥା କମନୀୟ କନକକୁଣ୍ଡଳର କାନ୍ତିରେ ଦେଦୀପ୍ୟମାନ ଓ କଳିତ କପୋଳର ଶୋଭାରେ ଶୋଭାୟିତ ମନୋହର ମୁଖାରବିନ୍ଦ ଶରଦକାଳୀନ ପୂର୍ଣ୍ଣଚନ୍ଦ୍ରଙ୍କର ଆଭାକୁ ମଧ୍ୟ ତିରସ୍କୃତ କରୁଥିଲା । ତାଙ୍କର ଶୁଭଦର୍ଶନାବଳୀରୁ ବିକଶିତ ହେଉଥିବା କିରଣର ଶୁଭ୍ର ଆଲୋକରେ ସେହି ରଙ୍ଗଶାଳା ଆଲୋକିତ ହେଉଥିଲା । ଶରଚ୍ଚନ୍ଦ୍ରକାଭଳି ମନ୍ଦ ମନ୍ଦ ମନୋହର ମଧୁର ହାସ୍ୟଯୁକ୍ତ କଟାକ୍ଷ ଭଙ୍ଗୀରେ ଚଞ୍ଚଳତାପୂର୍ବକ ସେ ମଝେ ମଝେ ଚତୁର୍ଦ୍ଦିଗକୁ ନିରୀକ୍ଷଣ କରି ନେଉଥିଲେ । ସତେ ଯେପରି ସେ ନିଜର ଇଷ୍ଟଙ୍କୁ ଅତ୍ୟନ୍ତ ବ୍ୟଗ୍ର ଭାବରେ ଖୋଜୁଅଛନ୍ତି । ସେ ଯେତେବେଳେ ନିଜର କୁଟିଳ କଟାକ୍ଷ ଅନ୍ୟ କୁତ୍ସିତ ସ୍ୱୟଂବରକାମୀ ରାଜାମାନଙ୍କ ଆଡ଼େ ନିକ୍ଷେପ କରୁଥିଲେ, ସେତେବେଳେ ଏପରି ଅନୁଭୂତ ହେଉଥିଲା ଯେ, ସତେ ଯେପରି ସେ ସେମାନଙ୍କୁ ତିରସ୍କାର କରୁଅଛନ୍ତି । ସେମାନଙ୍କ ମୂର୍ଖତାକୁ ସେ ଧିକ୍କାର କରୁଅଛନ୍ତି । ଏହିପରି ଭାବରେ ସମସ୍ତଙ୍କ ହୃଦୟରେ ଈର୍ଷାଦ୍ୱେଷର ବହ୍ନିକୁ ନିଜର ଅନବଦ୍ୟ ସୌନ୍ଦର୍ଯ୍ୟର ତେଜରେ ପ୍ରଜ୍ୱଳିତ କରାଇ ସେ ଧୀରେ ଧୀରେ ଶ୍ୟାମସୁନ୍ଦରଙ୍କ ସମୀପରେ ଆସି ଉପସ୍ଥିତ ହେଲେ ଓ ନିଜର କମ୍ପିତ କରକମଳରେ ଧାରଣ କରିଥିବା ସେହି ମଣିମୁକ୍ତା ଖଚିତ ବିଜୟମାଳା ଶ୍ରୀହରିଙ୍କ କମନୀୟ କଣ୍ଠ ଦେଶରେ ପିନ୍ଧାଇ ଦେଲେ ।

ମାଲ୍ୟାର୍ପଣ ହେବାମାତ୍ରେ ମଧୁର ମଧୁର ମଙ୍ଗଳ ବାଦ୍ୟରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠିଲା । ମୃଦଙ୍ଗ, ପଣବ, ଶଙ୍ଖ, ଭେରୀ, ତୂରୀ ଓ ଆନକ ଆଦି ବାଦ୍ୟର ମଧୁର ଧ୍ୱନି ପ୍ରତି ପ୍ରାଣରେ ଦିବ୍ୟ ଆନନ୍ଦ ସଞ୍ଚାର କଲା । ନର୍ତ୍ତକ ନର୍ତ୍ତକୀ ନୃତ୍ୟ କରିବାକୁ ଲାଗିଲେ । ଗାୟକଗଣ ଗୋବିନ୍ଦଙ୍କର ଗୁଣ ସମ୍ବନ୍ଧୀୟ ଗୀତ ଗାଇବାକୁ ଲାଗିଲେ । ନର୍ତ୍ତକୀଗଣ ହାବଭାବ ଓ କଟାକ୍ଷ ଦ୍ୱାରା ବିଭିନ୍ନ ପ୍ରକାର ନୃତ୍ୟ ପ୍ରଦର୍ଶନ କରିବାକୁ ଲାଗିଲେ ।

କନ୍ୟାର ଅନୁପମ ରୂପକୁ ଦେଖି ସମସ୍ତ ରାଜାଙ୍କର ଈର୍ଷା-ଦ୍ୱେଷର ବହ୍ନି ଅଧିକ ପ୍ରଜ୍ୱଳିତ ହୋଇ ଉଠିଲା । ସେମାନେ ଅତି କ୍ରୋଧରେ ଅସ୍ତ୍ରଶସ୍ତ୍ର ଧାରଣ ପୂର୍ବକ ନିଜ ନିଜ ଆସନରୁ ଉଠି ପଡ଼ିଲେ । ଚତୁର୍ଦ୍ଦିଗରୁ ସେମାନେ କନ୍ୟାକୁ ଘେରିଗଲେ ଓ

ଚିତ୍କାର କରି କହିଲେ "ଏହା ଆମ୍ଭମାନଙ୍କ ପକ୍ଷେ ଘୋର ଅପମାନ । ଏହି କନ୍ୟା ଆମ୍ଭମାନଙ୍କୁ ତିରସ୍କାର କରୁଅଛି । ରାଜାମାନେ ଥାଉଁ ଥାଉଁ ସେ ଗୋପାଳଟାକୁ ବରଣ କରୁଛି । ତାକୁ ବଳପୂର୍ବକ ଧରିନିଅ ଓ ଆମ୍ଭମାନଙ୍କ ମଧ୍ୟରେ ଯିଏ ଅଧିକ ବଳଶାଳୀ ତାଙ୍କ ସହିତ ତାକୁ ବିବାହ କରିଦିଅ ।" ଏହା କହି ସେମାନେ କନ୍ୟାକୁ ଧରିବାକୁ ଧାଇଁଲେ । ସେମାନଙ୍କର ଏପରି ଅଭିପ୍ରାୟ ଜାଣିପାରି ଲକ୍ଷ୍ମଣା ଅତ୍ୟନ୍ତ ଭୟଭୀତ ହୋଇଗଲେ । ସେ ମନେ ମନେ ଭକ୍ତବତ୍ସଳ ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ସେ କହିଲେ–– "ହେ ଦୀନବତ୍ସଳ ! ହେ ଅଶରଣର ଶରଣ ! ଏହି ଦୁଷ୍ଟ ରାଜାମାନଙ୍କ କବଳରୁ ମୋତେ ରକ୍ଷା କର । କେହି ଯେପରି ମୋତେ ସ୍ପର୍ଶ କରି ନ ପାରନ୍ତି ।" ଏହା ଦେଖି ଭଗବାନଙ୍କ ମନରେ ଦୟା ହେଲା । ସେ ସଙ୍ଗେ ସଙ୍ଗେ ସମସ୍ତଙ୍କର ପ୍ରତିରୋଧ କଲେ । ଦେଖୁ ଦେଖୁ ଭଗବାନ ଚତୁର୍ଭୁଜ ହୋଇଗଲେ । ସେ ଦୁଇହାତରେ ନିଜର ପ୍ରିୟା ଲକ୍ଷ୍ମଣାଙ୍କୁ ଧରି ଅନ୍ୟ ଦୁଇ ହାତରେ ଧନୁଶର ଧରି ସେହି ଦୁଷ୍ଟ ରାଜାମାନଙ୍କ ଉପରେ ବାଣ ବର୍ଷା କରିବାକୁ ଲାଗିଲେ । ଏହି ସମୟରେ ସାରଥୀ ଦାରୁକ ସୁନ୍ଦର ସୁନ୍ଦର ଚାରି ଅଶ୍ୱ ଯୋଚା ହୋଇଥିବା ରଥକୁ ଆଣି ସେଠାରେ ଠିଆ କରାଇଲା । ଭଗବାନ ସଙ୍ଗେ ସଙ୍ଗେ ନିଜର ପ୍ରିୟାକୁ ସେହି ରଥରେ ବସାଇ ସିଂହ ନିଜ ଭାଗ ନେଇ ଚାଲିଲା ଭଳି ନିଜ ପ୍ରିୟାକୁ ନେଇ ସମସ୍ତଙ୍କ ସମ୍ମୁଖରେ ନିର୍ଭୟରେ ଚାଲିଗଲେ ।

ଏହା ଦେଖି ରାଜାମାନେ ପରସ୍ପରକୁ ଧିକ୍କାର କରିବାକୁ ଲାଗିଲେ । ଏ ଅପମାନ ସହି ନପାରି ଅନେକ ରାଜା ସିଂହ ପଛରେ କୁକୁର ଧାଇଁଲା ପରି ଭଗବାନଙ୍କ ରଥ ପଛରେ ଧାଇଁବାକୁ ଲାଗିଲେ; କିନ୍ତୁ ଭଗବାନଙ୍କ ଶାର୍ଙ୍ଗ ଧନୁ ସମ୍ମୁଖରେ ରହିପାରିବାର ସାମର୍ଥ୍ୟ ସେମାନଙ୍କର ନ ଥିଲା । ସେମାନଙ୍କ ମଧ୍ୟରୁ କେତେକ କ୍ଷତ ବିକ୍ଷତ ହୋଇ ପ୍ରାଣ ଧରି ସେଠାରୁ ପଳାଇଗଲେ । ଏହିପରି ସମସ୍ତ ରାଜା ହାରିଯାଇ ନିଜ ନିଜ ରାଜ୍ୟକୁ ଫେରିଗଲେ ।

ସମସ୍ତ ରାଜା ଚାଲିଯିବାରୁ ମହାରାଜ ବୃହତ୍ସେନ ଯୌତୁକ ସାମଗ୍ରୀମାନ ଦେଇ ନିଜର ଜାମାତାଙ୍କ ସହିତ ବନ୍ଧୁବାନ୍ଧବ ଓ ପୁରୋହିତଙ୍କୁ ସଙ୍ଗରେ ଧରି ଦ୍ୱାରକାପୁରୀ ଚାଲିଲେ ଓ ଶୁଭ ମୁହୂର୍ତ୍ତ ଦେଖି ସେଠାରେ ସେ ଲକ୍ଷ୍ମଣାଙ୍କୁ ଭଗବାନଙ୍କ ସହିତ ଶାସ୍ତ୍ରୀୟ ବିଧିବିଧାନରେ ବିବାହ କରାଇଲେ । ଏହିପରି ଭଗବାନଙ୍କର ରୁକ୍ମଣୀ, ଜାମ୍ବବତୀ, ସତ୍ୟଭାମା, କାଳନ୍ଦୀ, ମିତ୍ରବିନ୍ଦା, ଭଦ୍ରା, ନାଗ୍ନଜିତୀ (ସତ୍ୟା) ଓ ଲକ୍ଷ୍ମଣା ଏହି ଆଠ ପାଟରାଣୀ ହେଲେ । ଏହାଙ୍କ ବ୍ୟତୀତ ଭଗବାନଙ୍କର ଆହୁରି ଷୋଳସହସ୍ର ରାଣୀ ମଧ୍ୟ ଥିଲେ । ଏମାନେ ଭଗବାନଙ୍କୁ ଏକ ସଙ୍ଗେ ହଠାତ୍ ମିଳିଯାଇଥିଲେ ।"

ଏହା ଶୁଣି ଶୌନକ ପଚାରିଲେ––"ହେ ସୂତ ! ଭଗବାନଙ୍କୁ ଏକସଙ୍ଗେ ଷୋଳ ସହସ୍ର କନ୍ୟା କିପରି ମିଳିଲେ ? ଏହା ତ ଅସମ୍ଭବ ବୋଧ ହେଉଛି ?"

ସୂତ ହସି ହସି କହିଲେ—"ମହାରାଜ ! ସମ୍ଭବ ଅସମ୍ଭବ ତ ଆମ ସାଧାରଣ ଲୋକ ପାଇଁ ଉଦ୍ଦିଷ୍ଟ । କିନ୍ତୁ ଭଗବାନଙ୍କ ପକ୍ଷେ କୌଣସି କଥା ଅସମ୍ଭବ ନୁହେଁ । ତାଙ୍କ ଇଚ୍ଛାରେ ସବୁକିଛି ସମ୍ଭବ ହୋଇଥାଏ । ସେ ସଙ୍କଳ୍ପ କଲାମାତ୍ରେ ଅସଂଖ୍ୟ ବ୍ରହ୍ମାଣ୍ଡ ନିତ୍ୟ ସୃଷ୍ଟି କରି ପାରନ୍ତି ଓ ସଂହାର ମଧ୍ଯ କରି ପାରନ୍ତି । ତାଙ୍କ ପାଇଁ ଷୋଳ ସହସ୍ର ରାଜକନ୍ୟା ମୁକ୍ତିବା କୌଣସି କଠିନ ବିଷୟ ନୁହେଁ । ଭଗବାନଙ୍କୁ ଏତେ ରାଜକନ୍ୟା କେହି ଦେଇଦେଇ ନାହିଁ । ସେହି କନ୍ୟାମାନେ ଭୌମାସୁର କାଛା ମଧ୍ୟରେ ବନ୍ଦୀ ହୋଇ ରହିଥିଲେ । ଭଗବାନ ସେମାନଙ୍କୁ ଉଦ୍ଧାର କରି ସେମାନଙ୍କ ଇଚ୍ଛା ଅନୁସାରେ ବିଧିପୂର୍ବକ ସେମାନଙ୍କ ପାଣିଗ୍ରହଣ କରିଥିଲେ ।"

ଶୌନକ କହିଲେ—"ହେ ସୂତ ! ଏ ଭୌମାସୁର କିଏ ଓ ସେ କେଉଁଠାରୁ ଏତେ କନ୍ୟା ଆଣି ବନ୍ଦୀକରି ରଖିଥିଲା ? ଭଗବାନ ତାକୁ କାହିଁକି ମାରିଲେ, ଏ ସମସ୍ତ କଥା କୃପାକରି ଆମ୍ଭମାନଙ୍କୁ କୁହନ୍ତୁ ।"

ସୂତ କହିଲେ—"ତେବେ ଠିକ୍ ଅଛି, ମହାରାଜ ! ଏବେ ମୁଁ ଆପଣମାନଙ୍କୁ ସେହି ବିଷୟ କହି ବିବାହାଧ୍ୟାୟ ସମାପ୍ତ କରିବି ।"

## ଛପ୍ପୟ

ମଦ୍ରାଧିପ ନୃପ ବୃହତ୍ସେନ ସୁତା ଧନ ଲୈ ଧାୟେ ।
କରେଖା ଲକ୍ଷ୍ମଣା ବ୍ୟାହ ଶ୍ୟାମ ସଁଗ ମନ ହରଷାୟେ ॥
ସ୍ୟୋଂ ପଟରାନୀଂ ଆଠ ବ୍ୟାହକେ ବୃତ୍ତ କହେ୍ୟ ସବ ।
କୈସେ ସୋଲହ ସହସ ବରୀଂ ଜୋ କଥା କହୁଁ ଅବ ॥
ଭୌମାସୁର ନୃପ ଅତି ପ୍ରବଲ, ଡରପେଂ ସୁର ନର ଦୈତ୍ୟ ସବ ।
ସ୍ୱର୍ଗ, ଭୂମି, ପାତାଲ ମହଁ, କରତ ଫିରତ ଉତ୍ପାତ ନବ ॥



# ଭୌମାସୁରର ଉତ୍ପାତ

ଯଥା ହତୋ ଭଗବତା ଭୌମୋ ଯେନ ଚ ତାଃ ସ୍ତ୍ରିୟଃ ।
ନିରୁଦ୍ଧା ଏତଦାଚକ୍ଷ୍ୱ ବିକ୍ରମଂ ଶାର୍ଙ୍ଗଧନ୍ୱନଃ ॥ *

( ଶ୍ରୀ: ଭା: ୧୦ସ୍କ, ୫୯ ଅ: ୧ ଶ୍ଳୋକ )

## ଛପ୍ପୟ

ବରୁନ ଦେବଙ୍କ ଜୀଣ୍ଡି ଛତ୍ର ଅରୁ ଚଂବର ଉଡ଼ାୟ୍ୟୋ ।
ସ୍ୱର୍ଗଲୋକ ମହଁ ଗୟ୍ୟୋ ଅଦିତି କୁଂଡ଼ଲ ଅପନାୟ୍ୟୋ ॥
ମେରୁ ଶିଖରତେଂ ମଣି ପର୍ବତ ଅପନେ ଘର ଲୟ୍ୟୋ ।
ଜହଁ ଜହଁ ନିରଖେ ରତ୍ନ ଛୀନକେ ଖଲ ଚଲି ଆୟ୍ୟୋ ॥
ସୁର ସରପଞ୍ଚ ଅତି ହ୍ୱୈ ଦୁଖିତ, ଦ୍ୱାର ଦୟାନିଧିକେ ଗୟ୍ୟୋ ।
କହେ ସକଲ ଖଲକେ ଚରିତ, ସୁନତ ଶ୍ୟାମ ସଙ୍କୁଚିତ ଭୟ୍ୟୋ ॥

ଧର୍ମ ସଂସ୍ଥାପନ ଉଦ୍ଦେଶ୍ୟରେ ହିଁ ଭଗବାନ୍ ଅବତୀର୍ଣ୍ଣ ହୁଅନ୍ତି । ଧର୍ମ ସଂସ୍ଥାପନାରେ ଯଦି ତାଙ୍କର ପୁତ୍ର ବି ବିରୁଦ୍ଧାଚରଣ କରେ, ତାହାହେଲେ ସେ ତାହାର ବିନାଶ ସାଧନ କରନ୍ତି । ତାଙ୍କର ତ ସମସ୍ତେ ଆପଣାର । ଅସାଧୁଙ୍କର ବିନାଶ ଓ ସାଧୁଙ୍କର ରକ୍ଷା କରି ଧର୍ମର ଅଭ୍ୟୁତ୍ଥାନ କରିବା ଏବଂ ଅଧର୍ମର ବଳ କ୍ଷୀଣ କରିବା ପାଇଁ ଭଗବାନ ବିଭିନ୍ନ ଅବତାରରେ ଧରାବକ୍ଷରେ ଅବତୀର୍ଣ୍ଣ ହୋଇ ବିଭିନ୍ନ ଲୀଳା ପ୍ରଦର୍ଶନ କରନ୍ତି । ଅସୁରଙ୍କୁ ମଧ୍ୟ ସେହି ସୃଷ୍ଟି କରନ୍ତି ଓ ତାଙ୍କରି ବଳରେ ସେମାନେ ବଳୀୟାନ ହୁଅନ୍ତି । ତାଙ୍କରି ଇଚ୍ଛାରେ ହିଁ ଅସୁରମାନେ ତାଙ୍କ ସହିତ ଯୁଦ୍ଧରେ ପ୍ରବୃତ୍ତ ହୁଅନ୍ତି । ସେହି ସର୍ବେଶ୍ୱର ସମସ୍ତଙ୍କୁ ଏହି ପ୍ରକାର ନଚାଇ ଥାଆନ୍ତି । ସମସ୍ତଙ୍କୁ ନଚାଉଥିବା ଭଗବାନଙ୍କୁ ବାଲ୍ୟକାଳରେ

---

* ସେ ମୁନି କେମନ୍ତେ ଅନନ୍ତ । ନାରକାସୁର କଲେ ହତ ॥
ଆଣିଲେ ଅନେକ ସୁନ୍ଦରୀ । ଦାନବଙ୍କର ପ୍ରାଣ ହରି ॥
ସାରଙ୍ଗ ଧନୁ ଧରି କର । ମହା ମହିମା ଯୋଗେଶ୍ୱର ॥
ଅବନୀ ଭର ନିବାରଣ । ନିର୍ଗୁଣ ପୁରୁଷ ପୁରାଣ ॥
କହ କେମନ୍ତେ ନରହରି । କନ୍ୟା ଆଣିଲେ ଶତ ମାରି ॥

—ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ, ୬୪ ଅ

ତାଙ୍କ ମାତା ବ ନଥିଲେ ଓ ଯୁବାବସ୍ଥାରେ ଏଣୀଗଣ ଜନ ଜନ ସଙ୍କେତରେ ନଥିଲେ । ଏହା ହିଁ ତାଙ୍କର ଅଚିନ୍ତ୍ୟ ମାୟାଶକ୍ତିର ଲୀଳା ।

ସୂତ କହିଲେ—"ମୁନିଗଣ ! ଅଷ୍ଟବିବାହ କରି ଭଗବାନ୍ ଦ୍ୱାରକାକୁ ଆସି ଆନନ୍ଦରେ ରହିବାକୁ ଲାଗିଲେ । ଏବେ ସେ ମହଲରେ ବର୍ତ୍ତମାନ କଲେ । ନାରଦଙ୍କର ସ୍ୱଭାବ ହେଉଛି ସେ ନିଜେ କୌଣସି ସ୍ଥାନରେ ଚୁପ୍ ଚାପ୍ ରହନ୍ତି ନାହିଁ କିମ୍ବା ଅନ୍ୟ କାହାରିକୁ ଚୁପ୍ ଚାପ୍ ବସି ରହିବାର ସୁଯୋଗ ଦିଅନ୍ତି ନାହିଁ । ଭଗବାନ ଯେତେବେଳେ ଅବତାର ନ ନେଇ ସମୁଦ୍ରରେ ଅନନ୍ତ ଶଯ୍ୟାରେ ଶୟନ କରି ଥାଆନ୍ତି ଓ ଲକ୍ଷ୍ମୀ ତାଙ୍କର ଚରଣ ସେବା କରୁ ଥାଆନ୍ତି, ସେତେବେଳେ ସେ ତାଙ୍କୁ ଶାପ ଆଦି ଦେଇ ଅବତାର ଗ୍ରହଣ କରିବାକୁ ଉତ୍ସାହିତ କରନ୍ତି । ସେ ସୃଷ୍ଟିକାର୍ଯ୍ୟ ସର୍ବଦା କିଛି ନା କିଛି ଗୋଳମାଳ ହେଉଥାଏ । ଭଗବାନ ଆଠ ବିବାହ କରି ଯେତେବେଳେ ଚୁପ୍ ହୋଇ ବସିଗଲେ, ସେତେବେଳେ ନାରଦଙ୍କୁ ଆଦୌ ଭଲ ଲାଗିଲା ନାହିଁ ! ସେ ଚିନ୍ତା କଲେ, ବିନା ଝଗଡ଼ାଝାଟିରେ ଭଗବାନ କିଛି କରିବେ ନାହିଁ । ସେଥିପାଇଁ ସେ ସ୍ଥିର କଲେ ଯେ, ଭଗବାନଙ୍କର ତ ଅଷ୍ଟପାଟରାଣୀ, ସେମାନଙ୍କ ମଧ୍ୟରେ କିଛି ନା କିଛି ଗୋଳମାଳ ଲଗାଇଦେଲେ ସେମାନେ ନିଜ ନିଜ ମଧ୍ୟରେ ଝଗଡ଼ା କରିବେ । ଗୃହଯୁଦ୍ଧରେ ମନୁଷ୍ୟ ଅତ୍ୟନ୍ତ ଉଦ୍‌ବେଗ ପ୍ରକାଶ କରେ । ଏଥିପାଇଁ ଭଗବାନ ତ ନିଶ୍ଚୟ ଉଦ୍‌ବେଗ ପ୍ରକାଶ କରିବେ, ତଥାପି ଏହାଦ୍ୱାରା କୌଣସି ନା କୌଣସି ଲୀଳା ଆରମ୍ଭ ହୋଇଯିବ ।' ଏହା ଚିନ୍ତାକରି ସେ ସ୍ୱର୍ଗକୁ ଗଲେ । ସେଠାରୁ କଳ୍ପବୃକ୍ଷର ସୁନ୍ଦର ସୁନ୍ଦର ପାଞ୍ଚଟି ଫୁଲ ଛିଣ୍ଡାଇ ଆଣିଲେ । ସେହି ଫୁଲକୁ ନେଇ ସେ ବୀଣା ବଜାଇ ବଜାଇ ହରିଗୁଣ ଗାଇ ଗାଇ ଦ୍ୱାରକାରେ ଆସି ପହଞ୍ଚିଲେ । ସେଠାକୁ ଆସି ସେ ସର୍ବପ୍ରଥମେ ରୁକ୍ମିଣୀଙ୍କ ମହଲକୁ ଗଲେ । ତାଙ୍କୁ ତ କେଉଁଠାରେ ପ୍ରବେଶ କରିବାକୁ କେହି ବାଧା ଦେଇପାରିବେ ନାହିଁ, ତେଣୁ ସେ ନିର୍ଭୟରେ ସିଧାସଳଖ ମହଲ ଭିତରେ ପ୍ରବେଶ କଲେ । ନାରଦଙ୍କୁ ଦେଖି ଭଗବାନ ନିଜ ଆସନରୁ ଉଠିପଡ଼ି କହିଲେ—"ଆସନ୍ତୁ ନାରଦ ! ମୁଁ ବହୁଦିନ ପରେ ଆଜି ଆପଣଙ୍କ ଦର୍ଶନର ସୌଭାଗ୍ୟ ଲାଭ କଲି । ଆପଣଙ୍କର ସମସ୍ତ କୁଶଳ ତ ?"

ନାରଦ କହିଲେ—"ହଁ, ମହାରାଜ ! ଆଉ କୁଶଳ କଥା କ'ଣ ପଚାରୁଛନ୍ତି ? ଆପଣ ତ ମହଲ ମଧ୍ୟରେ ବସି ରହିଛନ୍ତି ଓ ମୁଁ ଚଉଦ ଭୁବନ ଭ୍ରମଣ କରିବାରେ ବ୍ୟ...

ଏହା ଶୁଣି ଭଗବାନ୍ ହସି ହସି କହିଲେ—"ନାରଦ ! ଆପଣଙ୍କ ପାଦରେ ତ ଚକଚକ୍ର, ତେଣୁ ଆପଣ ଏକ ସ୍ଥାନରେ କଦାପି ସ୍ଥିର ହୋଇ ରହିପାରିବେ ନାହିଁ ।

ଦେଖନ୍ତୁ, ସ୍ଥିରତା ଲାଭହୁଏ ସ୍ତ୍ରୀଙ୍କ ଯୋଗୁଁ । ଯାହାଙ୍କର ସ୍ତ୍ରୀ ନାହିଁ, ସିଏ ଫକଡ଼, ତାହାର ସ୍ଥିରତା ଆସିବ କେଉଁଠୁ ? ସେ ତ ଶୁଖିଲା ପତ୍ର ଭଳି, ଭେଳା ଓଟଭଳି, ବହୁଥିବା ଜଳ ପରି । ଯେଉଁଠି ଇଚ୍ଛା ସେଠି ପ୍ରାରବ୍ଧ ବଶତଃ ଏମାନେ ପଡ଼ନ୍ତି ଯାଆନ୍ତି । ଗୃହିଣୀଙ୍କ ଯୋଗୁଁ ହିଁ ଗୃହ । ଗୃହିଣୀ ଶବ୍ଦର ଅର୍ଥ ହେଉଛି, ସିଏ ଗୃହକୁ ଜଗି ନଥାନ୍ତି ଧରି ରଖନ୍ତି । କିନ୍ତୁ ମହାରାଜ ! ମୁଁ ତ ଆପଣଙ୍କ ପରି ବାବାଜୀ ନୁହେଁ । ମୋର ଆଠଟି ସ୍ତ୍ରୀ, ମୁଁ ଯଦି ଆପଣଙ୍କ ପରି ସର୍ବଦା ବୁଲି ବୁଲନ୍ତି, ତାହାହେଲେ ମୋ ଗୃହସ୍ଥଜୀବନ ବୃଥା ହୋଇ ଯାଆନ୍ତା । ଆପଣ କୁହନ୍ତୁ ତ ଏବେ କେଉଁଠାରୁ ଆପଣ ଆଗମନ କଲେ ?

ନାରଦ କହିଲେ—"ଭଗବାନ ! ମୁଁ ସଙ୍ଗେ ସଙ୍ଗେ ସ୍ୱର୍ଗରୁ ଆସିଲି ?"

ଭଗବାନ ପଚାରିଲେ "ସ୍ୱର୍ଗରେ ସମସ୍ତ କୁଶଳ ତ ? ଇନ୍ଦ୍ରଦେବ କୁଶଳରେ ଅଛନ୍ତି ତ ? ଆପଣ ମୋପାଇଁ ସ୍ୱର୍ଗରୁ କଣ ଆଣିଛନ୍ତି ?"

ନାରଦ କହିଲେ—"ଇନ୍ଦ୍ରଦେବ ନିଜର କୁଶଳ ନିଜେ ଆସିଲେ ଆପଣଙ୍କୁ କହିବେ । ସେ ଆସିବା ଯାଏ ଅପେକ୍ଷା କରନ୍ତୁ । ମୁଁ ଆପଣଙ୍କ ପାଇଁ ଏହି ଫୁଲଗୁଡ଼ିକ ଆଣିଛି, କାରଣ ମୋର କର୍ତ୍ତବ୍ୟ ହେଉଛି ଆପଣଙ୍କୁ ପତ୍ର ପୁଷ୍ପ ଓ ଭକ୍ତିରେ ସନ୍ତୁଷ୍ଟ କରିବା ।" ଏହା କହି ସେ ସାତଟିଯାକ କଳ୍ପବୃକ୍ଷର ନୂଆ ବଡ଼ ଫୁଲ ଭଗବାନଙ୍କ ସମ୍ମୁଖରେ ରଖିଦେଲେ । ଫୁଲଗୁଡ଼ିକ ଅତ୍ୟନ୍ତ ସୁନ୍ଦର ଥିଲା । ସେଗୁଡ଼ିକର ସୁଗନ୍ଧରେ ସମଗ୍ର ମହଲ ମହକି ଉଠିଲା ।

ଭଗବାନ କହିଲେ—"ନାରଦ ! ଅତ୍ୟନ୍ତ ସୁଗନ୍ଧିତ ପୁଷ୍ପ ଆପଣ ଆଣିଛନ୍ତି ! ସମସ୍ତ ବିଦ୍ୟାରେ ତ ଆପଣ ପାରଙ୍ଗମ ।"

ଭଗବାନ ଏହା କହୁଥିବା ସମୟରେ ରୁକ୍ମିଣୀ ସେଠାରେ ସଜବାଜ ହୋଇ ଆସି ପହଞ୍ଚିଲେ । ସେ ଆସି ନାରଦଙ୍କ ଚରଣରେ ପ୍ରଣାମ କରି ଭଗବାନଙ୍କ ସମ୍ମୁଖରେ ଠିଆ ହେଲେ । ଫୁଲର ସୁନ୍ଦର ସୁଗନ୍ଧରେ ତାଙ୍କ ମନରେ ଅତ୍ୟନ୍ତ ଆନନ୍ଦ ଜାତ ହେଲା । ସେ କହିଲେ, ପ୍ରାଣନାଥ ! ଏ ଫୁଲ ଦେଖିବାକୁ ଖୁବ୍ ସୁନ୍ଦର ଓ ଏହାର ସୁଗନ୍ଧ ଅଦ୍ଭୁତ । ଏତେ ସୁନ୍ଦର ଫୁଲ ଆପଣଙ୍କ ସମ୍ମୁଖକୁ କେଉଁଠାରୁ ଆସିଲା ?

ଭଗବାନ ହସି ହସି କହିଲେ—"ତୁମର କ'ଣ ଏ ଫୁଲ ଦେଖି ଲୋଭ ହେଉଛି ? ଏହାକୁ ଦେବର୍ଷି ନାରଦ ସ୍ୱର୍ଗରୁ ଆଣିଛନ୍ତି, ଏହା କଦାପି ମ୍ଳାନ ହୁଏ ନାହିଁ, ସର୍ବଦା

ଏହିପରି ସତେଜ ରହେ ! ଏହାର ସୁଗନ୍ଧ ମଧ୍ୟ କେବେହେଲେ ନଷ୍ଟ ହୁଏ ନାହିଁ । ତୁମେ ଏହାକୁ ନେଇଯାଅ ! ସମସ୍ତଙ୍କୁ ଗୋଟିଏ ଗୋଟିଏ ଦେଇଦିଅ ।"

ଭଗବାନ ତ ଫୁଲଗୁଡ଼ିକୁ ଗଣି ନ ଥିଲେ । ବଡ଼ ବଡ଼ ଫୁଲ ବହୁତ ଅଛି ବୋଲି ଜଣା ପଡ଼ୁଥିଲା; ରୁକ୍ମିଣୀ ଅତି ଉଲ୍ଲାସରେ ସେଗୁଡ଼ିକୁ ନିଜ ଅଞ୍ଚଳରେ ଭରି ନେଇଗଲେ ଓ ନିଜ ଭୁବନକୁ ଯାଇ ଗଣିବାରୁ ତାହା ମାତ୍ର ସାତଟି ହେଲା ! ସେ ନିଜେ ତ ଗୋଟିଏ ରଖିନେଲେ ଓ ଅନ୍ୟ ଛଅଟିକୁ ଛଅରାଣୀଙ୍କୁ ନେଇ ଦେଇଦେଲେ । କିନ୍ତୁ ସତ୍ୟଭାମାଙ୍କ ଭାଗ ପଡ଼ିଲା ନାହିଁ । ଫୁଲ ତ ଆଉ ନ ଥିଲା, ସେ ଦିଅନ୍ତେ ବା କେଉଁଠୁ ? ସତ୍ରାଜିତର କନ୍ୟା ହୋଇଥିବାରୁ ସତ୍ୟଭାମା ଅତ୍ୟନ୍ତ ଅଭିମାନିନୀ ଥିଲେ । ଏ କଥା ନାରଦ ପୂର୍ବରୁ ଜାଣିଥିଲେ । ଏହା ଥିଲା ଘରର ଭେଦ ଓ ନାରଦଙ୍କର ଏହା ହିଁ ଅଭୀଷ୍ଟ ଥିଲା ।

ଭଗବାନଙ୍କ ସହିତ ଏଣୁ ତେଣୁ କଥାବାର୍ତ୍ତା ହୋଇ ଏବେ ସେ ସମସ୍ତ ରାଣୀଙ୍କ ଅନ୍ତଃପୁର ଆଡ଼େ ଚାଲିଲେ । ସେ ଜଣ ଜଣ କରି ଯାଇ ପଚାରିଲେ,—"ମୁଁ ସ୍ୱର୍ଗରୁ ଏକ ଅଦ୍ଭୁତ ବସ୍ତୁ ଆଣିଥିଲି ତୁମେ ତାହା ପାଇଲକି ନାହିଁ ?"

ସମସ୍ତେ କହିଲେ ହଁ, ମହାରାଜ ! ନନ୍ଦନକାନନର ଦିବ୍ୟପୁଷ୍ପ ଆପଣ ଆଣିଥିଲେ, ଆମେସବୁ ତାହା ପାଇଛୁ, ଏହା ଅତ୍ୟନ୍ତ ସୁଗନ୍ଧଯୁକ୍ତ ।"

ଏହିପରି ସମସ୍ତଙ୍କୁ ପଚାରି ପଚାରି ସେ ସତ୍ୟଭାମାଙ୍କ ମହଲରେ ଯାଇ ପ୍ରବେଶ କରି ତାଙ୍କୁ ପଚାରିଲେ, ରୁକ୍ମିଣୀ ତୁମକୁ କୌଣସି ଅଦ୍ଭୁତ ବସ୍ତୁ ଦେଇଛନ୍ତି ତ ?

ସତ୍ୟଭାମା ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"କି ଅଦ୍ଭୁତ ବସ୍ତୁ ମହାରାଜ ! ମୁଁ ତ କିଛି ପାଇନାହିଁ ?"

ନାରଦ ଆଶ୍ଚର୍ଯ୍ୟ ହୋଇ କହିଲେ—"ଆରେ ତୁମକୁ ମିଳିନାହିଁ ? ମୁଁ ସ୍ୱର୍ଗରୁ କଳ୍ପବୃକ୍ଷର ବଡ଼ ସୁନ୍ଦର ସୁନ୍ଦର ଫୁଲ ଆଣିଥିଲି । ଭଗବାନ ସେ ସମସ୍ତ ରୁକ୍ମିଣୀଙ୍କୁ ଦେଇ ସମସ୍ତଙ୍କୁ ଦେଇଦେବା ପାଇଁ କହିଲେ ଓ ରୁକ୍ମିଣୀ ତାହା ସମସ୍ତଙ୍କୁ ଦେଲେ । ମୁଁ ତ ଏବେ ସମସ୍ତଙ୍କ ଘରେ ତାହା ଦେଖି ଆସିଲି । ତୁମେ ସାମନାରେ ଥିବା ସତ୍ୟାରାଣୀଙ୍କ ଘରକୁ ଦେଖ ସେଠାରୁ କିପରି ଦିବ୍ୟ ସୁଗନ୍ଧ ଭାସିଆସୁଛି ।" ସତ୍ୟାରାଣୀଙ୍କ ମହଲଟି ସତ୍ୟଭାମାଙ୍କ ମହଲ ପାଖକୁ ଲାଗିକରି ଥିଲା । କୌତୂହଳ ବଶତଃ ସେ ସେଠାକୁ ଗଲେ । ଯଥାର୍ଥରେ ପାରିଜାତ ପୁଷ୍ପ ଅତ୍ୟନ୍ତ ସୁନ୍ଦର ଥିଲା । ତାହାର ସୁଗନ୍ଧରେ ସମସ୍ତ ଭବନ ସୁବାସିତ ହେଉଥିଲା । ପୁଷ୍ପକୁ ଦେଖି ସତ୍ୟଭାମାଙ୍କ ମନରେ ବଡ଼ ଈର୍ଷା ଜାତ ହେଲା । ସେଠାରୁ ସେ ଆସି ନାରଦଙ୍କୁ କହିଲେ—"ମହାରାଜ ! ବଡ଼ରାଣୀ ଯାହାଙ୍କୁ ପ୍ରକୃତ ରାଣୀ ବୋଲି ମନେକଲେ,

ତାଙ୍କ ନିକଟକୁ ପୁଷ୍ପ ପଠାଇଦେଲେ । ମୁଁ କେଉଁ ଗୁଣୀରେ ଲେଖା ଯେ, ସେ ମୋ ପାଖକୁ ପୁଷ୍ପ ପଠାନ୍ତେ ? ମୁଁ ତ ଏ ଘରେ ଗୋଟିଏ ଦାସୀ । ହଜାର ହଜାର ଦାସୀଙ୍କ ମଧ୍ୟରୁ ମୁଁ ଜଣେ ! ଏହା କହି ସେ ମୁହଁ ଫୁଲାଇ କୁପିତ ହୋଇଗଲେ । ନାରଦ ଏହା ଦେଖି ମନେ ମନେ ଖୁବ ପ୍ରସନ୍ନ ହେଲେ । ତାଙ୍କ ଯୋଜନା ସଫଳ ହୋଇଛି ବୋଲି ସେ ମନେ କଲେ । ଏହି ପ୍ରକାର କଳହର ବୀଜ ବପନ କରି ନାରଦ ସେଠାରେ ଏପାଖ ସେପାଖ ହେବାକୁ ଲାଗିଲେ ।

ଭଗବାନ ଯେତେବେଳେ ସତ୍ୟଭାମାଙ୍କ ନିକଟକୁ ଆସିଲେ, ସେତେବେଳେ ଦାସୀମାନଙ୍କଠାରୁ ଜାଣିବାକୁ ପାଇଲେ ଯେ, ସେ ରାଣୀ କୋପ ଭବନରେ ମଳିନ ବସନ ପରିଧାନ କରି କ୍ରୋଧରେ କଳି କରିବାକୁ ପ୍ରସ୍ତୁତ ହୋଇ ରହିଛନ୍ତି । ଏହା ଶୁଣିବା ମାତ୍ରେ ଭଗବାନଙ୍କ ମୁଣ୍ଡ ଘୁରିଗଲା । ସେ ଜାଣିପାରିଲେ, ଏ ସମସ୍ତ ନାରଦଙ୍କର କାଣ୍ଡ । ସେ ଅବଶ୍ୟ କୌଣସି କଳହର ବୀଜ ବପନ କରି ଏଠାରୁ ଚାଲିଗଲେ । ସେ ସିଧା ସତ୍ୟଭାମାଙ୍କ ନିକଟକୁ ଗଲେ ଓ କହିଲେ—"ପ୍ରିୟେ ! ଘଟଣା କ'ଣ ? ତୁମେ ଭାରି କ୍ରୋଧରେ ଜର୍ଜରିତ ହୋଇ ଏ କୋପଭବନରେ କାହା ସହିତ ଝଗଡ଼ା କରିବା ପାଇଁ ପ୍ରସ୍ତୁତ ହୋଇ ରହିଛ ?"

ସତ୍ୟଭାମା କ୍ରୋଧ ପ୍ରକାଶ କରି କହିଲେ—"ନା ମହାରାଜ ! ସେ କଥା ଆପଣଙ୍କୁ କହି କିଛି ଲାଭ ନାହିଁ । ଆପଣଙ୍କର ଯେଉଁ ରାଣୀ ଅତ୍ୟନ୍ତ ପ୍ରିୟ, ଆପଣ ତା ନିକଟକୁ ଯାଆନ୍ତୁ ! ମୋତେ ତ ଆପଣ କେଉଁଠାରୁ ଧରି କରି ଆଣିଛନ୍ତି, ମୁଁ ତ ଆପଣଙ୍କର ଜଣେ ରକ୍ଷିତା ।"

ଭଗବାନ ପ୍ରେମରେ କହିଲେ—"କଥାଟା କ'ଣ ମୁଁ ଟିକିଏ ଶୁଣେ, କ'ଣ ଘଟିଲା ମୁଁ ତ କିଛି ଜାଣିପାରୁ ନାହିଁ ? ଏତେ କ୍ରୋଧ ହେବାର ତ କୌଣସି କାରଣ ନାହିଁ । ମୋର ଯଦି କୌଣସି ଅପରାଧ ହୋଇଛି, ତାହାହେଲେ ମୋତେ କ୍ଷମା କରିଦିଅ । ଯଦି କ୍ଷମା କରିବାକୁ ନ ଚାହୁଁଚ, ତାହାହେଲେ ଯେଉଁ ଦଣ୍ଡ ଦେବାକୁ ଚାହୁଁଚ ଦିଅ ।"

ଏହା ଶୁଣି ସତ୍ୟଭାମାଙ୍କ ମାନ ଆହୁରି ବଢ଼ିଗଲା । ସେ ମୁହଁ ବୁଲାଇ କହିଲେ—"ମୁଁ କିଏ ଯେ ତୁମକୁ ଦଣ୍ଡ ଦେବି ? ସେହି କେବଳ ତୁମକୁ ଦଣ୍ଡ ଦେଇ ପାରନ୍ତି, ଯାହାଙ୍କୁ ତୁମେ ଭଲ ଭଲ ଜିନିଷ ଦେଇଥାଅ ।"

ଭଗବାନ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"କେଉଁ ଭଲ ଜିନିଷ କେତେବେଳେ ମୁଁ କାହାକୁ ନେଇ ଦେଲି କିଏ ତ ଦେଖି ? ତୁମଠାରୁ ତ ପ୍ରଥମେ ମୁଁ ଏ କଥା ଶୁଣୁଛି । କାହିଁ, ମୋର ତ ମନେ ପଡ଼ୁନାହିଁ ଯେ, କାହାକୁ ମୁଁ କୌଣସି ବସ୍ତୁ

ବା ଅଭୂଷଣ ଅଧିକ ପ୍ରଦାନ କରିଛ ? ଯାହା ଯେତେବେଳେ ମୁଁ ଆଣେ, ସମସ୍ତଙ୍କୁ ତ ସମଭାବରେ ବାଣ୍ଟି ଦିଏଁ ।"

ସତ୍ୟଭାମା କହିଲେ—"ହଁ ମହାରାଜ ! ଆପଣଙ୍କର ପ୍ରିୟ ରାଣୀ, ତାଙ୍କର କଥା କେବଳ ଆପଣଙ୍କର ସ୍ମରଣ ରହେ । ସେମାନଙ୍କ ପାଖକୁ ଆପଣ ପ୍ରତ୍ୟେକ ଜିନିଷ ପଠାଇ ଦିଅନ୍ତି; କିନ୍ତୁ ଦାସୀମାନଙ୍କୁ ଆପଣ ଭୁଲିଯାଆନ୍ତି ।"

ଭଗବାନ ଏଥିରେ ଟିକିଏ ବିରକ୍ତ ହୋଇ କହିଲେ—"କଥାଟା କ'ଣ ମୋତେ କୁହ । ପ୍ରକୃତ କଥା ନ କହି ଅଯଥା ଏଣୁ ତେଣୁ କଥା କହି ଲାଭ କ'ଣ ? ମୁହଁଟାକୁ ସେପରି ଅଥାର ହ୍ରାନ୍ତି ଭଳି ନ କରି ମୋ ଆଗରେ କୁହ ମୁଁ କେଉଁ ବସ୍ତୁ ତୁମକୁ ନ ଦେଇଛି ।"

ସତ୍ୟଭାମା କହିଲେ—"ସ୍ୱର୍ଗରୁ ଯେଉଁ କଳ୍ପବୃକ୍ଷର ପୁଷ୍ପ ଆସିଥିଲା, ତାହା ସମସ୍ତଙ୍କ ମହଲକୁ ସୁବାସିତ କରୁଅଛି । କିନ୍ତୁ ମୁଁ କେବଳ ସେଥିରୁ ବଞ୍ଚିତ । କାରଣ ମୁଁ ଆପଣଙ୍କର ବଡ଼ରାଣୀଙ୍କ ଦାସୀମାନଙ୍କର ଦାସୀ ।"

ଭଗବାନ କହିଲେ—"ଛି, ଛି, ସ୍ତ୍ରୀଲୋକମାନଙ୍କର ହୃଦୟ କେତେ ଛୋଟ ? ସାମାନ୍ୟ ଘଟଣାକୁ ନେଇ କେତେ ବିରାଟ ସମସ୍ୟା ସେମାନେ ସୃଷ୍ଟି କରିପାରନ୍ତି । ଆକାଶ ପାତାଳ ଏକ କରିଦିଅନ୍ତି । ଏ କେଉଁ କଥାରେ କଥା ଯେ, ଏଥିପାଇଁ ଏତେ ଅଭିମାନ ? ସାମାନ୍ୟ ଫୁଲ ପାଇଁ ଏତେ ବାତୁଳ ? ରାମ ରାମ ।

ସତ୍ୟଭାମା ଅଧିକାର ସ୍ୱରରେ କହିଲେ—"ହଁ ମହାରାଜ ! ସ୍ତ୍ରୀମାନଙ୍କର ହୃଦୟ ତ ଅତି ଛୋଟ । ପୁରୁଷଙ୍କର ତ ବଡ଼ ବିଶାଳ ହୃଦୟ, ସେମାନେ ସେହି ଗୋଟିଏ କଥା ସମସ୍ତ ସ୍ତ୍ରୀଙ୍କ କାନରେ କହିଥାନ୍ତି ଯେ, "ମୁଁ ତୁମକୁ ସବୁଠାରୁ ଅଧିକ ଭଲପାଏ । ଜଣକ ପାଖରୁ ଯାଇ ଅନ୍ୟ ଜଣକ ପାଖରେ ସେ ଏହିପରି କୁହନ୍ତି । ନିଜ ସ୍ୱାର୍ଥସିଦ୍ଧି ପାଇଁ ସେ ଏହିପରି ପ୍ରେମ ନିବେଦନ କରିଥାଆନ୍ତି । ପୁରୁଷଙ୍କପରି କପଟୀ ଅନ୍ୟ କେହି ହୋଇ ନ ପାରନ୍ତି । ମୁଁ ଫୁଲ ପାଇଁ କାଙ୍ଗାଳ ନୁହେଁ । କିନ୍ତୁ ମହାରାଜ ! ମୋର ମାନ ସମ୍ମାନ ତ ପୁଣି ଅଛି ? ଫୁଲ ତ ଅତି ତୁଚ୍ଛ ବସ୍ତୁ । କିନ୍ତୁ ଏଥିରୁ ଆପଣଙ୍କ ହୃଦୟର ଅନ୍ତର୍ନିହିତ ଭାବ ପ୍ରକାଶ ପାଇଛି । ଯେତେବେଳେ ଆପଣ ସାମାନ୍ୟ ଫୁଲଟିଏ ପାଇଁ ଏତେ ଭେଦଭାବ ରଖୁଛନ୍ତି, ସେତେବେଳେ ମଣିମାଣିକ୍ୟ ପାଇଁ କେତେ ଯେ ଭେଦଭାବ ରଖୁ ନଥିବେ, ତାହା କହି ହେଉନାହିଁ । ମୋ ଆଖିରେ ଧୂଳି ପକାଇ ଆପଣ ଚୁପ୍ ଚାପ ସବୁ କିଛି ରାଣୀମାନଙ୍କ ପାଖକୁ ପଠାଇ ଦେଉଛନ୍ତି । ଆଜ ଯେତେବେଳେ ଧରାପଡ଼ିଗଲେ, ସେତେବେଳେ କହୁଛନ୍ତି କ'ଣ ନା, "ସ୍ତ୍ରୀଲୋକମାନଙ୍କ ହୃଦୟ ଅତ୍ୟନ୍ତ ଛୋଟ ।"

ଭଗବାନ ଅତି ପ୍ରେମରେ ତାଙ୍କ ମୁଣ୍ଡ ଉପରେ ହାତ ରଖି ଶପଥ କରି କହିଲେ—"ଦେଖ ମୁଁ ଶପଥ କରି କହୁଛି, ମୋତେ ପ୍ରକୃତରେ ଜଣା ନାହିଁ ଯେ ସ୍ୱର୍ଗରୁ କେତେ ଫୁଲ ଆସିଥିଲା ଓ କାହାକୁ ସେ ସବୁ ଦିଆଗଲା । ନାରଦ ଆଣି ମୋ ଆଗରେ ଥୋଇଦେଲେ ଓ ମୁଁ ତାହା ଏକ ସାଧାରଣ ବସ୍ତୁ ଭାବିଲି । ଏ ମଧ୍ୟରେ ରୁକ୍ମଣୀ ଆସି ସେ ସବୁ ଉଠାଇନେଲେ । ତୁମ ପାଖକୁ ସେ ପଠାଇ ନାହାନ୍ତି । ଏଥିରେ କଛି ଭାବିବାର ନାହିଁ । ତୁମେ ଚିନ୍ତା କର ନା, ଗୋଟିଏ କାହିଁକି, ମୁଁ ସେହି କଳ୍ପବୃକ୍ଷର ଗଛ ଆଣି ତୁମ ମହଲ ସମ୍ମୁଖରେ ଲଗାଇ ଦେବି । ତୁମେ ଯେତେ ଇଚ୍ଛା ସେତେ ଫୁଲ ବାଣ୍ଟିବ ।

ସତ୍ୟଭାମା ଏଥିରେ ପ୍ରସନ୍ନ ହୋଇ କହିଲେ—କ'ଣ ସତ କହୁଛ ? ମୋତେ ଭୁଲାଉ ନାହଁ ତ ? ମୋ ସହିତ ଛନ୍ଦ କପଟ କରୁ ନାହଁ ତ ?

ଭଗବାନ କହିଲେ—"ମୁଁ ଏବେ ତୁମ ମନରେ କପରି ବିଶ୍ୱାସ ଜନ୍ମାଇବି ? କହିବ ଯଦି ପଞ୍ଝା ଲେଖିଦେବି ।"

ସତ୍ୟଭାମା ଅତ୍ୟନ୍ତ ପ୍ରୀତ ହୋଇ କହିଲେ—ନା ପ୍ରାଣନାଥ ! ମୋର ଆପଣଙ୍କ କଥାରେ ବିଶ୍ୱାସ ଅଛି । ଦେଖନ୍ତୁ, ଯେପରି ଏହା ଭୁଲି ନ ଯାଆନ୍ତି । ମୋ ଅଗଣାରେ ଯେପରି ନିଶ୍ଚିତ ଭାବେ କଳ୍ପବୃକ୍ଷ ଲଗାଯାଏ ।'

ଭଗବାନ କହିଲେ—"ତେବେ ଠିକ୍ ଅଛି । ଯଥା ସମୟରେ ମୁଁ କଳ୍ପବୃକ୍ଷ ଲଗାଇଦେବି । ଏହା କହି ଭଗବାନ୍ ସୁଧର୍ମା ସଭାକୁ ଗ୍ଲଲିଗଲେ । ଏ ମଧ୍ୟରେ ଅନେକ ଦିନ ଚ୍ଲଲିଗଲା ।

ଦିନେ ଭଗବାନ ସତ୍ୟଭାମାଙ୍କ ମହଲକୁ ଯାଇଥିଲେ । ସେହି ସମୟରେ ଦ୍ୱାରପାଳ ଆସି ଖବର ଦେଲା, ପ୍ରଭୋ ! ଦେବରାଜ ଇନ୍ଦ୍ର ଆପଣଙ୍କ ଦର୍ଶନ ପାଇଁ ଆସି ଦ୍ୱାର ଦେଶରେ ଠିଆ ହୋଇଛନ୍ତି ।"

ଭଗବାନ ଆଜ୍ଞା ଦେଲେ—"ତାଙ୍କୁ ଆଦର ପୂର୍ବକ ଭିତରକୁ ନେଇଆସ ।"

ଭଗବାନଙ୍କ ଆଜ୍ଞାପାଇ ଦ୍ୱାରପାଳ ଆଦର ସହକାରେ ଦେବେନ୍ଦ୍ରଙ୍କୁ ଭିତରକୁ ନେଇ ଆସିଲା । ଇନ୍ଦ୍ର ଭିତରକୁ ଆସି ତାଙ୍କର ମଣିମୁକ୍ତା ଖଚିତ ମୁକୁଟଯୁକ୍ତ ଶିରକୁ ଭଗବାନଙ୍କ ଚରଣରେ ରଖି ପ୍ରଣାମ କଲେ ଓ ହାତ ଯୋଡ଼ି ଭଗବାନଙ୍କ ଆଗରେ ଠିଆ ହେଲେ । ଭଗବାନ କହିଲେ—"କୁହନ୍ତୁ ଦେବରାଜ ! ଆପଣଙ୍କର ସମସ୍ତ କୁଶଳ ତ ? ସ୍ୱର୍ଗରେ କୌଣସି ଉତ୍ପାତ ହୋଇ ନାହିଁ ତ ? ଆପଣ କାହିଁକି ଏପରି ଉଦାସ ଦେଖାଯାଉଛନ୍ତି ?"

ଦେବେନ୍ଦ୍ର ହାତଯୋଡ଼ି କହିଲେ—"ପ୍ରଭୋ ! ଯେତେବେଳେ ମୁଁ ଆପଣଙ୍କ ମହିମାକୁ ଭୁଲିଯାଇ ନିଜକୁ ସର୍ବ ସମର୍ଥ ଈଶ୍ୱର ବୋଲି ଜ୍ଞାନ କରିବାକୁ ଲାଗିଲି, ସେତେବେଳେ ଦୁଃଖୀ ହୋଇଗଲି । ଏବେ ପ୍ରାଗ୍‌ଜ୍ୟୋତିଷ୍ ପୁରର ରାଜା ଭୌମ ପୃଥିବୀ ବକ୍ଷରେ ଓ ସ୍ୱର୍ଗପୁରରେ ଅତି ଉତ୍ପାତ କରୁଅଛି ।"

ଭଗବାନ ପଚାରିଲେ—"ସେ କ'ଣ ଖୁବ୍ ଉପଦ୍ରବ କରୁଛି ?"

ଇନ୍ଦ୍ର କହିଲେ—ଭଗବାନ ! ଆପଣ ତ ସର୍ବଜ୍ଞ; କିନ୍ତୁ ଆପଣ ଯେତେବେଳେ ପଚାରୁଛନ୍ତି, ମୁଁ ତାହା ଆପଣଙ୍କୁ କହୁଛି । ସେ ଅନେକ ରାଜାଙ୍କର ବହୁ ସୁନ୍ଦରୀ ସୁନ୍ଦରୀ କନ୍ୟା ଅପହରଣ କରିଅଛି । ସେମାନଙ୍କ ସହିତ ସେ ଏ ପର୍ଯ୍ୟନ୍ତ ବିବାହ କରି ନାହିଁ; କିନ୍ତୁ ଅଧିକ ସଂଖ୍ୟକ କନ୍ୟା ଅପହରଣ କରି ସାରିଲେ ସେ ସେମାନଙ୍କୁ ଏକସଙ୍ଗେ ବିବାହ କରିବାପାଇଁ ସ୍ଥିର କରିଛି । ଏବେ ସେ ସମସ୍ତଙ୍କୁ ବନ୍ଦିନୀ କରି ନିଜ କାରା ମଧ୍ୟରେ ରଖିଛି ; ତେଣୁ ରାଜାମାନେ ତା ଉପରେ ଅତ୍ୟନ୍ତ ଅସନ୍ତୁଷ୍ଟ । କେବଳ ଧରାବକ୍ଷରେ ନାହିଁକି, ସେ ସ୍ୱର୍ଗରେ ମଧ ବହୁତ ଉତ୍ପାତ କରୁଛି । ଥରେ ସେ ବରୁଣଙ୍କ ନିକଟକୁ ଯାଇ କହିଲା,—"ବରୁଣ ଦେବ ! ମୁଁ ଶୁଣିବାକୁ ପାଉଛି, ତୁମେ ଅତ୍ୟନ୍ତ ବଳବାନ୍ । ଆସ, ମୋ ସହିତ ଯୁଦ୍ଧ କରିବ ।"

ବରୁଣ ତ ଜାଣିଥିଲେ ଯେ, ସେ ଆପଣଙ୍କଠାରୁ ବରପାଇ ଅବଧ ହୋଇଛି । ତେଣୁ ସେ ତା ସହିତ ଯୁଦ୍ଧ କରିବାପାଇଁ ରାଜି ହେଲେ ନାହିଁ । ତେଣୁ ସେ ତାଙ୍କର ଦିବ୍ୟ ରାଜଛତ୍ର ନେଇ ଚାଲି ଆସିଲା । ଦିନେ ସେ ମୋ ନିକଟକୁ ଯାଇ ଯୁଦ୍ଧ ପାଇଁ ଆହ୍ୱାନ କଲା । ଆପଣଙ୍କର ବରପୁତ୍ର ଜାଣି ମୁଁ ତା ସହିତ ଯୁଦ୍ଧ କରିବାକୁ ଚାହିଲି ନାହିଁ । ତେଣୁ ସେ ମୋ ମାତାଙ୍କର ଦିବ୍ୟ କୁଣ୍ଡଳ, ଯେଉଁଥିରୁ କି ସର୍ବଦା ଅମୃତ ବହୁଥିଲା, ତାହା ନେଇ ଚାଲି ଆସିଲା । ସେ ସୁମେରୁ ପର୍ବତସ୍ଥିତ ମଣିପର୍ବତକୁ ଏହିପରି ତଡ଼ାତଡ଼ି କରି ନିଜର ଅଧିକାର କରିନେଲା । ଯେ ପର୍ଯ୍ୟନ୍ତ ଆପଣ ତାକୁ ବିନାଶ ନ କରିଛନ୍ତି, ସେ ପର୍ଯ୍ୟନ୍ତ ସେ କାହାରିକୁ ମାନିବ ନାହିଁ ।"

ଭଗବାନ କହିଲେ—"ତେବେ ଠିକ୍‌ଅଛି, ତୁମେ ଯାଅ ! ମୁଁ ତା କଥା ବୁଝିବି ।" ଏହା ଶୁଣି ଦେବେନ୍ଦ୍ର ଭଗବାନଙ୍କ ପାଦପଦ୍ମରେ ପ୍ରଣାମ କରି ନିଜ ଲୋକକୁ ଚାଲିଗଲେ ।

ଶୌନକ ପଚାରିଲେ—"ହେ ସୂତ ! ଦେବେନ୍ଦ୍ର ଭୌମାସୁରକୁ ଭଗବାନଙ୍କ ପୁତ୍ର ବୋଲି କହିଲେ । ଏ ବିଷୟରେ ଆମ୍ଭେମାନେ ଜାଣିବାକୁ ଚାହୁଁ ଯେ, ସେ ଭଗବାନଙ୍କର ପୁତ୍ର କିପରି ହେଲା ?"

ଏହା ଶୁଣି ସୂତ କହିଲେ—"ମହାରାଜ ! ଭଗବାନଙ୍କର ଚାରିମୂର୍ତ୍ତି, ଏକ ମୂର୍ତ୍ତିରେ ସେ ଘୋର ମୃତ୍ୟୁ ତପ କରନ୍ତି । ଯଥା—ବଦରୀ ବନରେ ନରନାରାୟଣ । ଅନ୍ୟ

ମୂର୍ତ୍ତିରେ ସେ ବିଶ୍ୱକୁ ପରିପାଳନ କରନ୍ତି । ଯଥା—ବିଷ୍ଣୁ ମୂର୍ତ୍ତିରେ ଅଥବା ମନନ୍ତରାବ-ତାର ମୂର୍ତ୍ତିରେ । ଏକ ମୂର୍ତ୍ତିରେ ସେ ଐଶ୍ୱର୍ଯ୍ୟ ଭୋଗ କରନ୍ତି । ଯଥା ଶ୍ରୀକୃଷ୍ଣ ମୂର୍ତ୍ତିରେ ଓ ଏକ ମୂର୍ତ୍ତି ଅନନ୍ତ ଶଯ୍ୟାରେ କ୍ଷୀରାବ୍ଧିରେ ଶୟନ କରିଥିବା ନାରାୟଣ ମୂର୍ତ୍ତି । ଏତେ ମୂର୍ତ୍ତି ହୋଇଥିଲେ ମଧ୍ୟ ସେ ଏକ । ସେହି ସବୁ ମୂର୍ତ୍ତିରେ କୌଣସି ପ୍ରଭେଦ ନାହିଁ । ଯେପରି କୂପ ମଧ୍ୟରୁ ଶତଛିଦ୍ରରେ ରସି ବନ୍ଧାଯାଇ ଅନେକ ପାତ୍ରରେ ଜଳ କଢ଼ା ଯାଉଥିଲେ ମଧ୍ୟ କୂପ ମଧ୍ୟରେ ଥିବା ଜଳ ପୁନଶ୍ଚ ଭରିଯାଏ, ସେହିପରି ଭଗବାନ ଚତୁର୍ମୂର୍ତ୍ତି ହୋଇଥିଲେ ମଧ୍ୟ ଭିତର ଏକ ଶରୀର ପରି ଯୁଗପ୍ରକାର କାର୍ଯ୍ୟ କରୁଥିଲେ ମଧ୍ୟ ସେ ଏକ ତତ୍ତ୍ୱ । ଚତୁର୍ମୂର୍ତ୍ତି ଭଗବାନ ଏକ ମୂର୍ତ୍ତିରେ ଯେଉଁ କାର୍ଯ୍ୟ କରି କରି ଉପରତ ହୋଇଯାଆନ୍ତି, ସେତେବେଳେ ଅନ୍ୟ କାର୍ଯ୍ୟ କରିବାକୁ ଆରମ୍ଭ କରନ୍ତି । ଯେପରି କି ତପସ୍ୟା କରି କରି ଥକିଗଲେ ସେ ଯାଇ ବିଶ୍ୱ ପାଳନ କରନ୍ତି ଓ ଅନ୍ୟ ମୂର୍ତ୍ତିରେ ଆସି ତପ କରନ୍ତି । ସେ ପୁନଶ୍ଚ ଯେତେବେଳେ ବିଶ୍ୱକୁ ପାଳନ କରି କରି ଥକି ପଡ଼ନ୍ତି, ସେତେବେଳେ ଐଶ୍ୱର୍ଯ୍ୟ ଭୋଗରେ ମଜ୍ଜି ଯାଆନ୍ତି । ସେ ଐଶ୍ୱର୍ଯ୍ୟ ଭୋଗରେ ଥକି ପଡ଼ିଲେ ପୁନଶ୍ଚ ଅନନ୍ତ ଶଯ୍ୟାରେ ଶୋଇ ପଡ଼ନ୍ତି । ଶୋଇ ଶୋଇ ନିଦ୍ରାଭିଭୂତ ହେବା ପରେ ପୁନଶ୍ଚ ଉଠି ତପସ୍ୟା କରିବାକୁ ଲାଗନ୍ତି । ଅଭିଭୂତ ହେବା ଓ ଥକି ପଡ଼ିବା ଆଦି ଭଗବାନଙ୍କଠାରେ ସମ୍ଭବ ନୁହେଁ; କିନ୍ତୁ ଉପଚାର ବଶତଃ ଏହି ସବୁ ଶବ୍ଦ ପ୍ରୟୋଗ କରାଯାଇ ଥାଏ । ଭଗବାନଙ୍କର ତିନି ପତ୍ନୀ । ସେମାନଙ୍କର ନାମ ଭୂ ଦେବୀ, ଶ୍ରୀ ଦେବୀ ଓ ଲୀଳା ଦେବୀ । ଏହିମାନଙ୍କ ସହିତ ହିଁ ଭଗବାନ ପ୍ରକୃତିରେ କ୍ରୀଡ଼ା କରନ୍ତି । ଭଗବାନ ଯେତେବେଳେ ତପ କରୁଥିଲେ,ଭୂଦେବୀ ମଧ୍ୟ ସକାମ ଭାବରେ ତପସ୍ୟା କରିବାରେ ପ୍ରବୃତ୍ତ ହୋଇଥିଲେ । ତପସ୍ୟା ଅନ୍ତେ ଭଗବାନ ସାୟଂ କାଳରେ ଜାଗ୍ରତ ହୁଅନ୍ତି । ଜାଗ୍ରତ ହେବାକ୍ଷଣି ତପସ୍ୟାରତ ସ୍ୱଦା 'ଭୂ' ବା ପୃଥିବୀ ଉପରେ ପ୍ରସନ୍ନ ହୋଇ କହନ୍ତି—"ତୁମେ ଅନେକ ତପ କଲଣି । ଏବେ ମୋଠାରୁ କୌଣସି ବର ମାଗି ନିଅ ।"

ଭୂ ଦେବୀ କହନ୍ତି—ମହାରାଜ ! ମୋର ଏକ ପୁତ୍ର କାମନା, ଆପଣ ମୋତେ ଗୋଟିଏ ପୁତ୍ର ପ୍ରଦାନ କରନ୍ତୁ ।"

ସତ୍ୟସଙ୍କଳ୍ପ ପ୍ରଭୁଙ୍କ ପକ୍ଷେ କୌଣସି କଥା ଅସମ୍ଭବ ନୁହେଁ । ସେ କହନ୍ତି— "ତୁମର ପୁତ୍ର ହେବ; କିନ୍ତୁ ସେ ଅସୁର ପ୍ରକୃତିର ହେବ ।"

ଭୂ ଦେବୀ ଡରିଯାଇ କହନ୍ତି—"ମହାରାଜ ! ଅସୁର ପୁତ୍ର ହେଲେ ମୋର କେଉଁ କାମରେ ଆସିବ ? ଆପଣ ହେଉଛନ୍ତି ଦେବାଧିପତି, ତେଣୁ ଆପଣଙ୍କ ପୁତ୍ର ଅସୁର ହେବା ଉଚିତ ନୁହେଁ ।

ଭଗବାନ କହନ୍ତି—"ସମସ୍ତାନୁସାରେ ସୁର, ଅସୁର, ଦୈତ୍ୟ, ଗନ୍ଧର୍ବ, ଯକ୍ଷ, ନାଗ, ସରୀସୃପ, ମନୁଷ୍ୟ, ଅଣ୍ଡଜ, ପିଣ୍ଡଜ ସ୍ୱେଦଜ ଓ ଉଦ୍ଭିଜ ଏ ସମସ୍ତଙ୍କର ଉତ୍ପତ୍ତି

ମୋଠାରୁ ହିଁ ହୋଇଥାନ୍ତି । ତୁମେ ଅସୁର୍ଯ୍ୟ ବେଳା ସନ୍ଧ୍ୟା ସମୟରେ ପୁତ୍ର ଇଚ୍ଛା କଲ, ତେଣୁ ଅସୁର୍ଯ୍ୟ ବେଳାରେ ହିଁ ଅସୁର ପୁତ୍ର ହୁଅନ୍ତି ।"

ଭୂ ଦେବୀ କହିଲେ—"ତେବେ ଠିକ୍ ଅଛି, ଅସୁର ବ ହେଉ କିନ୍ତୁ ଆପଣ ମୋତେ ବର ଦିଅନ୍ତୁ ଯେ, ଆପଣ ମୋର ପୁତ୍ର ସେହି ଅସୁରକୁ ସୁଦର୍ଶନରେ ମାରିବେ ନାହିଁ । କାରଣ ଆପଣ ଅସୁରଙ୍କୁ ସୁଦର୍ଶନରେ ମାରିଥାଆନ୍ତି ।

ଭଗବାନ ଉପେକ୍ଷା ସ୍ୱରରେ କହିଲେ—"ମରିବା ଜନ୍ମିବା ତ ଶରୀରଧାରୀଙ୍କ ପାଇଁ ଚିରନ୍ତନ କଥା । ଏଥିପାଇଁ ଅଜ୍ଞାନୀମାନେ ହିଁ କେବଳ ଚିନ୍ତା କରନ୍ତି । ଏ ଦୁଇଟି ସାଧାରଣ ସ୍ଥିତି । ତଥାପି ମୁଁ ତୁମ ପୁତ୍ରକୁ ସେ ପର୍ଯ୍ୟନ୍ତ ମାରି ନ ପାରେ, ଯେ ପର୍ଯ୍ୟନ୍ତ ତୁମେ ନିଜେ ତାକୁ ମାରିବାକୁ ନ କହିଛ ।"

ଏହା କହି ଭଗବାନ ନିଜ କାର୍ଯ୍ୟରେ ବ୍ୟସ୍ତ ରହିଲେ । ସେହି ସମୟରେ ଭୂଦେବୀଙ୍କର ନରକାସୁର ନାମକ ଏକ ପୁତ୍ର ଉତ୍ପନ୍ନ ହେଲା । ଭୂମିଠାରୁ ଉତ୍ପନ୍ନ ହୋଇ ଥିବାରୁ ତାହାକୁ ଭୌମାସୁର ମଧ୍ୟ କୁହାଯାଏ ।

ଭୌମାସୁର ଅତ୍ୟନ୍ତ ବଳୀ ଥିଲା । ଭଗବାନଙ୍କ ବରଦାନ ଯୋଗୁଁ ତାକୁ କେହି ମାରି ପାରିଲେ ନାହିଁ । ସେହି ନରକାସୁର ହିମାଳୟର ପ୍ରାଗ୍‌ଜ୍ୟୋତିଷପୁର ନାମକ ନଗରରେ ରାଜଧାନୀ ନିର୍ମାଣ କରାଇ ଛତ୍ରପତି ରୂପରେ ଅବସ୍ଥିତ ହୋଇ ରାଜ୍ୟ ଶାସନ କରୁଥିଲା । ତା ଉପରେ ସମସ୍ତ ଲୋକପାଳ ଅରହିର ହୋଇ କମ୍ପୁଥିଲେ । ସେ ଯେତେବେଳେ ସ୍ୱର୍ଗକୁ ଯାଇ ଇନ୍ଦ୍ରଙ୍କ ମାତାଙ୍କର କୁଣ୍ଡଳ ଛଡ଼ାଇ ଆଣିଲା ଓ ତାଙ୍କୁ ଘୋର ଅପମାନ ଦେଲା, ସେତେବେଳେ ଅନ୍ୟ କୌଣସି ଉପାୟ ନ ଦେଖି ଦେବରାଜ ଇନ୍ଦ୍ର ଭଗବାନ ଦ୍ୱାରକାନାଥଙ୍କ ନିକଟରେ ଶରଣ ପଶିଲେ । ତାଙ୍କ ଆଗରେ ନିଜର ଦୁଃଖ ଜଣାଇଲେ ଓ ତାଙ୍କ ଦୁଃଖ ଶୁଣି ଭଗବାନ ଆଶ୍ୱାସନା ଦେଲେ । ଭଗବାନ କହିଲେ, ତୁମେ ଯାଅ, ମୁଁ ତାହାର ପ୍ରତିକାର କରୁଛି । ଏହି ଆଶ୍ୱାସନା ପାଇ ଦେବରାଜ ଇନ୍ଦ୍ର ସ୍ୱର୍ଗକୁ ଚାଲିଗଲେ ।"

ଶୌନକ ପଚାରିଲେ—"ହଁ, ତା ପରେ କ'ଣ ଘଟିଲା କୁହନ୍ତୁ ସୂତ !"

ସୂତ କହିଲେ—"ହଁ ମହାରାଜ ! ଆଉ ହେବ କ'ଣ ? ଏବେ ଭଗବାନ ତ ବଚନବଦ୍ଧ ହୋଇ ସାରିଛନ୍ତି, ତେଣୁ ତାଙ୍କୁ ନିଶ୍ଚିତ ଭାବରେ ପ୍ରତିକାର କରିବାକୁ ପଡ଼ିବ । ତାଙ୍କର କାର୍ଯ୍ୟ ତ ହେଉଛି ଦୁଷ୍ଟ ଦଳନ ଓ ସନ୍ଥ ପାଳନ । ଏହା ବ୍ୟତୀତ ସେହି ବନ୍ଦୀ ରାଜକନ୍ୟାମାନଙ୍କୁ ଉଦ୍ଧାର କରିବା ଲାଳସା ମଧ୍ୟ ତାଙ୍କର ଥିଲା । "ଏକସଙ୍ଗେ ବହୁତ କାର୍ଯ୍ୟ ହୋଇ ପାରିବ । ବହୁତ ବସ୍ତୁ ମିଳିପିବ ।" ଏହିକଥା ଚିନ୍ତା କରି ସେ

ଗରୁଡ଼ଙ୍କୁ ଆବାହନ କଲେ । ଆବାହନ କରିବାମାତ୍ରେ ଗରୁଡ଼ ଡେଣା ହଲାଇ ଉଡ଼ି ଉଡ଼ି ଆସି ତାଙ୍କ ପାଖରେ ପହଞ୍ଚିଗଲେ ।

ଗରୁଡ଼ ଆସିଯିବାରୁ ଭଗବାନ ସତ୍ୟଭାମାଙ୍କୁ କହିଲେ—"ଚାଲ, ତୁମକୁ ମୁଁ ସଙ୍ଗରେ ନେଇ ହିମାଳୟରେ ଭ୍ରମଣ କରାଇ ଆଣିବି ।"

ସ୍ତ୍ରୀ ଲୋକମାନେ ତ ବୁଲାବୁଲି କରିବା କଥା ଶୁଣିଲେ ଚଞ୍ଚଳ ହୋଇ ଉଠନ୍ତି । ସତ୍ୟଭାମା ସଙ୍ଗେ ସଙ୍ଗେ କହିଲେ—"ଚାଲନ୍ତୁ ପ୍ରାଣନାଥ ! ଆପଣଙ୍କ ସହିତ ବୁଲାବୁଲି କରିବାରେ ମୋର ଭାରି ଆନନ୍ଦ ।" ଏହା କହି ସେ ସଜବାଜ ହୋଇ ଭଲ ଭଲ ବସ୍ତ୍ର ଆଭୂଷଣରେ ନିଜକୁ ସୁସଜ୍ଜିତ କରି ଯିବାପାଇଁ ପ୍ରସ୍ତୁତ ହୋଇଗଲେ । ଭଗବାନ ଗରୁଡ଼ ପୃଷ୍ଠରେ ପଶ୍ଚାଦ୍‌ଭାଗରେ ତାଙ୍କୁ ବସାଇ ନିଜେ ଆଗରେ ବସିଲେ । ଆଜ୍ଞା ପାଇବାମାତ୍ରେ ଗରୁଡ଼ ଉଡ଼ିବାକୁ ଲାଗିଲେ ।"

ଏହା ଶୁଣି ଶୌନକ କହିଲେ—"ହେ ସୂତ, ସତ୍ୟଭାମା ତ ଭ୍ରମଣରେ ସୁଯୋଗ ଆସିବା ମାତ୍ରେ ମନା କରି ପାରି ଥାଆନ୍ତେ, କାରଣ ଭଗବାନ ତ କେବଳ ଭ୍ରମଣ ଉଦ୍ଦେଶ୍ୟରେ ଯାଉ ନ ଥାନ୍ତି, ସେ ଯୁଦ୍ଧ କରିବାକୁ ଯାଉଥାଆନ୍ତି । ତାଙ୍କର ମଧ୍ୟ ଏହା ଚିନ୍ତା କରିବାର ଥିଲା, ଉଭୟ ପକ୍ଷରୁ ବାଣ ବର୍ଷା ହେବ, ଏପରି ସମୟରେ ସତ୍ୟଭାମାଙ୍କୁ ସଙ୍ଗରେ ନେବାର କି ପ୍ରୟୋଜନ ଥିଲା ? ଭଗବାନ ତାଙ୍କୁ କାହିଁକି ସଙ୍ଗରେ ନେଇ ଯାଉଥିଲେ ?"

ଏହା ଶୁଣି ସୂତ କହିଲେ—"ମହାରାଜ ! ଏ କଥା ତ ମୁଁ ପୂର୍ବରୁ କହିଛି ଯେ, ଭଗବାନ ପୃଥିବୀକୁ ବର ଦେଇଥିଲେ—'ଯେତେବେଳ ପର୍ଯ୍ୟନ୍ତ ତୁମେ ନ କହିବ, ସେତେବେଳ ପର୍ଯ୍ୟନ୍ତ ମୁଁ ତୁମର ପୁତ୍ର ନରକାସୁରକୁ ମାରିବି ନାହିଁ । ଏବେ ନରକାସୁରକୁ ମାରିବାର ବେଳ ଆସିଯାଇଥିଲା । ସତ୍ୟଭାମା ଥିଲେ ପୃଥିବୀର ଅଂଶାବତାର । ତେଣୁ ତାଙ୍କର ଆଜ୍ଞା ନେବା ଅତ୍ୟାବଶ୍ୟକ ଥିଲା । ତେଣୁ ଭଗବାନ ତାଙ୍କୁ ସଙ୍ଗରେ ନେଇ ଯାଇଥିଲେ ।"

ଶୌନକ କହିଲେ—"ଅଚ୍ଛା ! ତେବେ ତାହାପରେ କ'ଣ ହେଲା ?"

ସୂତ କହିଲେ—"ଆଉ ହୁଅନ୍ତା କ'ଣ ? ଯେତେବେଳେ କେହି କାହାର ଉପରେ ଆକ୍ରମଣ କରେ, ସେତେବେଳେ ସେ ନିଜକୁ ବଞ୍ଚାଇବା ପାଇଁ ପ୍ରାଣପଣେ ଚେଷ୍ଟା କରେ । ଭଗବାନ ସଙ୍ଗେ ସଙ୍ଗେ ଯାଇ ନରକାସୁରର ପୁର ଉପରେ ଚଢ଼ାଉ କରିବାରୁ ଘୋର ଯୁଦ୍ଧ ହେଲା । ଏହି ଯୁଦ୍ଧର ଫଳାଫଳ ସମ୍ବନ୍ଧରେ ମୁଁ ପରବର୍ତ୍ତୀ ଆଲୋଚନାରେ କହିବି ।"

## ଛପ୍ପୟ

ବୋଲେ ସବୁ ଶୁଣି ଘନଶ୍ୟାମ—ବାତ ସୁରପତି ସବୁ ଜାଣି ।
ଭୌମାସୁର ଦେବେ ଗଞ୍ଜେ । ଦୁଷ୍ଟ ଅତିଶୟ ଅଭିମାନୀ ।।
ଅଦିତି ମାତୃ ତାଙ୍କ ଯାଇ ସୁଖଦ ସନ୍ଦେଶ ଶୁଣାଇବ ।
ନେଲେ କୁଣ୍ଡଳ ଶୀଘ୍ର ସ୍ୱର୍ଗ ହେମହୁଁ ଆଣିବ ।।
ପାଇ ବଚନ ଘନଶ୍ୟାମ ତେବେ ସୁରପତି ନିଜ ପୁର ଚଳି ଗଲେ ।
ସତ୍ୟଭାମା ସଙ୍ଗ ଗରୁଡ଼ ଚଢ଼ି, ନରକାସୁର ପୁର ହରି ଗଲେ ।।



# ଭୌମାସୁର ବଧ

ପ୍ରାୟୁଙ୍କ୍ତାଥାସାଦ୍ୟ ଶରାନସୀନ୍ ଗଦାଃ
ଶକ୍ତ୍ୟୃଷ୍ଟି ଶୂଲାନ୍ୟଜିତେ ରୁଷୋଲ୍ମୁକାଃ ।
ତଚ୍ଛସ୍ତ୍ରକୂଟଂ ଭଗବାନ୍ ସ୍ୱମାର୍ଗଣୈ—
ରମୋଘବୀର୍ଯ୍ୟସ୍ତିଲଶଶ୍ଚକର୍ତ୍ତ ହ ॥ *

( ଶ୍ରୀ: ଭା: ୧୦ ସ୍କ: ୫୯ ଅ: ୧୩ ଶ୍ଳୋକ)

## ଛପ୍‌ପୟ

ଗିରି, ଶର, ଜଳ ଅରୁ ଅନିଲ, ଅନଲ ପରକୋଟା ପୁରକେ ।
ଦଶ ସହସ୍ର ଅଷ ଘୋର ପାଶ ଘେରେଂ ଫିର ମୁରକେ ॥
ଶ୍ୟାମ ଗଦା, ଶର, ଚକ୍ର-ସୁଦର୍ଶନ ତେଂ କାଟେ ସବ ।
ପୁରପାଲକ ମୁର ଅସୁର ଦେଖି ଲଡ଼ିବେ ଆୟୋ ତବ ॥
ଭୟେ ମୁରାରୀ ମାର ମୁର, ହନି ସିର କାଟେଂ ଚକ୍ର ତେଂ ।
ଶୋଭିତ ଧଡ଼ ପର୍ବତ ସରସ, କଟେ ଶିଖର ଜନୁ ଶକ୍ର ତେଂ ॥

ଭଗବାନ ନିଜ ଅସ୍ତ୍ରରେ ଅସୁରମାନଙ୍କୁ ମାରିଦିଅନ୍ତି, କିନ୍ତୁ ଏଥିରେ ଭଗବାନଙ୍କର ପ୍ରଶଂସା ନାହିଁ । ଯେ ଭଗବାନଙ୍କର ଟିକିଏ ମାତ୍ର କୁଟିଳ ଭ୍ରୂକୁଟିରେ ସାରା ବିଶ୍ୱ ବ୍ରହ୍ମାଣ୍ଡରେ ପ୍ରଳୟ ସୃଷ୍ଟି ହୁଏ, ତାଙ୍କ ପକ୍ଷେ ଏହି ନଗରକୁ ନଷ୍ଟ କରିଦେବା କିମ୍ବା ଗୋଟିଏ ଦୁଇଟି ଅସୁରଙ୍କୁ ମାରିଦେବା ପୌରୁଷ ବଡ଼ କଥା ନୁହେଁ । କିନ୍ତୁ ଏହି କାର୍ଯ୍ୟରେ

---

* ବାଣ ଖଡ୍ଗ ଗଦା ଶସ୍ତ୍ର । ଶୂଳ ତୋମର ଲୌହଯଷ୍ଟି ॥
ଶର ବରଷା ମେଘ ପ୍ରାୟେ । ବର୍ଷିଲେ ଗୋବର୍ଦ୍ଧନ ଦେହେ ॥
ଦେଖି କେଶବ ଅତି ଖରେ । ଶାରଙ୍ଗ ଧନୁ ଧରି କରେ ॥
କୃଷ୍ଣ ବର୍ଷିଲେ ପୁଣି ପୁଣି । ଅନଳ ପ୍ରାୟ ତୀକ୍ଷ୍ଣ ବାଣ ॥
କୃଷ୍ଣର ବାଣ ତୀକ୍ଷ୍ଣ ଫଳ । ଧ୍ୱଂସିଲା ଦୈତ୍ୟଙ୍କ ବଳ ॥

ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ: ୬୪ ଅ,

ତାଙ୍କର ଭକ୍ତବତ୍ସଳତା ଗୁଣ ନିହିତ ଅଛି । ସେ ଯାହାକୁ ମାରନ୍ତି, ତାକୁ ମୁକ୍ତି ପ୍ରଦାନ କରନ୍ତି ଓ ଯାହାଙ୍କ ପାଇଁ ତାକୁ ମାରନ୍ତି ତାଙ୍କୁ ମଧ୍ୟ ଇଷ୍ଟବସ୍ତୁ ରୂପକ ଅହୈତୁକୀ ଭକ୍ତି ପ୍ରଦାନ କରନ୍ତି । ମଙ୍ଗଳମୟ ଭଗବାନଙ୍କର ସବୁ ଚରିତ୍ର ଆଦି ସମସ୍ତ କାର୍ଯ୍ୟ ମଙ୍ଗଳମୟ ।

ସୂତ କହିଲେ—"ମୁନିଗଣ ! ଦେବରାଜ ଇନ୍ଦ୍ର ସ୍ୱର୍ଗ ଫେରିବାରୁ ଭଗବାନ ସତ୍ୟଭାମାଙ୍କ ସହିତ ଗରୁଡ଼ ଉପରେ ବସି ଭୌମାସୁରର ପ୍ରାଗ୍ ଜ୍ୟୋତିଷପୁର ନାମକ ନଗରରେ ଯାଇ ପହଞ୍ଚିଲେ । ସେହି ନଗରକୁ ଅସୁର ଏପରି ଦୃଢ଼ଭାବରେ ନିର୍ମାଣ କରାଇଥିଲେ ଯେ, ତନ୍ମଧ୍ୟରେ ପ୍ରବେଶ କରିବା କାହାରି ପକ୍ଷେ ସମ୍ଭବ ହେଉ ନଥିଲା । ପ୍ରଥମତଃ ନଗରର ଚତୁର୍ଦ୍ଦିଗରେ ଉଚ୍ଚା ଉଚ୍ଚା ପାହାଡ଼ ଥିଲା । ତାହା ନଗରର ସୁଦୃଢ଼ ପ୍ରାଚୀର ଭଳି ଥିଲା । ନଗରକୁ ବାହାରିବା ପାଇଁ ଚତୁର୍ଦ୍ଦିଗରେ ଚାରିଟି ଦ୍ୱାର ଥିଲା ଓ ସେହି ଦ୍ୱାରରେ ବଜ୍ରସମ କବାଟ ଲାଗିଥିଲା । ନଗରର ଚତୁର୍ଦ୍ଦିଗରେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ହଜାର ହଜାର ସୈନିକ ପହରା ଦେଉଥିଲେ । ପାହାଡ଼ ଭିତରେ ଚତୁର୍ଦ୍ଦିଗରେ ଅସ୍ତ୍ରଶସ୍ତ୍ରର ଭଣ୍ଡାର ଥିଲା । ପ୍ରାଚୀର ଉପରେ ବିଭିନ୍ନ ମାରଣାସ୍ତ୍ର ଖଞ୍ଜା ଯାଇଥିଲା । କୌଣସି ଶତ୍ରୁ ନଗର ମଧ୍ୟକୁ ପ୍ରବେଶ କରିବାକୁ ଚେଷ୍ଟା କଲେ ତାଙ୍କୁ ସଙ୍ଗେ ସଙ୍ଗେ ମାରିଦିଆ ଯାଉଥିଲା । ନଗରର ଚତୁର୍ଦ୍ଦିଗରେ ଗଭୀର ଗଡ଼ଖାଇ ଥିଲା । ତେଣୁ ଶତ୍ରୁମାନେ ତାକୁ ପାରି ହୋଇ ଗଡ଼ ମଧ୍ୟରେ ପ୍ରବେଶ କରିପାରୁ ନଥିଲେ । ଜଳ ଆବରଣ ପଛକୁ ଅଗ୍ନିର ଆବରଣ ଥିଲା । ସେଥିରେ ଏପରି ଲୌହଯନ୍ତ୍ର ଖଞ୍ଜା ଯାଇଥିଲା, ଯାହାକି କ୍ଷଣକ ମଧ୍ୟରେ ଅଗ୍ନି ଭଳି ତାତି ଯାଉଥିଲା ଓ ତାକୁ ସ୍ପର୍ଶ କରିବା ମାତ୍ରେ ଶତ୍ରୁ ଜଳି ଯାଉଥିଲା । ଅଗ୍ନି ଆବରଣ ପଛକୁ ବାୟୁର ଆବରଣ ଥିଲା । ଏହି ବାୟୁ ଆବରଣରେ ଏପରି ଯନ୍ତ୍ର ଖଞ୍ଜା ଯାଇଥିଲା ଯେ, ସେଠାରେ କୌଣସି ଶତ୍ରୁ ପହଞ୍ଚିବା ମାତ୍ରେ ସଙ୍ଗେ ସଙ୍ଗେ ବାୟୁରେ ଉଡ଼ି ଯାଉଥିଲା । ଏହା ବ୍ୟତୀତ ସେହି ପୁର ମଧ୍ୟରେ ମୁର ନାମକ ପାଞ୍ଚଶିର ବିଶିଷ୍ଟ ଯେଉଁ ରାକ୍ଷସ ଅସୁର ଥିଲା, ତାହାର ଦଶ ହଜାର ଅତ୍ୟନ୍ତ ସୁଦୃଢ଼ ଘୋର ପାଶ ଥିଲା । ଶତ୍ରୁ ପ୍ରବେଶ କରିବା ମାତ୍ରେ ସେହି ପାଶରେ ବନ୍ଦୀ ହେଉଥିଲା । ଏହିଭଳି ଏତେ ପ୍ରକାର ପ୍ରତିରକ୍ଷା ବ୍ୟବସ୍ଥା ଥିବା ଯୋଗୁଁ ନଗରଟି ସୁରକ୍ଷିତ ଥିଲା । ଭୌମାସୁରର ବିନା ଇଚ୍ଛାରେ ତା' ପୁର ମଧ୍ୟକୁ ବାୟୁର ପ୍ରବେଶ କରିବା ମଧ୍ୟ ସମ୍ଭବ ନଥିଲା ।

ଭଗବାନ ସର୍ବପ୍ରଥମେ ପଥର ପ୍ରାଚୀରକୁ ନିଜର କୌମୋଦକୀ ଗଦାଦ୍ୱାରା ଭାଙ୍ଗି ପକାଇଲେ । ପର୍ବତଗୁଡ଼ିକ ସେହି ଗଦାଘାତରେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଗଲେ । ଚତୁର୍ଦ୍ଦିଗରେ ଯେତେ ଅସ୍ତ୍ର ଶସ୍ତ୍ର ଥିଲା, ସେ ସମସ୍ତ ବାଣଦ୍ୱାରା ନଷ୍ଟ କରିଦେଲେ । ସୁଦର୍ଶନ ଚକ୍ର ଅଗ୍ନିକୁ ଶାନ୍ତ କରିଦେଲା, ଜଳକୁ ଶୁଖାଇଦେଲା ଓ ବାୟୁକୁ ଛିନ୍ନ ଭିନ୍ନ

କରିଦେଲେ । ମୁରାସୁରର ଯେଉଁ ଦଶ ସହସ୍ର ପାଶ ଥିଲା, ସେଗୁଡ଼ିକୁ ଭଗବାନ ଖଡ୍ଗରେ କାଟିଦେଲେ । ଏହାପରେ ସେ ନିଜର ପାଞ୍ଚଜନ୍ୟ ଶଙ୍ଖ ବଜାଇଲେ । ଶଙ୍ଖର ଭୀଷଣ ନାଦ ଶ୍ରବଣ କରି ଶତ୍ରୁ ମାନଙ୍କର ହୃଦୟ କମ୍ପିତ ହେବାକୁ ଲାଗିଲା । ଯନ୍ତ୍ରଗୁଡ଼ିକ ଆପେଆପେ ନଷ୍ଟ ହୋଇ ଅକାମୀ ହୋଇଗଲେ । ପୃଥିବୀ କମ୍ପିବାକୁ ଲାଗିଲା । ଭିତର ମେଘନାଦ ପ୍ରାଚୀରକୁ ମଧ୍ୟ ଭଗବାନ ଗଦାଦ୍ୱାରା ଭାଙ୍ଗି ଚୂରମାର କରିଦେଲେ ।

ସେହି ପୁରର ରକ୍ଷକ ଥିଲା ମୁର ନାମକ ଦୈତ୍ୟ । ସେ ଅତ୍ୟନ୍ତ ବଳଶାଳୀ ଥିଲା । ତାହାର ପାଞ୍ଚଟି ମୁଣ୍ଡ ଥିଲା । ସେ ସର୍ବଦା ଜଳ ମଧ୍ୟରେ ସୁଖରେ ଶୟନ କରୁଥିଲା । ଭଗବାନଙ୍କର ଶଙ୍ଖଧ୍ୱନି ପ୍ରଳୟକାଳୀନ ବଜ୍ରପାତଭଳି ଅତି ଭୟଙ୍କର ଧ୍ୱନି ହେବାମାତ୍ରେ ତାହା ଶୁଣି ମୁରାସୁରର ସଙ୍ଗେସଙ୍ଗେ ନିଦ୍ରାଭଙ୍ଗ ହେଲା । ସେ ଆଶ୍ଚର୍ଯ୍ୟ ହୋଇ ଚତୁର୍ଦ୍ଦିଗକୁ ଉଦ୍‌ବେଗର ସହିତ ନିରୀକ୍ଷଣ କରିବାକୁ ଲାଗିଲା । ସେ ଦେଖିଲା, ଭଗବାନ ଗରୁଡ଼ଧ୍ୱଜ ଗରୁଡ଼ ପୃଷ୍ଠରେ ଆରୋହଣ କରି ତା ପୁରକୁ ଲକ୍ଷ୍ୟକରି ଅସ୍ତ୍ର ପ୍ରୟୋଗ କରିବାକୁ ଉଦ୍ୟତ ହେଉଛନ୍ତି । ଏହା ଦେଖିବା ମାତ୍ରେ ତାହାର କ୍ରୋଧର ସୀମା ରହିଲା ନାହିଁ । ସେ ଚିନ୍ତା କରିବାକୁ ଲାଗିଲା—"କିଏ ମୋ ସହିତ ଯୁଦ୍ଧ କରିବା ପାଇଁ କାହାର ଏପରି ସାମର୍ଥ୍ୟ ଅଛି ? ମୋତେ କିଏ ଯୁଦ୍ଧପାଇଁ ଆହ୍ୱାନ କରିବାକୁ କୌଣସି ବୀର ଅଛନ୍ତି ?" ଏହା ଚିନ୍ତାକରି ସେ ଅତିଶୟ କ୍ରୋଧାନ୍ୱିତ ହୋଇ ହସ୍ତରେ ତ୍ରିଶୂଳ ଧାରଣ କରି ଗଦାଧର ଭଗବାନ ବାସୁଦେବଙ୍କ ସହିତ ଯୁଦ୍ଧ କରିବାକୁ ବାହାରି ପଡ଼ିଲା । ସେ ପ୍ରଳୟକାଳୀନ ଅଗ୍ନି ଭଳି କ୍ରୋଧରେ ଜଳୁଥିଲା । ସେ କଲ୍ପାନ୍ତ ସୂର୍ଯ୍ୟଭଳି ଦୁଷ୍ପ୍ରେକ୍ଷ୍ୟ, ଅସହ୍ୟ ଓ ପ୍ରଚଣ୍ଡ ତେଜୋମୟ ପ୍ରତୀତ ହେଉଥିଲା । ଅନ୍ତକ ସଦୃଶ ନିଜର ବିକଟାଳ ପଞ୍ଚମୁଖକୁ ବିସ୍ତାର କରି ପାଞ୍ଚଶିର ବିଶିଷ୍ଟ ମୂର୍ତ୍ତିମାନ କ୍ରୋଧଭଳି କାଳରୂପୀ ଶ୍ରୀକୃଷ୍ଣଙ୍କ ଆଡ଼କୁ ଧାଇଁଲା ସର୍ପ ଯେପରି ଗରୁଡ଼ ଆଡ଼କୁ ଧାଏଁ । ସେ ସେହିପରି ହରିବାହନ ପକ୍ଷୀ ଆଡ଼କୁ ଧାଇଁଲା । ସେ ସର୍ବପ୍ରଥମେ ଗରୁଡ଼ଙ୍କୁ ମାରି ଶେଷ କରିଦେବା ପାଇଁ ନିଜର ଜାଜ୍ୱଲ୍ୟମାନ ତ୍ରିଶୂଳ ତାଙ୍କୁ ଲକ୍ଷ୍ୟକରି ଫିଙ୍ଗିଲା ଏବଂ ପାଞ୍ଚ ମୁଖରେ ଭୀଷଣ ଗର୍ଜନ କରି କହିବାକୁ ଲାଗିଲା—"ମରିଗଲା, ମରିଗଲା !" ତାହାର ଏହି ଭୟଙ୍କର ଶବ୍ଦରେ ଦଶଦିଗ କମ୍ପି ଉଠିଲା । ସଙ୍ଗେ ସଙ୍ଗେ ଭଗବାନ ବାଣବର୍ଷା କରି ସେହି ଭୟଙ୍କର ଶରକୁ ପ୍ରତିହତ କଲେ ଓ କୂପ ସଦୃଶ ତାହାର ମୁଖଗହ୍ୱରକୁ ବାଣ ପ୍ରୟୋଗ କଲେ । ସେ ଏହାଦ୍ୱାରା ଘାଇରେ ଜର୍ଜ୍ଜରିତ ହୋଇ ଉଠିଲା । ତା ହାତରେ ଏକ ଗଦା ଥିଲା, ସେ ସେହି ଗଦାରେ ଗଦାଧରଙ୍କୁ ପ୍ରହାର କରିବାକୁ ଉଦ୍ୟତ ହେବାମାତ୍ରେ ଭଗବାନ ନିଜ କୌମୋଦକୀ ଗଦାଦ୍ୱାରା ସେହି ଅସୁରର ଗଦାକୁ ଖଣ୍ଡବିଖଣ୍ଡ କରିଦେଲେ । ନିଜର ଅବ୍ୟର୍ଥ ଗଦା ଓ ଶସ୍ତ୍ର ବ୍ୟର୍ଥ ହୋଇଯିବାର ଦେଖି ସେ ଅତ୍ୟନ୍ତ କୁପିତ ହେଲା । ନିଜକୁ ନିରସ୍ତ୍ର ବୋଲି ଜାଣିପାରି ସେ ନିଜର ଭୟଙ୍କର ପାଞ୍ଚଟିଯାକ ମୁଣ୍ଡକୁ ବିସ୍ତାରିତ କରି ଭଗବାନଙ୍କୁ ଗିଳିଦେବା ପାଇଁ ଉଦ୍ୟତ ହେଲା । ଏହା ଦେଖି ଭଗବାନ ହସି ହସି

ସୁଦର୍ଶନ ଚକ୍ରରେ ତାହାର ପାଞ୍ଚଟିଯାକ ମୁଣ୍ଡକୁ କାଟିଦେଲେ । ମୁଣ୍ଡ କଟିଯିବାରୁ ତାହାର ଗଣ୍ଡି ମେରୁ ପର୍ବତ ଭଳି ଦେଖାଗଲା ଓ ତାହା ପ୍ରଚଣ୍ଡ ଶବ୍ଦ କରି ଜଳରେ କମ୍ପିତ ହୋଇ ପଡ଼ିଲା । ପ୍ରାଗ୍ ଜ୍ୟୋତିଷପୁରର ରକ୍ଷକ ଭଗବାନଙ୍କ ସୁଦର୍ଶନ ଚକ୍ରରେ ଏହିଭଳି ମୃତ୍ୟୁବରଣ କଲା । ଏହି ମୁରାସୁରକୁ ମାରୁଥିବା କାରଣରୁ ଭଗବାନଙ୍କର ଏକ ନାମ "ମୁରାରି" । ସେହି ମୁରାସୁରର ତାମ୍ର, ଅନ୍ତରୀକ୍ଷ, ଶ୍ରବଣ, ବିଭାବସୁ, ବସୁ ନମସ୍ୱାନ ଓ ଅରୁଣ ନାମରେ ସାତ ପୁତ୍ର ଥିଲେ । ପିତା ମୃତ୍ୟୁବରଣ କରିବାର ସମ୍ବାଦ ପାଇ ସେମାନେ କ୍ରୋଧରେ ଜର୍ଜ୍ଜରିତ ହୋଇ ଭୌମାସୁରର ଆଜ୍ଞାରେ ଅସ୍ତ୍ରଶସ୍ତ୍ର ଧରି ଓ ସୈନ୍ୟମାନଙ୍କ ସଙ୍ଗରେ ଧରି ଶ୍ୟାମସୁନ୍ଦରଙ୍କୁ ବଧ କରିବା ପାଇଁ ଧାଇଁ ଆସିଲେ । ସେମାନେ ପିତୃହନ୍ତାର ପ୍ରତିଶୋଧ ନେବାପାଇଁ ବ୍ୟଗ୍ର ହୋଇ ଉଠିଲେ । ସେମାନଙ୍କର ସେନାପତି 'ପୀଠ' ଏକ ପରାକ୍ରମୀ ଅସୁର ଥିଲା । ସେମାନେ ଆସି ଅଖିଳେଶ ଅଚ୍ୟୁତଙ୍କ ଉପରକୁ ବାଣ, ଖଡ୍ଗ, ଗଦା, ଶକ୍ତି, ଋଷ୍ଟି, ତ୍ରିଶୂଳ, ଭୁଶୁଣ୍ଡି, ପରଘ, ନିସ୍ତ୍ରିଂଶ ଓ ଅନ୍ୟାନ୍ୟ ଅସ୍ତ୍ରରେ ଏକସଙ୍ଗେ ପ୍ରହାର କଲେ । ଭଗବାନ ବାସୁଦେବଙ୍କ ପାଇଁ ଏ ସମସ୍ତ ଅସ୍ତ୍ରଶସ୍ତ୍ର ତ କୁସୁମ ସଦୃଶ ଥିଲା । ତେଣୁ ସେ ସମସ୍ତ ତାଙ୍କ ଉପରେ କୌଣସି ପ୍ରଭାବ ପକାଇ ପାରିଲା ନାହିଁ । ହସି ହସି ସେ ସମସ୍ତ ଅସ୍ତ୍ରଶସ୍ତ୍ରକୁ ବ୍ୟର୍ଥ କରିଦେଲେ ଓ ମୁରାସୁରର ସାତପୁତ୍ର ଏବଂ ଅନ୍ୟାନ୍ୟ ସୈନ୍ୟଙ୍କୁ ସମର କ୍ଷେତ୍ରରେ ଶେଷ କରିଦେଲେ । ସେମାନଙ୍କ ଶିର, ଗଣ୍ଡି ଓ ଅସ୍ତ୍ରଶସ୍ତ୍ର ଆଦି ସମର ଭୂମିରେ ଇତସ୍ତତଃ ହୋଇପଡ଼ିଲା । ଗରୁଡ଼ଧ୍ୱଜ ଏହିପରି ଭାବରେ ସେନାପତି 'ପୀଠ' ଓ ଅନ୍ୟାନ୍ୟ ଶୂରବୀରଙ୍କୁ ଯମାଳୟକୁ ପଠାଇ ଦେଲେ ।

ଏହି ଦୁଃଖଦ ସମାଚାର ଯେତେବେଳେ ନରକାସୁର କାନରେ ପଡ଼ିଲା, ସେତେବେଳେ ସେ ଅତ୍ୟନ୍ତ କୁପିତ ହୋଇଗଲା । ସେ ଚିନ୍ତାକଲା,—ଯେଉଁ ବୀର ମୋର ମୁର ଓ ପୀଠ ଆଦି ବୀର ସେନାପତିଙ୍କୁ ମାରିପାରିଲା, ସେ ସାଧାରଣ ପୁରୁଷ ନୁହେଁ । ମୁଁ ଶୀଘ୍ର ଯାଇ ତା ସହିତ ଯୁଦ୍ଧ କରିବି । ଆଉ ଅପେକ୍ଷାରେ ସମୟ ନଷ୍ଟ କରିବା ମୋ ପକ୍ଷେ ଉଚିତ୍ ହେବ ନାହିଁ ।" ଏହା ଚିନ୍ତାକରି ସେ ମଦସ୍ରାବୀ ଗଜଙ୍କର ବିଶାଳ ସେନାଙ୍କୁ ନେଇ ଯୁଦ୍ଧ କରିବା ପାଇଁ ବାହାରି ପଡ଼ିଲା । ସେ ଯାଇ ରଣକ୍ଷେତ୍ରରେ ଗରୁଡ଼ ଉପରେ ବସିଥିବା ଗୋବିନ୍ଦଙ୍କୁ ପ୍ରଥମେ ଦର୍ଶନ କଲା । ଏହାପରେ ସେ ନିଜର ହଜାର ହଜାର ସୈନ୍ୟ ମରିପଡ଼ିଥିବାର ଦେଖିଲା । ଯେପରି ପ୍ରଜ୍ୱଳିତ ଅଗ୍ନି ଘୃତ୍ୟକୁ ପାଇବା ମାତ୍ରେ ଆହୁରି ଅଧିକ ପ୍ରଜ୍ୱଳିତ ହୁଏ, ସେହିପରି ସୈନ୍ୟମାନଙ୍କର ରକ୍ତନଦୀ ଦେଖି ତାହାର କ୍ରୋଧାଗ୍ନି ଅଧିକ ପ୍ରଜ୍ୱଳିତ ହେବାକୁ ଲାଗିଲା ।

ଗରୁଡ଼ ଉପରେ ସତ୍ୟଭାମାଙ୍କ ସହିତ ବିରାଜମାନ କରିଥିବା ବାସୁଦେବ ଏପରି ଶୋଭା ପାଉଥିଲେ, ଯେତେ ଯେପରି ସୂର୍ଯ୍ୟଙ୍କ ଉପରେ ସୌଦାମିନୀ ସହିତ ଶ୍ୟାମଘନ

ସୁଶୋଭିତ ହୋଇଥାଏ । ଭୌମାସୁର କ୍ରୁଦ୍ଧ ହୋଇ ଦୂରରୁ ଭଗବାନଙ୍କ ଉପରକୁ ଶତଘ୍ନୀ ଅସ୍ତ୍ର କ୍ଷେପଣ କଲା । ତାହାର ସୈନ୍ୟମାନେ ମଧ୍ୟ ଏକସଙ୍ଗେ ଶ୍ୟାମସୁନ୍ଦରଙ୍କୁ ଆକ୍ରମଣ କଲେ । ସେମାନେ ମଧ୍ୟ ବାଣ ବର୍ଷା କରିବାକୁ ଲାଗିଲେ । ଭଗବାନ ମଧ୍ୟ ନିରବଦ୍ରଷ୍ଟା ହୋଇ ନ ବସି ନିଜର ଶାର୍ଙ୍ଗ ଧନୁରେ ଅମୋଘ ବାଣ ଚଢ଼ାଇ ତାହା ନିକ୍ଷେପ କରିବାକୁ ଲାଗିଲେ । ଏହା ଫଳରେ ଶତ୍ରୁପକ୍ଷର ସୈନ୍ୟମାନଙ୍କ ଶିର, ହସ୍ତ, ପଦ ଓ କଟି ଆଦି ଅଙ୍ଗପ୍ରତ୍ୟଙ୍ଗ କଟି କଟି ଭୂମିରେ ଲୋଟିବାକୁ ଲାଗିଲା । ସେମାନଙ୍କର ବିକଟ ଚିତ୍କାରରେ ଗଗନ ପବନ ମୁଖରିତ ହୋଇ ଉଠିଲା । ଭଗବାନ ପଛକୁ ପଛ ଅମୋଘ ବାଣମାନ ନିକ୍ଷେପ କରୁଥିଲେ । ଜଣା ପଡ଼ୁଥିଲା ସତେ ଯେପରି ସୃଷ୍ଟିର ବିନାଶ ପାଇଁ ରୁଦ୍ର ପ୍ରବୃତ୍ତ ହୋଇଛନ୍ତି ।

ଏଣେ ଭଗବାନଙ୍କ ବାହାନ ଗରୁଡ଼ ମଧ୍ୟ ନୀରବ ନ ରହି ନିଜ ପକ୍ଷୀ ଓ ପଞ୍ଝାଦ୍ୱାରା ଏବଂ ନିଜ ଥଣ୍ଟରେ ଅସୁରମାନଙ୍କୁ ଆକ୍ରମଣ କରି ସଂହାର କରୁଥାଆନ୍ତି । ଅବଶିଷ୍ଟ କେତେକ ସୈନ୍ୟ ଓ ଅଶ୍ୱଗଜାଦିମାନେ ଗରୁଡ଼ ଏବଂ ଗରୁଡ଼ ଧ୍ୱଜଙ୍କ ଆକ୍ରମଣରେ ଅସହ୍ୟ ଯନ୍ତ୍ରଣା ଭୋଗକରି ରଣକ୍ଷେତ୍ର ଛାଡ଼ି ପଳାଇଗଲେ; କିନ୍ତୁ ବୀରାଭିମାନୀ ଭୌମାସୁର ସେଠାରୁ ଗଲା ନାହିଁ । ସେ ଏକାକୀ ଅତି ବୀରତ୍ୱର ସହିତ ବନମାଳୀଙ୍କ ସହିତ ଲଢ଼ିଲା । ଡେଣା ମେଲାଇ ଏଣେ କେଣେ ଉଡ଼ି ତା ସୈନ୍ୟମାନଙ୍କୁ ସଂହାର କରୁଥିବା ଗରୁଡ଼ଙ୍କ ଉପରେ ସେ ଅତ୍ୟନ୍ତ କ୍ରୋଧ କରି ତାଙ୍କୁ ଅନେକ ବାଣ ପ୍ରହାର କଲା । କିନ୍ତୁ ସେ ସମସ୍ତ ବାଣକୁ ବ୍ୟର୍ଥ କରିଦେଲେ । ଗଜରାଜଙ୍କୁ ପୁଷ୍ପମାଳାରେ ଆଘାତ କଲାଭଳି ତାହାର ଅସ୍ତ୍ରଶସ୍ତ୍ର ଗରୁଡ଼ଙ୍କ ପକ୍ଷୀକୁ ସୁଦ୍ଧା ସ୍ପର୍ଶ କରିପାରିଲା ନାହିଁ କିମ୍ବା ଗରୁଡ଼ ଏଥିରେ ବିଚଳିତ ହେଲେ ନାହିଁ । ଗରୁଡ଼ ପୃଷ୍ଠରେ ବସିଥିବା ସତ୍ୟଭାମା ଏବେ ଉପସ୍ଥିତ ହୋଇ କହିଲେ —"ପ୍ରାଣନାଥ ! ଆପଣ ଏ ଅସୁରକୁ ଶୀଘ୍ର ମାରିପକାନ୍ତୁ ।" ଏହା ଶୁଣି ଭଗବାନ ତାକୁ ମାରିବା ପାଇଁ ପ୍ରସ୍ତୁତ ହୋଇଗଲେ । ସେତେବେଳେ ନରକାସୁର ଅତିଶୟ କ୍ରୁଦ୍ଧ ହୋଇ ହାତୀ ଉପରେ ବସି ଭଗବାନଙ୍କ ସହିତ ଯୁଦ୍ଧ କରୁଥିଲା । ସେ ସମସ୍ତ ବଳ ପ୍ରୟୋଗକରି ତାହାର ବଜ୍ରସମାନ ତ୍ରିଶୂଳକୁ ତ୍ରିଭୁବନପତିଙ୍କ ଉପରକୁ ଫିଙ୍ଗିବା ପାଇଁ ଉଠାଇବା କ୍ଷଣି ତାହା ଫିଙ୍ଗିବା ପୂର୍ବରୁ ଭଗବାନ ନିଜ ସୁଦର୍ଶନରେ ତାହାର ମୁଣ୍ଡକାଟି ଉଡ଼ାଇ ଦେଲେ । ଭୌମାସୁର ମୃତ୍ୟୁବରଣ କଲା । ତାହାର ଆଶ୍ରିତ ଓ ବନ୍ଧୁ ବାନ୍ଧବମାନେ ବିଳାପ କରିବାକୁ ଲାଗିଲେ । ସ୍ୱର୍ଗରୁ ଦେବତାମାନେ ଆନନ୍ଦରେ ଭଗବାନଙ୍କ ଉପରେ ପୁଷ୍ପବୃଷ୍ଟି କଲେ ଓ ଦୁନ୍ଦୁଭି ଆଦି ବାଦ୍ୟ ବଜାଇଲେ । ମୁନି, ଋଷି, ସିଦ୍ଧ ଓ ଅନ୍ୟାନ୍ୟ ଦେବଗଣ ସାଧୁ ସାଧୁ କହି ଶ୍ୟାମସୁନ୍ଦରଙ୍କୁ ଅଭିନନ୍ଦନ କରିବାକୁ ଲାଗିଲେ ।

ନିଜର ପୁତ୍ର ନରକାସୁର ମରିଯିବାର ଦେଖି ଏବଂ ନିଜର ସ୍ୱାମୀ ଶ୍ୟାମସୁନ୍ଦରଙ୍କୁ କୁପିତ ଦେଖି ତାହାର ମାତା ଭୂଦେବୀ ଅଦିତିଙ୍କର ଦିବ୍ୟକୁଣ୍ଡଳ, ବରୁଣଙ୍କର ଅମୃତସ୍ରାବୀ

ଛତ୍ର, ସୁମେରୁଙ୍କର ମଣିମୟ ଶିଖର ଓ ବୈଜୟନ୍ତୀ ମାଳା ଏବଂ ବନମାଳା ଆଣି ଅତ୍ୟନ୍ତ ଭୟଭୀତ ହୋଇ କୃପାଳୁ ଶ୍ରୀକୃଷ୍ଣଙ୍କ ନିକଟରେ ଆସି ପହଞ୍ଚିଲେ । ସେ ସେହି ସମସ୍ତ ବସ୍ତୁକୁ ସାଦରରେ ଶ୍ରୀକୃଷ୍ଣଙ୍କୁ ସମର୍ପିତ କରି ହାତଯୋଡ଼ି ଭକ୍ତି ସହକାରେ ଗଦ୍‌ ଗଦ୍‌ କଣ୍ଠରେ ଭଗବାନ ଜଗଦୀଶ୍ୱରଙ୍କୁ ସ୍ତୁତି କରିବାକୁ ଲାଗିଲେ । ସେ ବାରମ୍ବାର ଭଗବାନଙ୍କ ପାଦପଦ୍ମରେ ପ୍ରଣାମ କଲେ, ତାଙ୍କର ମହିମା ଗାନ କଲେ ଓ ନିଜର ଦୁଃଖ ଜଣାଇଲେ ।

ସୂତ କହିଲେ—"ମୁନିଗଣ ! ଭୂଦେବୀଙ୍କର ପ୍ରାର୍ଥନା ଶୁଣି ଶରଣାଗତବତ୍ସଳ ଭଗବାନ ପ୍ରସନ୍ନ ହୋଇ ଭୌମାସୁରର ପୁତ୍ର ଭଗଦତ୍ତଙ୍କୁ ଅଭୟଦାନ ଦେଲେ । ତାହା ପରେ ଭଗବାନ ସତ୍କୃତ ହୋଇ ତା ପୁରକୁ ଗଲେ । ଭୌମାସୁରର ସର୍ବଧର୍ମସମ୍ପନ୍ନ ବୈଭବଶାଳୀ ଭବନକୁ ଦେଖି ଭଗବାନ ଅତି ପ୍ରସନ୍ନ ହେଲେ । ଏହାପରେ ସେ ବନ୍ଦିନୀ ରାଜକନ୍ୟାମାନଙ୍କୁ ଯେପରି ଉଦ୍ଧାର କରିବେ, ତାହା ପରବର୍ତ୍ତୀ ପ୍ରସଙ୍ଗରେ ମୁଁ କହିବି ।"

## ଛପ୍ପୟ

ସୁନତକେ ମୁରକୋ ମରନ ଅସୁର ଗନ ଅତ ଘବରାୟେ ।
ତାମ୍ର ଆଦି ସୁତ ସାତ ସୀଠ ସଁଗ ନରକ ପଠାୟେ ॥
ତେ ଜବ ସବ ମରି ଗୟେ ସ୍ୱୟଂ ଭୌମାସୁର ଆୟୋ ।
ଲଡ଼େଁ ପ୍ରାନପନ ସହିତ ଶ୍ୟାମ ବଲ ପାର ନ ପାୟୋ ॥
ଚକ୍ର ସୁଦର୍ଶନ ତେଁ ନରକ କୋ ସିର କାଟ୍ୟୋ ଶ୍ରୀହରୀ ।
ସୁନତ ମରନ ସୁତ ଆଇ ଭୂ, ଭେଂଟ ଲଇ ଇସ୍ତୁତି କରୀ ॥



# କନ୍ୟାଗଣଙ୍କର ଉଦ୍ଧାର

ଗତ୍ୱା ସୁରେନ୍ଦ୍ରଭବନଂ ଦତ୍ତ୍ୱାଦିତ୍ୟୈ ଚ କୁଣ୍ଡଳେ ।
ପୂଜିତସ୍ତ୍ରିଦଶେନ୍ଦ୍ରେଣ ମହେନ୍ଦ୍ରାଣ୍ୟା ଚ ସପ୍ରିୟଃ ।

(ଶ୍ରୀ: ଭା: ୧୦ ସ୍କ: ୫୯ ଅ: ୩୮ ଶ୍ଳୋକ)

## ଛପ୍ପୟ

ଅଭୟ ଦାନ ହରି ଦୟୋ ନରକ ସୁତ ନୃପତି ବନାୟୋ ।
ଅଦିତି ପୌତ୍ର ଭଗଦତ୍ତ ପ୍ରଭୁହିଁ ନିଜପୁର ଲୈ ଆୟୋ ॥
ନରକୀଂ ଷୋଡ଼ଶ ସହସ ବନ୍ଦିନୀ କନ୍ୟା ପୁର ମହଁ ।
ହୋତେଂ ପତି ଘନଶ୍ୟାମ, ଭଇ ଇଚ୍ଛା ତିନ ଉର ମହଁ ॥
ଜାନି ସତ୍ୟ ସଂକଳ୍ପ ହରି, ପଠଇ ଦ୍ୱାରକା ସବ ଦଇଁ ।
ମନବାଂଛିତ ତେ ପାଇ ବର, ଅଧିକ ମୁଦିତ ମନ ମହଁ ଭଇଁ ॥

ମନୁଷ୍ୟ ଅହଂକାରବଶତଃ ଅନ୍ୟକୁ ତୁଚ୍ଛ ଜ୍ଞାନ କରେ ଓ ନିଜକୁ ସର୍ବଶ୍ରେଷ୍ଠ ମନେକରେ । ଏଥିପାଇଁ ସେ ଅନ୍ୟମାନଙ୍କୁ ତିରସ୍କାର କରିଥାଏ । ଯେତେବେଳେ ଆମ୍ଭେମାନେ ନିଜ ନିଜକୁ ବଡ଼ ଜ୍ଞାନ କରୁଁ ଓ ଅନ୍ୟମାନେ ଆମକୁ ବଡ଼ବୋଲି ସ୍ୱୀକାର କରନ୍ତି ନାହିଁ, ସେତେବେଳେ ଆମ୍ଭମାନଙ୍କ ମନରେ ସେମାନଙ୍କ ପ୍ରତି ଦ୍ୱେଷ ଜାତ ହୁଏ । ଦ୍ୱେଷ ଜାତ ହେବା ମାତ୍ରେ ସେମାନଙ୍କର ଅନିଷ୍ଟ କରିବା ପାଇଁ ଓ ସେମାନଙ୍କୁ ନୀଚ ପ୍ରମାଣିତ କରିବା ପାଇଁ ମନରେ ଇଚ୍ଛା ବଳବତ୍ତର ହୁଏ । ଏହି ଅହଙ୍କାର ଇଚ୍ଛାହିଁ କଳହର ମୂଳ କାରଣ । ଏହାର ଶାଖା ପ୍ରଶାଖାସ୍ୱରୂପ ହେଲା—ରାଗ, ଦ୍ୱେଷ, ଝଗଡ଼ା, ଯୁଦ୍ଧ, ପରାଜୟ ଓ ମୃତ୍ୟୁ ଆଦି । ମନୁଷ୍ୟତ୍ୱ ବିନା ସଂସାର ଚକ୍ର ଅଚଳ ହୋଇଯାଏ । ସଂସାର ଚକ୍ରକୁ

---

* ଗରୁଡ଼େ ବସି ଦାମୋଦର । ତକ୍ଷଣେ ଗଲେ ସ୍ୱର୍ଗପୁର ॥
ଅଦିତି ହସ୍ତେ ସର୍ବସାକ୍ଷୀ । ରତ୍ନକୁଣ୍ଡଳ ଦେଲେ ନେଇ ॥
ଦେଖି ଅଦିତି ତୋଷ ହୋଇ । କୃଷ୍ଣଙ୍କୁ ଆସନେ ବସାଇ ॥
ଶଚୀ ସହିତେ ସୁରେନ୍ଦ୍ରେ । ପୂଜିଲେ ଗୋବିନ୍ଦଙ୍କ ପାଦେ ॥

—ଭାଗବତ, ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ : ୬୪ଅ.

ଅନ୍ୟ ନାମ ହିଁ ପ୍ରପଞ୍ଚ । ଏହା ଅସତ୍ତ୍ୱ ଉପରେ ଆଧାରିତ । ସତ୍ତ୍ୱର ସତ୍ତାରେ ଅସତ୍ ସତ୍ତ୍ୱଭଳି ପ୍ରତୀତ ହୁଏ । ଏହା ହିଁ ଲୀଳା, ଏହା ହିଁ ପ୍ରଭୁଙ୍କର ବିନୋଦ ପାଇଁ ଲୀଳା । ଏଥିରେ ନିଜର ପୃଥକ୍ ସତ୍ତା ସ୍ଥାପନ କରିବା ଉଚିତ୍ ନୁହେଁ । ଏହି ଲୀଳା ସ୍ୱୋତର ସତ୍ତାରେ ନିଜର ସତ୍ତାକୁ ମିଶାଇ ଦେବା ହିଁ ପରମ ପୁରୁଷାର୍ଥ ।

ସୂତ କହିଲେ—"ମୁନିଗଣ ! ଭୌମାସୁର ମୃତ୍ୟୁ ବରଣ କଲା । ଭଗବାନ ତା ପୁତ୍ର ଭଗଦତ୍ତଙ୍କୁ ପ୍ରାଗ୍‌ଜ୍ୟୋତିଷପୁରର ରାଜା କରାଇ ଦେଲେ । ଭଗଦତ୍ତ ପ୍ରାର୍ଥନା କଲା— "ପ୍ରଭୋ ! ନିଜର ପାଦପଦ୍ମର ପରାଗରେ ମୋର ପୁରକୁ ପବିତ୍ର କରନ୍ତୁ । ମୋର ଭବନକୁ କୃତାର୍ଥ କରନ୍ତୁ ।" ଭଗଦତ୍ତର ପ୍ରାର୍ଥନାରେ ଭଗବାନ ସେହି ସୁସଜ୍ଜିତ ସମୃଦ୍ଧିଶାଳୀ ଭବନ ମଧ୍ୟରେ ପ୍ରବେଶ କଲେ । ସେ ବିଭିନ୍ନ ସ୍ଥାନ ଦର୍ଶନ କରି କହିଲେ— "ଭଗଦତ୍ତ ! ମୁଁ ଶୁଣିଥିଲି ତୁମ ପିତା ଅନେକ ରାଜକନ୍ୟାଙ୍କୁ ଆଣି ବନ୍ଦୀକରି ରଖି-ଅଛନ୍ତି । ସେହି କନ୍ୟାମାନଙ୍କ ସଂଖ୍ୟା କେତେ ଓ ସେମାନେ କେଉଁଠାରେ ଅଛନ୍ତି ?"

ଭଗଦତ୍ତ ହାତଯୋଡ଼ି କହିଲା—"ଦେବ ! ସେମାନଙ୍କ ସଂଖ୍ୟା ଷୋଳ ସହସ୍ର ଏକଶହ । ମୋର ପିତାଙ୍କର ଇଚ୍ଛା ଥିଲା, ଯେତେବେଳେ ୧୮ ହଜାର କନ୍ୟା ହୋଇଯିବେ, ସେତେବେଳେ ସେମାନଙ୍କୁ ସେ ବିବାହ କରିବେ । ତାଙ୍କର ଏହି ମନୋରଥ ସଫଳ ହୋଇପାରିଲା ନାହିଁ । ସେହି କନ୍ୟାମାନେ ଅତ୍ୟନ୍ତ ସୁନ୍ଦରୀ, ସର୍ବଗୁଣ-ସମ୍ପନ୍ନା ଓ ଗଙ୍ଗାଜଳ ସଦୃଶ ପବିତ୍ର ଅଟନ୍ତି । ଏହି ସମ୍ମୁଖସ୍ଥ ଭବନରେ ସେମାନେ ବନ୍ଦୀ ହୋଇ ରହିଛନ୍ତି । ଆପଣ ଆଜ୍ଞା ଦେଲେ ସେମାନଙ୍କୁ ନିଜ ନିଜ ପିତାଙ୍କ ନିକଟରେ ପହଞ୍ଚାଇ ଦିଆଯିବ ।"

ଭଗବାନ କହିଲେ—"ଚାଲ ସେମାନଙ୍କୁ ପ୍ରଥମେ ଦେଖିବା । ତାହାପରେ ସ୍ଥିର କରିବାକୁ ହେବ ଯେ, ସେମାନଙ୍କୁ କେଉଁଠାରେ ପହଞ୍ଚାଇ ଦେବାକୁ ହେବ ।"

"ଯଥା ଆଜ୍ଞା", କହି ଭଗଦତ୍ତ ସଙ୍ଗେ ସଙ୍ଗେ ସେହି ଭବନକୁ ଖୋଲି ଦେଲେ । ଭଗବାନ ମନ୍ଦ ମନ୍ଦ ହସି ଗଳାରେ ଲମ୍ବିଥିବା ବନମାଳାକୁ ହଲାଇ ହଲାଇ ପୀତାମ୍ବରକୁ ଉଡ଼ାଇ ଉଡ଼ାଇ ସେଠାରେ ଯାଇ ପହଞ୍ଚିଲେ । ସେଠାରେ ପହଞ୍ଚି ଦେଖିଲେ ଯେ ସୁନ୍ଦରୀ କନ୍ୟାମାନେ କାରାବାସ ଭୟ କାରଣରୁ ନିସ୍ତେଜ ହୋଇପଡ଼ିଛନ୍ତି । ଭଗବାନଙ୍କୁ ଦର୍ଶନ କରିବାମାତ୍ରେ ସମସ୍ତେ ସଂଭ୍ରମର ସହିତ ଦଣ୍ଡାୟମାନ ହୋଇପଡ଼ିଲେ । ସହସା ପରମ ସୁନ୍ଦର ପୁରୁଷଙ୍କୁ ଦେଖି ସେମାନେ ଭଗବାନ ଶ୍ୟାମସୁନ୍ଦରଙ୍କ ରୂପରେ ମୋହିତ ହୋଇଗଲେ । ସେମାନେ ପୂର୍ବରୁ ଶୁଣିଥିଲେ ଯେ, ସେମାନଙ୍କୁ ହରଣ କରି ଆଣିଥିବା ନରକାସୁର ମରିଯାଇଛି । ସମସ୍ତଙ୍କ ମନରେ ଏକ ସଙ୍ଗେ ଏହି ସଂକଳ୍ପ ଜାତ ହେଲା ଯେ, "ଦୈବ ଆଜି ଆମ୍ଭମାନଙ୍କ ନିକଟକୁ ଆମ୍ଭମାନଙ୍କ ପାଇଁ ଏହି

ଭୁବନମୋହନ ବର ପଠାଇ ଅଛନ୍ତି । ସେମାନେ ବିଧାତାଙ୍କୁ ଜଣାଇବାକୁ ଲାଗିଲେ— ଏହି ଭୁବନମୋହନ ପୁରୁଷ ଯେପରି ଆମ୍ଭମାନଙ୍କର ପାଣିଗ୍ରହଣ କରନ୍ତି । ଏହି ହିଁ ଆମ୍ଭମାନଙ୍କର ପତି ହୁଅନ୍ତୁ ଓ ଆମ୍ଭମାନଙ୍କୁ ପତ୍ନୀରୂପେ ଗ୍ରହଣ କରନ୍ତୁ ।

ଭଗବାନ ତ ଅନ୍ତର୍ଯ୍ୟାମୀ, ସେ ସେମାନଙ୍କ ଅଭିପ୍ରାୟ ବୁଝିପାରିଲେ । ବାହାରକୁ ଦେଖାଇହେବା ଭଳି ସେ ପଚାରିଲେ—"କୁହ, ତୁମ୍ଭେମାନେ ସବୁ କୁଶଳ ତ ? ତୁମ୍ଭେମାନେ ବହୁତ କଷ୍ଟରେ ଥିଲ ନା ? ତୁମ୍ଭମାନଙ୍କୁ ଏବେ ନିଜ ନିଜ ପିତାଙ୍କ ନିକଟରେ ନେଇ ପହଞ୍ଚାଇ ଦେବାକୁ ହେବ ।"

କନ୍ୟାମାନେ କହିଲେ—"ପ୍ରଭୋ ! ପିତା ଆମ୍ଭମାନଙ୍କୁ ତ ସବୁଦିନେ ଘରେ ରଖିପାରିବେ ନାହିଁ । ସେମାନେ କାହାର ହସ୍ତରେ ଆମ୍ଭମାନଙ୍କୁ ଅର୍ପଣ କରିବେ । ସେମାନଙ୍କୁ ଯୋଗ୍ୟ ପାତ୍ର ଖୋଜିବା ପାଇଁ ବହୁତ କଷ୍ଟ ସ୍ୱୀକାର କରିବାକୁ ପଡ଼ିବ । ଏବେ ଆମ୍ଭେମାନେ ଘରେ ବସି ଦୈବ ଯୋଗକୁ ସର୍ବଗୁଣସମ୍ପନ୍ନ ପତି ପାଇଯାଇଛୁ । ତେଣୁ ଆମ୍ଭେମାନେ ପିତାଳୟକୁ ଆଉ କାହିଁକି ଯିବୁ ? ଆମ୍ଭେମାନେ ଯିବାଦ୍ୱାରା ସେମାନଙ୍କ ଚିନ୍ତା ବହୁତ ବଢ଼ିଯିବ । ଏବେ ଆମ୍ଭେମାନେ ଆପଣଙ୍କ ଶରଣାଗତ । ଆପଣ ଚାହିଲେ ଆମ୍ଭମାନଙ୍କୁ ଆପଣାର କରି ନେଇପାରନ୍ତି ଅଥବା ପାଦରେ ଠେଲି ଦେଇ ପାରନ୍ତି । ଏଠାରେ ରଖି ପାରନ୍ତି କିମ୍ବା ଯେଉଁଠାକୁ ଇଚ୍ଛା ସେଠାକୁ ନେଇଯାଇ ପାରନ୍ତି ।"

ଭଗବାନ କଥାକୁ ସ୍ପଷ୍ଟ କରିବା ପାଇଁ ସମସ୍ତଙ୍କୁ ପୃଥକ୍ ପୃଥକ୍ ପଚାରିଲେ— ତୁମ୍ଭମାନଙ୍କ ମଧ୍ୟରୁ ଯେଉଁମାନଙ୍କର ନିଜ ପିତାଳୟକୁ ଯିବାର ଇଚ୍ଛା, ମୋତେ ତାହା ସ୍ପଷ୍ଟ ଭାବରେ କହିଦିଅ । ସଙ୍କୋଚ କରିବାର କୌଣସି କାରଣ ନାହିଁ ।"

ଏହା ଶୁଣି ସମସ୍ତେ ଏକ ସ୍ୱରରେ କହିଲେ—"ଆମ୍ଭେମାନେ ଆପଣଙ୍କ ଚରଣକୁ ଛାଡ଼ି ବ୍ରହ୍ମଲୋକକୁ ଯିବାକୁ ମଧ୍ୟ ଚାହୁଁ ନାହୁଁ । ଆପଣ ଆମ୍ଭମାନଙ୍କୁ ଯଦି ସଙ୍ଗରେ ନେଇଯିବେ ତ ଭଲ କଥା ନ ହେଲେ ଆମ୍ଭେମାନେ ସମସ୍ତେ ଆତ୍ମହତ୍ୟା କରିବୁ ।

ଭଗବାନ କହିଲେ—"ତୁମ୍ଭେମାନେ ଆତ୍ମହତ୍ୟା କାହିଁକି କରିବ ? ଯଦି ତୁମ୍ଭମାନଙ୍କର ଏପରି ଇଚ୍ଛା, ତାହାହେଲେ ଦ୍ୱାରକା ଯିବ ଚାଲ । ସେଠାରେ ସମସ୍ତେ ଯେପରି ରହିଛନ୍ତି, ତୁମ୍ଭେମାନେ ସେହିପରି ରହିବ ।" ଏହା ଶୁଣି ସମସ୍ତେ ଅତ୍ୟନ୍ତ ପ୍ରସନ୍ନ ହେଲେ । ଭଗବାନ ଉଦ୍ଧବଙ୍କୁ କହିଲେ, ଭାଇ ! ଏମାନଙ୍କୁ ଭଲଭାବରେ ସ୍ନାନାଦି କରାଇ ଦିଅ ।" ଭଗବାନଙ୍କ ଆଜ୍ଞା ପାଇ ହଜାର ହଜାର ଦାସୀ ସୁନ୍ଦର ସୁଗନ୍ଧିତ ଜଳରେ ଦିବ୍ୟୌଷଧି ଆଦି ଦେଇ ବିଧି ମୁତାବକ ସମସ୍ତଙ୍କୁ ସ୍ନାନ କରାଇଲେ । ସେମାନଙ୍କୁ

ସୁନ୍ଦର ସୁଗନ୍ଧିତ ମାଳା ପିନ୍ଧାଇ ବସ୍ତ୍ରଭୂଷଣରେ ସୁସଜ୍ଜିତ କରାଇ ଅତ୍ୟନ୍ତ ଆଦରର ସହିତ ପୃଥକ୍ ପୃଥକ୍ ଶଦାଗରେ ସେମାନଙ୍କୁ ବସାଇଲେ । ଭଗବାନଙ୍କ ଆଜ୍ଞା ପାଇବା ମାତ୍ରେ ଶବାର ବାହକମାନେ ଶବାଇ ଚାଳେଇ ଦ୍ୱାରକା ଅଭିମୁଖେ ଚାଲିଲେ ।

ଭଗବାନ୍ ସେହି କନ୍ୟାମାନଙ୍କୁ ବହୁ ମୂଲ୍ୟ ବସ୍ତ୍ର ଓ ମଣିମୟ ଦ୍ରବ୍ୟ ଆଭୂଷଣ ସହିତ ଅନେକ ଧନରତ୍ନ, ବହୁତ ରଥ, ଅଶ୍ୱ ଓ ବିବିଧ ପ୍ରକାର ଦ୍ରବ୍ୟ ପ୍ରଦାନ କଲେ । ଐରାବତ କୁଳରେ ଉତ୍ପନ୍ନ ଚତୁର୍ଦ୍ଦନ୍ତ ବିଶିଷ୍ଟ ଅତ୍ୟନ୍ତ ବେଗବାନ୍ ଚୌଷଠୀ ହସ୍ତୀ ମଧ୍ୟ ଦେଲେ । ଭଗବାନ ସେହି ସମସ୍ତ ପ୍ରେମ ଉପହାର ବସ୍ତୁ ଗ୍ରହଣ କରି ସେବକମାନଙ୍କ ହାତରେ ସେଗୁଡ଼ିକୁ ଦ୍ୱାରକାପୁରୀ ପଠାଇଦେଲେ ।

ଷୋଳ ସହସ୍ର କନ୍ୟାଙ୍କୁ ଓ ଉପହାରଗୁଡ଼ିକୁ ଦ୍ୱାରକାପୁରୀ ପଠାଇ ଦେଇ ଏବେ ଭଗବାନ ଚିନ୍ତାକଲେ—"ପ୍ରଥମେ ଅଦିତିମାତାଙ୍କ କୁଣ୍ଡଳ ତାଙ୍କୁ ଦେଇଆସି ପରେ ମୁଁ ଦ୍ୱାରକା ଯିବି ।" ଏହା ଚିନ୍ତାକରି ଭଗବାନ ଗରୁଡ଼ଙ୍କୁ କହିଲେ ବର୍ତ୍ତମାନ ମୋତେ ସ୍ୱର୍ଗକୁ ନେଇଚାଲ । ଭଗବାନଙ୍କ ଆଜ୍ଞା ପାଇ ଗରୁଡ଼ ନିଜ ପାଖରେ ସାମବେଦ ଧ୍ୱନି କରି ସ୍ୱର୍ଗକୁ ଉଡ଼ିଚାଲିଲେ । ସେ ପ୍ରଥମେ ସେ ସୁମେରୁର ମଣିମୟ ଶିଖରକୁ ନେଇ ସୁମେରୁ ଉପରେ ସ୍ଥାପନ କଲେ । ତାହାପରେ ବରୁଣଙ୍କ ଛତ୍ର ଗୃମରକୁ ବରୁଣଙ୍କ ପାଖରେ ନେଇ ପହଞ୍ଚାଇ ଦେଲେ ଓ ଶେଷରେ ସିଧାସଳଖ ଇନ୍ଦ୍ରଭବନ ଆଡ଼କୁ ଚାଲିଲେ ।

ଇନ୍ଦ୍ର ଯେତେବେଳେ ଦେଖିଲେ ଭଗବାନ ଗରୁଡ଼ ପୃଷ୍ଠରେ ବସି ସତ୍ୟଭାମାଙ୍କୁ ସାଙ୍ଗରେ ଧରି ତାଙ୍କ ପୁର ଆଡ଼େ ଆସୁଛନ୍ତି, ସେତେବେଳେ ସେ ସମସ୍ତ ଦେବତାଙ୍କୁ ସଙ୍ଗରେ ଧରି ଭଗବାନଙ୍କୁ ପାଛୋଟି ନେବାପାଇଁ ତାଙ୍କ ନିକଟରେ ଯାଇ ପହଞ୍ଚିଲେ । ସେ ଅତ୍ୟନ୍ତ ଆଦର ସହକାରେ ଭଗବାନଙ୍କର ସ୍ୱାଗତ ସତ୍କାର କଲେ । ସର୍ବପ୍ରଥମେ ଭଗବାନ ସତ୍ୟଭାମାଙ୍କୁ ସଙ୍ଗରେ ନେଇ ମାତା ଅଦିତିଙ୍କ ନିକଟକୁ ଗଲେ । ସେଠାକୁ ଯାଇ ସେ ମାତାଙ୍କୁ ପ୍ରଣାମ କଲେ । ଭଗବାନ କହିଲେ—"ମାତା ! ଆପଣଙ୍କର ଏହି ଦିବ୍ୟ କୁଣ୍ଡଳ ଯାହାକୁ କି ଦୁଷ୍ଟ ନରକାସୁର ଏଠାରୁ ନେଇ ଯାଇଥିଲା, ତାହାକୁ ମୁଁ ମାରି କୁଣ୍ଡଳ ଆଣି ଆପଣଙ୍କୁ ଦେବାକୁ ଆସିଛି । ଆପଣ ଏହା ଗ୍ରହଣ କରନ୍ତୁ ।" ଏହା ଶୁଣି ଅଦିତି ଦେବୀ ପ୍ରେମାଶ୍ରୁ ବିସର୍ଜନ କରି ଗଦ୍‌ଗଦ୍ ବାଣୀରେ କହିଲେ—"ହେ ଯଦୁନନ୍ଦନ ! ତୁମେ ସର୍ବଜ୍ଞ, ସମଗ୍ର ଜଗତର ସ୍ୱାମୀ ଓ ଜଗତର ଆଦି କାରଣ ଅଟ । ତୁମର ପୁଣି କିଏ ପିତା ବା କିଏ ମାତା ? ତୁମେ ତ ଅଜ, ଅବ୍ୟୟ, ଅବିନାଶୀ । ଅସୁରଙ୍କୁ ମାରିବା ତୁମପାଇଁ ଖେଳ-ସଦୃଶ । ଶରଣାଗତ ଏ ଅବଳା ଉପରେ ତୁମେ ଏତେ କୃପା କରି ଦର୍ଶନ ଦେଲ । ହେ ଦେବ ! ମୁଁ ଏଥିପାଇଁ ନିଜକୁ ଧନ୍ୟ ମନେ କରୁଛି । ତୁମ ପାଦପଦ୍ମରେ ମୋର ବାରମ୍ବାର ପ୍ରଣାମ ।" ଏହା କହି ଜଗନ୍ମାତା ଅଦିତି ନିଜର ପ୍ରେମାଶ୍ରୁରେ ଭଗବାନଙ୍କର ପୀତାମ୍ବର

ଛଡ଼ାଇ ଦେଲେ । ସେତେବେଳେ ସତ୍ୟଭାମା ଅଦିତିଙ୍କ ପାଦ ସ୍ପର୍ଶ କରି ନିଜର ନାମ ତାଙ୍କୁ କହିଲେ । ମାତା ତାଙ୍କୁ ଅତି ସ୍ନେହରେ ଆଲିଙ୍ଗନ କରି ଆଶୀର୍ବାଦ ଦେଇ କହିଲେ—ମା' ! ତୋର ସୁଖ ସୌଭାଗ୍ୟ ସର୍ବଦା ଅତୁଟ ରହୁ । ତୋତେ କୌଣସି ପ୍ରକାର ଦୁଃଖ ଶୋକ ଛୁଇଁବାକୁ ନପାଉ, ଜରା ଅବସ୍ଥା ନ ହେଉ, ତୁ ସୁଖରେ ପତିଙ୍କ ସହିତ ପ୍ରେମମୟ ଜୀବନ ଯାପନ କର ।"

ସତ୍ୟଭାମାଙ୍କର ଆଗମନ ବାର୍ତ୍ତା ପାଇ ଇନ୍ଦ୍ରାଣୀ ମଧ୍ୟ ନିଜ ଶାଶୁଙ୍କ ନିକଟରେ ଆସି ପହଞ୍ଚିଲେ । ଦୁଇ ବୋହୂ ବହୁ ସମୟ ପର୍ଯ୍ୟନ୍ତ ତାଙ୍କ ନିକଟରେ ବସି ଦୁଃଖସୁଖ ହେଲେ । ଏହି ସମୟରେ ଇନ୍ଦ୍ର ଭଗବାନଙ୍କୁ କହିଲେ—"ହେ ଯଦୁନନ୍ଦନ ! ଆପଣ ମୋ ସଭାରେ ପଦାର୍ପଣ କରନ୍ତୁ । ସେଠାରେ ଦେବତାମାନେ ଆପଣଙ୍କ ଦର୍ଶନ କରିବା ପାଇଁ ଅତି ଆଗ୍ରହରେ ଅପେକ୍ଷା କରିଛନ୍ତି ।"

ଏହା ଶୁଣି ମାତାଙ୍କଠାରୁ ଆଜ୍ଞା ନେଇ ଭଗବାନ ଇନ୍ଦ୍ରଙ୍କ ସହିତ ସୁଧର୍ମା ସଭାକୁ ଗଲେ ଓ ଇନ୍ଦ୍ରାଣୀ ସତ୍ୟଭାମାଙ୍କୁ ସଙ୍ଗରେ ନେଇ ଅନ୍ତଃପୁରକୁ ଗଲେ । ସେଠାରେ ସେ ସତ୍ୟଭାମାଙ୍କୁ ବହୁତ ଆଦର ସତ୍କାର କଲେ । ତାଙ୍କୁ ମଣିମୟ ଆସନ ଉପରେ ବସାଇଲେ । ଅନେକ ଦୁଃଖ ସୁଖ ହେଲେ । ଏହି ସମୟରେ କଳ୍ପବୃକ୍ଷର ପୁଷ୍ପ ଭରି ହୋଇଥିବା ଏକ ଡାଲି ଧରି ନନ୍ଦନକାନନର ଏକ ରକ୍ଷକ ସେଠାରେ ଆସି ପହଞ୍ଚିଲା । ସେହି ଫୁଲରେ ଶଚୀଦେବୀ ନିଜର ଶୃଙ୍ଗାର କଲେ ଓ ପୁଷ୍ପ ଶଯ୍ୟା ରଚନା କଲେ । ଏହି ସମୟରେ ଜଣେ ଅପ୍ସରା କହିଲା—"ସତ୍ୟଭାମାଙ୍କ ଚୁଡ଼ାରେ କିଛି ଫୁଲ ଖୋସିବା ପାଇଁ ଦିଅନ୍ତୁ ମହାରାଣୀ ।"

ଏହା ଶୁଣି ଇନ୍ଦ୍ରାଣୀ ତାକୁ ତାଗିଦ୍ କରି କହିଲେ—"ତୁ ତ କିଛି ଜାଣି ନାହୁଁ, ଅଯଥା କିଆଁ ବାହିକ କହୁଛୁ ? ଏହା ହେଉଛି ସ୍ୱର୍ଗୀୟ ଲଳନାଙ୍କର ଉପଭୋଗ୍ୟ ବସ୍ତୁ । ମାନବୀ ସ୍ତ୍ରୀଲୋକ ଏହି ସ୍ୱର୍ଗୀୟ ପୁଷ୍ପର ଅଧିକାରିଣୀ ନୁହଁନ୍ତି ।"

ଇନ୍ଦ୍ରାଣୀ ଏହି କଥା ଏପରି ଭାବରେ କହିଲେ, ଯେପରିକି ସତ୍ୟଭାମା ତାହା ଶୁଣି ପାରିବେ ନାହିଁ; କିନ୍ତୁ ସତ୍ୟଭାମା ସେହି ଚୁପ୍ ଚୁପ୍ କଥା ସବୁ ଶୁଣିପକାଇଲେ । ଏହା ଶୁଣିବା ମାତ୍ରେ ସେ କ୍ରୋଧରେ ପାଗଳିନୀ ପରି ହୋଇ ଉଠିଲେ । ସେ ଚିନ୍ତା କରିବାକୁ ଲାଗିଲେ—"ଏହି ଇନ୍ଦ୍ରାଣୀ ଏଠାରେ ଏତେ ବଡ଼ାଇ କରୁଛି, ଏହାର ପତି ତେଣେ ମୋ ଦ୍ୱାର ଫାଟକରେ ଯାଇ 'ନାକ ରଗୁଡ଼ୁଛି, 'ପୃତ ମାଗଧନ୍ତ' ଭଜନ (ଭୃତ୍ୟଙ୍କ ଭଜନ) ସ୍ତୁତି କରୁଛି ଓ ଇଏ ଏଠାରେ କହୁଛି କ'ଣ ନା, ମୁଁ ଏହି ପାରିଜାତ ଫୁଲ ପାଇବାର ଯୋଗ୍ୟ ନୁହେଁ ? ସେ ମୋତେ ମାନବୀ ମହିଳା ବୋଲି କହି ଅପମାନିତ କରୁଛି ! ଆଚ୍ଛା ଠିକ୍ ଅଛି, ମୁଁ ମଧ୍ୟ ତାକୁ ଦେଖାଇ ଦେବି

ଯେ, ମୁଁ କଭଳ ମାନବୀ । ଯଦି ମୁଁ ତା ଗର୍ବ ଚୂର୍ଣ୍ଣ ନ କରିବି, ତାହାହେଲେ ମୋର ନାମ ସତ୍ୟଭାମା ନୁହେଁ ।" ଏହା ଚିନ୍ତା କରି ସେ ଚୁପ୍ ରହିଗଲେ । କ୍ରୋଧ ଯୋଗୁ ତାଙ୍କର ମୁଖମଣ୍ଡଳ ନାଲି ପଡ଼ି ଯାଇଥିଲା । କିନ୍ତୁ ସେହି ସମୟରେ ସେ ଗୋଟିଏ ହେଲେ ଶବ୍ଦ ବି ଉଚ୍ଚାରଣ କରି ନ ଥିଲେ । ସେ ଚିନ୍ତା କଲେ—"କହିଦେଲେ ତ କଥା ଦୁର୍ବଳ ହୋଇଯିବ, ତାହାର କିଛି ମୂଲ୍ୟ ରହିବ ନାହିଁ । ମୁଁ କାର୍ଯ୍ୟରେ ଏହା ପ୍ରଦର୍ଶିତ କରି ଦେଖାଇଦେବି ।" ଏହା ଚିନ୍ତା କରି ସେ କହିଲେ—"ମହାରାଣୀ ! ଏବେ ମୋତେ ବିଦାୟ ଦିଅନ୍ତୁ ।

କଥାରୁ ଇନ୍ଦ୍ରାଣୀ ବୁଝିପାରିଲେ ଯେ ସତ୍ୟଭାମାଙ୍କ ମନରେ ଦୁଃଖ ହୋଇଛି । କାରଣ ହୃଦୟଗତ ଭାବ ଲୁଚି ରହେ ନାହିଁ । ସେ ଶିଷ୍ଟାଚାର ପ୍ରଦର୍ଶନପୂର୍ବକ କହିଲେ— "ଏତେ ଚଞ୍ଚଳ ହେଉଛ କାହିଁକି ? ଆଉ କିଛି ସମୟ ବସ ।"

ସତ୍ୟଭାମା ଉଠିବାକୁ ଯାଇ କହିଲେ—"ସେ ମୋତେ ଅପେକ୍ଷା କରିଥିବେ ।" ଏହା କହି ସେ ଆଉ ଉତ୍ତର ପାଇବାକୁ ପ୍ରତୀକ୍ଷା ନକରି ସେଠାରୁ ଚାଲି ଆସିଲେ । ଇନ୍ଦ୍ରାଣୀ କିଛି ବାଟ ତାଙ୍କୁ ବଳାଇ ଦେବା ପାଇଁ ତାଙ୍କ ପଛେ ପଛେ ଆସିଲେ । ସେ ଯେତେବେଳେ ଦେଖିଲେ ସତ୍ୟଭାମା ତାଙ୍କ ଆଡ଼କୁ ଆଉ ଚାହୁଁ ନାହାନ୍ତି, ସେତେବେଳେ ସେ ଫେରିଆସିଲେ । ଇନ୍ଦ୍ରାଣୀ ଫେରି ଯିବାରୁ ସେ ପୁନଶ୍ଚ ନିଜକୁ ଅପମାନିତ ବୋଧ କଲେ ।

ପଛରେ ଥିବା ଏକ ଅପ୍ସରା ସେତେବେଳେ କହୁଥିଲା—"ସତ୍ୟଭାମା ଅପମାନିତ ହୋଇ ଚାଲିଗଲେ ।"

ଏହା ଶୁଣି ମୁହଁ ମୋଡ଼ି ପରିହାସ ଛଳରେ ଇନ୍ଦ୍ରାଣୀ କହିଲେ—"ସେ ଖରାପ ଭାବିଲେ ଭାବୁଥାନ୍ତୁ, ମୋର ଏଥିରେ ଯାଏ ଆସେ କେତେ ? ମୋର ସେ କ'ଣ କରିବ ? ବରଂ ଏଠାରେ ରହିଲେ ମୋର ଅଧିକ ଦୁଇପଟ ଲୁଟି ସେ ନେଇବ । ଯାହା ବାସ୍ତବ କଥା, ତାହା ମୁଁ କହିଦେଲି । କଳ୍ପବୃକ୍ଷର ପୁଷ୍ପର ମାଳା ତ ଶଚୀଦେବୀ ଇନ୍ଦ୍ରାଣୀ ହିଁ ସ୍ୱର୍ଗରେ କେବଳ ଧାରଣ କରନ୍ତି । ମାନବୀ ସ୍ତ୍ରୀ କେବେ ସ୍ୱର୍ଗର ପୁଷ୍ପକୁ ନିଜ ଶରୀରରେ କିପରି ପିନ୍ଧିବେ ? ସତ କଥାକୁ ଯଦି ସେ ଖରାପ ଭାବୁଛି, ତେବେ ଭାବୁଥାନ୍ତୁ । ମୁଁ ହେଉଛି ତ୍ରିଲୋକେଶଙ୍କର ପତ୍ନୀ ।

ଏହି କଥା ସବୁ ମଧ୍ୟ ସତ୍ୟଭାମାଙ୍କ କାନରେ ପଡ଼ିଲା । ଶୁଣିବା ମାତ୍ରେ ସେ କ୍ରୋଧରେ ଜର୍ଜ୍ଜରିତ ହୋଇ ଉଠିଲେ । ସେ ଅତି ବେଗରେ ଯାଇ ନିଜର ପତିଙ୍କ ନିକଟରେ ପହଞ୍ଚିଗଲେ । ସେତେବେଳେ ଭଗବାନ ପୁବର୍ଣ୍ଣ ସିଂହାସନରେ ବିକ୍ରମନ୍ତ

କରୁଥିଲେ । ଇନ୍ଦ୍ର ସତ୍ୟଭାମାଙ୍କୁ ସେଠାରେ ଦେଖି ଆସନରୁ ଉଠି ଠିଆ ହେଲେ ଓ କହିଲେ—"ଆସନ୍ତୁ ! ଆସନ ଉପରେ ବସୁଳମାନ କରନ୍ତୁ ।" କିନ୍ତୁ ସତ୍ୟଭାମା ନ ବସି ସେଠାରେ ଠିଆ ହୋଇ ଭଗବାନଙ୍କୁ କହିଲେ—"ଚାଲ ଯିବା, ଏଠାରେ ଉଦ୍ୟାନ ଉପବନ ମଧ୍ୟ ଟିକିଏ ବୁଲି ଦେଖି ଆସିବା ।"

ଏହା ଶୁଣି ଭଗବାନ ସିଂହାସନରୁ ଉଠି ଠିଆ ହେଲେ ଓ ସତ୍ୟଭାମାଙ୍କ ସଙ୍ଗରେ ଚାଲିବାକୁ ଲାଗିଲେ ।

ଦେବେନ୍ଦ୍ର ଶିଷ୍ଟାଚାର ସହକାରେ କହିଲେ—"ଭଗବନ୍ ! ମୁଁ ମଧ୍ୟ ଆପଣଙ୍କ ସଙ୍ଗରେ ଯିବାକୁ ଚାହୁଁଛି । ମୁଁ ସଙ୍ଗରେ ଗଲେ ଉଦ୍ୟାନ ଉପବନ ସବୁ ଆପଣଙ୍କୁ ଦେଖାଇବି ।"

କଥା ମଝିରେ ସତ୍ୟଭାମା କହିଲେ—"ନା, ଆପଣଙ୍କୁ ଆସିବାକୁ ପଡ଼ିବ ନାହିଁ, ଆମ ସହିତ ଗରୁଡ଼ ଯିବେ । ସେ ଆମକୁ ସବୁ ଦେଖାଇ ଦେବେ ।

ସତ୍ୟଭାମାଙ୍କର ଭାବଭଙ୍ଗୀକୁ ଦେଖି ଇନ୍ଦ୍ର ଡରିଗଲେ । ସେ ଚିନ୍ତା କରିବାକୁ ଲାଗିଲେ—"ମୋ ସେବାରେ ବୋଧହୁଏ କୌଣସି ତ୍ରୁଟି ରହିଗଲା, ଯଦ୍ଦ୍ୱାରା କି ପ୍ରଭୁଙ୍କ ପତ୍ନୀ ଅସନ୍ତୁଷ୍ଟ ହୋଇଛନ୍ତି ।" ସେ ଆଉ ଅଧିକ କିଛି କହିବାକୁ ଉଚିତ ମନେକଲେ ନାହିଁ । ଭଗବାନ ଯେତେବେଳେ ଗରୁଡ଼ ଉପରେ ବସି ଯିବାକୁ ବାହାରିଲେ, ସେତେବେଳେ ଇନ୍ଦ୍ର ପ୍ରଣାମ କରି ନିଜ ସାଥିମାନଙ୍କ ସହିତ ଫେରି ଆସିଲେ । ସ୍ୱର୍ଗୋଦ୍ୟାନକୁ ଯାଇ ସତ୍ୟଭାମା ଏକ ଏକ ବୃକ୍ଷକୁ ଦେଖି ପଚାରିବାକୁ ଲାଗିଲେ—"ପ୍ରାଣନାଥ ! ଏହା କେଉଁ ବୃକ୍ଷ, ତାହା କେଉଁ ବୃକ୍ଷ ?"

ଭଗବାନ୍ ସତ୍ୟଭାମାଙ୍କୁ ସବୁ ବୃକ୍ଷର ନାମ ବତାଇ ଦେଲେ । ଏହିପରି ଭାବରେ ପଚାରି ପଚାରି ସତ୍ୟଭାମା ଆଗକୁ ଚାଲିଥାଆନ୍ତି, ହଠାତ୍ ସେ ଯାଇ ଏକ ସୁନ୍ଦର ବୃକ୍ଷ ନିକଟରେ ପହଞ୍ଚିଲେ । ସେହି ବୃକ୍ଷ ହିଁ କଳ୍ପବୃକ୍ଷ । ତାହାର ପୁଷ୍ପକୁ ଇନ୍ଦ୍ରାଣୀଙ୍କ ବ୍ୟତୀତ ଅନ୍ୟ କେହି ବ୍ୟବହାର କରୁ ନଥିଲେ । ସେହି ପୁଷ୍ପକୁ ଦେଖି ସତ୍ୟଭାମା ବୁଝି ପାରିଲେ ଯେ, ଏହା ସେହି ବୃକ୍ଷ । ଅତ୍ୟନ୍ତ କୌତୁହଳୀ ହୋଇ ସେ ନ ଜାଣିଲା ପରି ଭଗବାନଙ୍କୁ ପଚାରିଲେ—"ପ୍ରାଣନାଥ ! ଏ ବୃକ୍ଷଟି କି ବୃକ୍ଷ ?"

ଭଗବାନ କହିଲେ—"ଏହାର ନାମ କଳ୍ପବୃକ୍ଷ । ସ୍ୱର୍ଗର ଉପବନମାନଙ୍କରେ ଏହିପରି ଅନେକ କଳ୍ପବୃକ୍ଷ ଅଛି, ଏହା ସର୍ବୋତ୍ତମ ବୃକ୍ଷ । ଏହାର ପୁଷ୍ପଗୁଡ଼ିକର ଗନ୍ଧ ଯୋଜନ ଯୋଜନ ଦୂର ଯାଇଥାଏ ।"

ସତ୍ୟଭାମା ଅତ୍ୟନ୍ତ ଉତ୍ସାହର ସହିତ କହିଲେ—"ହଁ, ବାସ୍ତବରେ ତ ଫୁଲଗୁଡ଼ିକ ଅତି ସୁନ୍ଦର । ଚାଲ, ସେହି ବୃକ୍ଷ ମୂଳରେ ବସି ଟିକିଏ ବିଶ୍ରାମ ନେବା ।"

ନିଜ ପ୍ରିୟାଙ୍କର ଇଚ୍ଛା ବୁଝିପାରି ଯଦୁନନ୍ଦନ ସେହି କଳ୍ପବୃକ୍ଷ ମୂଳରେ ବସିଲେ । କିଛି ସମୟ ପର୍ଯ୍ୟନ୍ତ ସେ ସତ୍ୟଭାମାଙ୍କ ସହିତ ଏଣୁ ତେଣୁ କଥାବାର୍ତ୍ତା ହେଲେ । ସତ୍ୟଭାମା ତାଙ୍କୁ ଅତି ସ୍ନେହପୂର୍ଣ୍ଣବାଣୀରେ କହିଲେ—"ପ୍ରାଣନାଥ ! ମୁଁ ଆପଣଙ୍କୁ ଗୋଟିଏ କଥା ପଚାରିବି, ଆପଣ କିଛି ନ ଭାବି ମୋତେ ତାହାର ଉତ୍ତର ଦେବେ !"

ଭଗବାନ କହିଲେ—"ହଁ, ପଚାର । ମୁଁ ନିଶ୍ଚୟ ଉତ୍ତର ଦେବି ।"

ସତ୍ୟଭାମା କହିଲେ—"ଆପଣ ଛଳ କପଟ ନ କରି ଠିକ୍ ସତ କଥା କହିବେ ତ ?"

ଭଗବାନ କହିଲେ—"ମୋତେ ଏ ସାମାନ୍ୟ କଥାରେ ଏତେ ଅବିଶ୍ୱାସ କରିବାର କ'ଣ ଅଛି, ଯାହା ପଚାରିବ ପଚାର ।"

ସତ୍ୟଭାମା ଚଞ୍ଚଳତା ପ୍ରକାଶ କରି କହିଲେ—"ନା, ମୁଁ ଅବିଶ୍ୱାସ କରିବାର କୌଣସି କାରଣ ନାହିଁ; କିନ୍ତୁ ବେଳେ ବେଳେ ଆପଣ ମୋତେ ଏପରି ଭୁଲାଇ ଦିଅନ୍ତି ଯେ, ମୁଁ ସେଥିରେ ଏକମତ ହୋଇଯାଏ ।"

ଭଗବାନ ହସି ହସି କହିଲେ—"ନା, ମୁଁ ଆଦୌ ଭୁଲାଇବି ନାହିଁ, ତୁମେ ଯାହା ପଚାରିବ ପଚାର ।"

ସତ୍ୟଭାମା କହିଲେ—"ଆଚ୍ଛା, ଆପଣ ମୋତେ ବାରମ୍ବାର କହି ଆସିଛନ୍ତି ଯେ, "ମୁଁ ତୁମକୁ ଯେତେ ଭଲପାଏ, ରୁକ୍ମିଣୀ, କାଳିନ୍ଦୀ ଓ ଜାମ୍ବବତୀ ଆଦିଙ୍କୁ ସେତେ ଭଲପାଏ ନାହିଁ । ଏହା କ'ଣ ପ୍ରକୃତ ସତ୍ୟକଥା ? ଆପଣ କେବଳ ମୋତେ ପ୍ରସନ୍ନ କରାଇବା ପାଇଁ ଏହା କୁହନ୍ତି ନାହିଁ ତ ?

ଭଗବାନ ହସି ହସି କହିଲେ—"ତୁମେ ଆଗ ନିଜର ଅଭିପ୍ରାୟ କ'ଣ କହୁନା ନାହିଁକି ? ଏଣୁତେଣୁ କଥା କହି ଲାଭ କ'ଣ ?"

ସତ୍ୟଭାମା ଗମ୍ଭୀରତାର ସହିତ କହିଲେ—"ପ୍ରଥମେ ଆପଣ ଏହି କଥାର ଉତ୍ତର ଦିଅନ୍ତୁ, ତେବେ ଯାଇ ମୁଁ ନିଜର ଅଭିପ୍ରାୟ କହିବି ।"

ଭଗବାନ କହିଲେ—"ତୁମେ ତ ଅଯଥା କଥା ସବୁ କହୁଛ, ଯାହା କହିବା କଥା, ତାହା କହୁନାହଁ ?

ସତ୍ୟଭାମା ଆଗ୍ରହର ସହିତ କହିଲେ—"ମୁଁ ବ୍ୟର୍ଥ କଥା କହି କଥା ବଢ଼ାଉ ନାହିଁ । ଆପଣ ପ୍ରଥମେ ମୋର ଏହି ପ୍ରଶ୍ନର ଉତ୍ତର ଦିଅନ୍ତୁ, ତା'ପରେ ମୁଁ ଅନ୍ୟ କଥା କହିବି ।"

ଭଗବାନ୍ କହିଲେ—ପ୍ରେମ କରୁଛ, ପ୍ରେମ କରୁଛ, ଏହା କହିବା ଦ୍ୱାରା ପ୍ରେମର ମହତ୍ତ୍ୱ କମିଯାଏ । ଯିଏ ବାରମ୍ବାର ଏହା କହେ ଯେ, ମୁଁ ତୁମକୁ ପ୍ରେମ କରେ, ପ୍ରେମ କରେ, ସେ ଅବଶ୍ୟ କୃତ୍ରିମ ପ୍ରେମ । ତୁମେ ମୋତେ ସନ୍ଦେହ କରୁଛ । ତାହା ନ କର ବୁଝି—ହଁ, ଠିକ୍ ଅଛୁ, ଆପଣଙ୍କ କଥା ଅନ୍ୟଥା ହେବାର ନୁହେଁ । ତେବେ ତୁମ ମନ କଥା କୁହ ।

ସତ୍ୟଭାମା କହିଲେ—"ବାସ୍, ମୁଁ ଆପଣଙ୍କୁ ଏଥର ତାହାହିଁ କହିବ । ମୋର ଆପଣଙ୍କ ନିକଟରେ ଏତିକି ପ୍ରାର୍ଥନା ଯେ, ଆପଣ ଯଦି ମୋତେ ପ୍ରକୃତରେ ଭଲ ପାଉଥାଆନ୍ତି, ତାହା ହେଲେ ଏହି କଳ୍ପବୃକ୍ଷକୁ ଉପାଡ଼ି ନେଇ ଦ୍ୱାରକାରେ ଚାଲ ରୋପଣ କରିବା । ମୁଁ ଏହାକୁ ମୋ ମହଲ ସମ୍ମୁଖରେ ଥିବା ଉପବନରେ ରଖିବାକୁ ଚାହୁଁଛି ।"

ଭଗବାନ୍ ପ୍ରେମପୂର୍ବକ ଶ୍ଳେଷ ସ୍ୱରରେ କହିଲେ—"ଆରେ ! ତୁମେ ପାଗଳୀ ହୋଇଗଲ ନା କ'ଣ ? ଏପରି ଅସମ୍ଭବ ପ୍ରସ୍ତାବ ଦେଉଛ ଯେ, ଯାହାକି କେବେହେଲେ କାର୍ଯ୍ୟକାରୀ କରି ହେବ ନାହିଁ । ଏହା ହେଉଛି ସ୍ୱର୍ଗର ବୃକ୍ଷ । ଏହା ପୃଥିବୀକୁ ଯିବ କିପରି ?

ସତ୍ୟଭାମା ଆଗ୍ରହ ସ୍ୱରରେ କହିଲେ—"ମହାରାଜ ! ଆପଣଙ୍କ ପକ୍ଷେ କୌଣସି କଥା ଅସମ୍ଭବ ନୁହେଁ । ମୁଁ ଏହି ବୃକ୍ଷକୁ ଏଠାରୁ ନ ନେଲେ ଯିବି ନାହିଁ । ଆପଣ ମୋତେ ପୂର୍ବରୁ କଥା ଦେଇଛନ୍ତି ଯେ, ମୋ ଘର ସମ୍ମୁଖରେ କଳ୍ପବୃକ୍ଷ ଲଗାଇ ଦେବେ ବୋଲି ।" ସେହି ବଚନକୁ ଏବେ ପୂର୍ଣ୍ଣ କରନ୍ତୁ ।"

ଭଗବାନ ହସି ହସି କହିଲେ—"ଆରେ ଯା, ସେତେବେଳେ ମୁଁ କେବଳ ତୁମର ମନ ରଖିବା ପାଇଁ ସେପରି କହି ଦେଇଥିଲି ।"

ସତ୍ୟଭାମା କହିଲେ—"ତାହା ହେଲେ ମୁଁ ଆଉ ଏଣିକି ଆପଣଙ୍କ କଥା କିପରି ବିଶ୍ୱାସ କରିବି ? ଆଜି ଆପଣ ମୋ ମନ ବୁଝିବା ପାଇଁ କିଛି କହି ଦେଇ କାଲିକି ପୁଣି ଅନ୍ୟର ମନ ରଖିବା ପାଇଁ ଆଉ କିଛି କହିଦେବେ ଓ ମୋତେ ଭଲ ନ ପାଇ ଅନ୍ୟକୁ ଭଲ ପାଇବେ ?"

ଏହା ଶୁଣି ଭଗବାନ ହସି ହସି ସତ୍ୟଭାମାଙ୍କ ଥିତକୁ ନିଜ ହାତରେ ଉପରକୁ ଉଠାଇ ସ୍ନେହରେ କହିଲେ—"ଦେଖ, ଆଉ ହଠ କର ନାହିଁ, ଯଦି ତୁମର କଳ୍ପବୃକ୍ଷ ନେବାପାଇଁ ଏତେ ଆଗ୍ରହ, ତାହାହେଲେ ଏଠାରେ ଆହୁରି ଅନେକ କଳ୍ପବୃକ୍ଷ ଅଛି, ସେଗୁଡ଼ିକ ମଧ୍ୟରୁ କୌଣସି ଗୋଟିକୁ ନେଇ ଚାଲ । କିନ୍ତୁ ଏ ବୃକ୍ଷଟି ହେଉଛି ଶଚୀ ଦେବୀଙ୍କର ବିଶେଷ ଆଦରର କଳ୍ପବୃକ୍ଷ ।"

ସତ୍ୟଭାମା ଆଗ୍ରହ ପ୍ରକାଶ କରି କହିଲେ—"ମୁଁ ଏହି ବୃକ୍ଷକୁ ହିଁ ନେବି, ଆପଣ ତାହାର ବ୍ୟବସ୍ଥା କରନ୍ତୁ ।" ଏହାକହି ସେ ନିଜର କୋମଳ ଭୂଜକୁ କମଳାକାନ୍ତଙ୍କ କମନୀୟ କଣ୍ଠ ଦେଶରେ ସ୍ଥାପନ କଲେ ।

ସୂତ କହିଲେ—"ମୁନିଗଣ ! ସ୍ବର୍ଣ୍ଣର, ସ୍ପର୍ଣ୍ଣରୌପ୍ୟର, ମଣିମାଣିକ୍ୟର ଓ ମୋତିର କୌଣସି ମାଳା ମଧ୍ୟ ମୋହକ ଓ ସ୍ଥିର ହୁଏ ନାହିଁ, ଯେତେ କାନ୍ତାର ଭୁଜଲତା ରୂପକ ମାଳା ସ୍ଥିର ହୁଏ । କଣ୍ଠ ଦେଶରେ ତାହା ପଡ଼ିବାକ୍ଷଣି ଏତେ ସ୍ଥିର ହୋଇଯାଏ ଯେ, ମନୁଷ୍ୟ ଯଦି ଉଠି ପଳାଇବାକୁ ଚେଷ୍ଟା କରେ, ତେବେ ପାରେ ନାହିଁ । ଭଗବାନ ତ ନରଲୀଳା କରୁଥିଲେ, ତାଙ୍କର ତାହାପ୍ରତି ମୋହ ବା ମମତା ନଥିଲା । ସେ ତ କ୍ରୀଡ଼ା କରିବା ପାଇଁ ଏପରି କୌତୁକ କରନ୍ତି । ନିଜ ପ୍ରିୟାର ଏପରି ଆଗ୍ରହ ଦେଖି ସେ ସେହି କଳ୍ପବୃକ୍ଷକୁ ଉପାଡ଼ି ଦେଲେ । ସେହି ବୃକ୍ଷର ରକ୍ଷକ ମନା କରୁଥିଲେ ଓ ଯାଚି କରୁଥିଲେ । ତାହା ଶଚୀଦେବୀ ଓ ଇନ୍ଦ୍ରଙ୍କର ବୋଲି କହୁଥିଲେ । କିନ୍ତୁ ଭଗବାନ ସେ କଥା ସବୁ ନ ଶୁଣିଲାଭଳି ତାହା ଉପାଡ଼ି ଗରୁଡ଼ ଉପରେ ରଖି ନିଜେ ଗରୁଡ଼ ଉପରେ ଯାଇ ବସି ପଡ଼ିଲେ । ସତ୍ୟଭାମା ସେଠାରେ ଠିଆ ହୋଇ ସେହି ରକ୍ଷକଙ୍କୁ କହିଲେ—"ଯା, ତୁ ତୋର ମାଲିକାଣୀକୁ କହିଦେବୁ ମର୍ତ୍ତ୍ୟଲୋକରୁ ଗୋଟିଏ ମାନବୀ ସ୍ତ୍ରୀ ଆସିଥିଲା ଯେ, ସେ ତୁମ କଳ୍ପବୃକ୍ଷଟିକୁ ଉପାଡ଼ି ନେଇ ଯାଉଛି । ଯଦି ତାଙ୍କ ଠାରେ ଓ ତାଙ୍କ ସ୍ୱାମୀଙ୍କ ଠାରେ ସେ ଶକ୍ତି ଅଛି, ପୌରୁଷ ଅଛି, ତାହାହେଲେ ଆସି ଆମଠାରୁ ତାହା ଛଡ଼ାଇ ନିଅନ୍ତୁ । ଆମେ ଏହିଠାରେ ଅପେକ୍ଷା କରିବୁ ।

ସେବକ ଯାଇ ସମସ୍ତ କଥାକୁ ଆହୁ ଟିକିଏ ଅତିରଞ୍ଜିତ କରାଇ ତହିଁରେ କିଛି ଯୋଡ଼ଯାଡ଼ି ଇନ୍ଦ୍ରାଣୀ ଓ ଇନ୍ଦ୍ରଙ୍କୁ କହିଲା । ଏହା ଶୁଣି ଇନ୍ଦ୍ର ଇନ୍ଦ୍ରାଣୀଙ୍କୁ କହିଲେ— "ତୁମେ ଶୁଣୁଚ ! ଭଲର ପରିଣାମ ମନ୍ଦ ହେବାକୁ ଯାଉଛି । ଆମେ କୃଷ୍ଣଚନ୍ଦ୍ରଙ୍କୁ କେତେ ଆଦର ସତ୍କାର କଲେ, ତାହାର ପରିଣାମ ଏଇଆ ହେଲା ଯେ, ସେ ଆମ କଳ୍ପବୃକ୍ଷକୁ ଉପାଡ଼ି ନେଇ ଯାଉଛନ୍ତି ? ଆମେ ତାଙ୍କୁ କେତେ ଆଦର ସତ୍କାର ନ କଲେ ?"

ଶଚୀଦେବୀ ମୁହଁ ଅଣ୍ଡାକରି କହିଲେ—"ଏ ସବୁ ତାଙ୍କ ସ୍ତ୍ରୀଙ୍କର କର୍ତ୍ତୁତି । ତାହାର ପ୍ରଚେଷ୍ଟାରେ ହିଁ ଏହା ହେବାକୁ ଯାଉଛି ।"

ଇନ୍ଦ୍ର କହିଲେ—"ହଁ, ସେ ଏଠାରୁ ଯିବା ସମୟରେ ତାଙ୍କ ମୁଖ ଲାଲ ଦିଶୁଥିଲା । ତୁମେ ତାଙ୍କୁ କ'ଣ କିଛି କହିଥିଲ କି ?"

ଏହା ଶୁଣି ଇନ୍ଦ୍ରାଣୀ କହିଲେ—"ମୁଁ ଆଉ କ'ଣ କହିଥାନ୍ତି ମହାରାଜ ! ଯାହା ସତ କଥା ତାହା ହିଁ କହିଥିଲି । ତାଙ୍କର ଇଚ୍ଛା ଥିଲା, ମୁଁ କଳ୍ପବୃକ୍ଷର ପୁଷ୍ପରେ ତାଙ୍କୁ ପୂଜା

କରିଥାଆନ୍ତି ! ଆପଣ ଚିନ୍ତା କରନ୍ତୁ ତ ଦେଖି, ସେ ହେଉଛନ୍ତି ମର୍ତ୍ତ୍ୟ ଲୋକର ସ୍ତ୍ରୀ, ମୁଁ କପରି ତାଙ୍କୁ ଦେବୋଦ୍ୟାନର ଦିବ୍ୟ ପୁଷ୍ପ ଉପହାର ଦେଇ ପାରିଥାଆନ୍ତି ? ଏଥିଯୋଗୁଁ ସେ ମୁହଁ ଫୁଲାଇ କୁପିତ ହୋଇ ଏଠାରୁ ମାରକତରେ ଚାଲିଗଲା । ମୁଁ ମଧ୍ୟ ତାଙ୍କୁ କହି ଦେଇଛି—"ଯା, ତୁ ମୋର କ'ଣ କରିବୁ କର ।" ମୁଁ ଜାଣି ପାରୁଛି ସେ ଏହି କଥା ତା ପତି ଆଗରେ କହି ଏହି କୃତ୍ୟ କରିବାକୁ ଯାଉଛନ୍ତି ।"

ଇନ୍ଦ୍ରଦେବ ଏଥିରେ ଚମକିତ ଓ ବିଚଳିତ ହୋଇ କହିଲେ—"ତାହାହେଲେ ବର୍ତ୍ତମାନ ମୁଁ କ'ଣ କରିବି ?"

ମୁଣ୍ଡରେ ହାତପିଟି ଶଚୀଦେବୀ କହିଲେ—"ହାୟରେ ବିଧାତା ! ମୋର ଭାଗ୍ୟରେ କ'ଣ ଏଇଆ ଥିଲା ? ମୋତେ ଏପରି ପତିଟିଏ ମିଳିଛି ଯେ, ସେ ପୁଣି ନପୁଂସକଟିଏ । ମୋତେ ସେ ରକ୍ଷା କରିବା ତ ଦୂରର କଥା, ମୋର ଆବଶ୍ୟକୀୟ ବସ୍ତୁ ଗୁଡିକୁ ମଧ୍ୟ ରକ୍ଷା କରିବାକୁ ସେ ଅସମର୍ଥ ।

ପତି ସ୍ତ୍ରୀର ସମସ୍ତ ପ୍ରକାର ଭରଣପୋଷଣ ଦାୟିତ୍ୱ ବହନ କରନ୍ତି । ଏଥିପାଇଁ ତାଙ୍କୁ ଭର୍ତ୍ତା ଓ ପତି ସଂଜ୍ଞା ଦିଆଯାଇଛି । ଏପରି ପତି ଅଛନ୍ତି, ଯେଉଁମାନେ କି ସ୍ତ୍ରୀମାନଙ୍କର ଅସମ୍ଭବ କଥାକୁ ସମ୍ଭବ କରିବା ପାଇଁ ଚାହାନ୍ତି । ସ୍ୱର୍ଗର ବସ୍ତୁକୁ ପୃଥିବୀକୁ ନେଇ ଦିବାକୁ ଚାହାନ୍ତି । ମୋର ଏପରି ଗୋଟିଏ ପତି ଯେ, ସେ ମୋ ମୁଣ୍ଡ ଉପରେ ମର୍ତ୍ତ୍ୟଲୋକର ଗୋଟିଏ ସ୍ତ୍ରୀ ବସି ମୋତେ ଅପମାନିତ କରୁଥିବା ବେଳେ ସେ ଲଜ୍ଜକୁଳ ଲଜାଇଲା ସବୁ ସହି ଯାଉଛି । ତୁମର ଏ ଦେବସେନା ତାହାହେଲେ କାହିଁକି ଅଛନ୍ତି ? ଏମାନେ କଣ କେବଳ ଦେବସେନା ବୋଲି ଦେଖେଇ ହେବା ପାଇଁ ଏଠାରେ ଅଛନ୍ତି ? ଯଦି ତୁମର ସାମର୍ଥ୍ୟ ନାହିଁ, ତାହାହେଲେ ତୁମେ ମୋର ଚୂଡ଼ିତକ ପିନ୍ଧି ଘର କୋଣରେ ଯାଇ ବସ । ଆଉ ଦେଖ, ମୁଁ ଯାଇ କପରି କଳ୍ପବୃକ୍ଷକୁ ରକ୍ଷା କରୁଛି । ମୋ ପ୍ରାଣ ଥିବା ପର୍ଯ୍ୟନ୍ତ ମୁଁ ତାହାକୁ ଏଠାରୁ ନେବାକୁ ଦେବି ନାହିଁ ।"

ସୂତ କହିଲେ—"ମୁନିଗଣ ! ଅମୋଘ ଅସ୍ତ୍ରଣ ଯଶ ଓ ଅପମାନ ପାଗରେ ଆଉ ବାଣ ଯେତେ ବ୍ୟଗ୍ର ନହୁଏ, ସ୍ତ୍ରୀର ବାକ୍ୟ ବାଣରେ ବ୍ୟଥିତ ହେଉଥିବା ପୁରୁଷ ଉତ୍ତେଜିତ ନ ହୋଇ ଶାନ୍ତ ଭାବରେ ବସି ରହିବା ତା ପକ୍ଷେ ସମ୍ଭବ ହୁଏ ନାହିଁ । ସେ ଅତି ଉତ୍ତେଜିତ ହୋଇଉଠେ । ନିଜ ପତ୍ନୀଙ୍କର ବାକ୍ୟବାଣରେ ଇନ୍ଦ୍ରଙ୍କର କ୍ରୋଧ ଜାତ ହେଲା, ସେ ଚିନ୍ତା କଲେ—"ଶ୍ରୀକୃଷ୍ଣ ଦ୍ୱାରକାର ରାଜା ହୋଇଥାଇପାରନ୍ତି, ଏହା ବୋଲି ସେ କଣ ବଳପୂର୍ବକ ଆମ କଳ୍ପବୃକ୍ଷକୁ ଏଠାରୁ ନେଇ ଚାଲିଯିବେ ? ତେବେ ଠିକ୍ ଅଛି, ମୁଁ ବି ତାଙ୍କୁ ଦେଖିନେବି ।" ଏହା ଚିନ୍ତା କରି ସେ ସେନାପତି ସ୍କନ୍ଦଙ୍କୁ ଡକାଇ ସେନା

ଏକତ୍ରିତ ହୋଇ ଶ୍ରୀକୃଷ୍ଣଙ୍କ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଗଲେ । ଏହାପରେ ଯେପରି ଭାବରେ ଯୁଦ୍ଧ ଚାଲିଲା, ତାହା ମୁଁ ପରବର୍ତ୍ତୀ ପ୍ରସଙ୍ଗରେ ବର୍ଣ୍ଣନା କରିବି ।

## ଛପ୍ପୟ

ଦେବେ କୁଣ୍ଡଳ ଅଦିତି ସ୍ୱର୍ଗ ମହିଁ ଗଲେ ମୁରାରୀ ।
ଯାଇ ଶ୍ୟାମକୋ ଦରଶ ମାତୁ ମନ ଭଇ ସୁଖାରୀ ।।
ସତଭାମା କୁଁ ପୂଜି ଶଚୀନେ ଆଦର କୀନ୍ହୋ ।
କିନ୍ତୁ ମାନବୀ ମାନି ଦେବଦ୍ରୁମ ସୁମନ ନ ଦୀନ୍ହୋ ।।
ସମୁଝି ଘୋର ଅପମାନ ନିଜ, ଲୈ ହରି ସଙ୍ଗ ଉପବନ ଗଇଂ ।
କଲ୍ପବୃକ୍ଷ ଲଖି ଲୈନ ହିତ, ପ୍ରେମ ସହିତ ତହିଁ ଅଡ଼ ଗଇଂ ।।



# ଭଗବାନଙ୍କ ସହିତ ଇନ୍ଦ୍ରଙ୍କର ଯୁଦ୍ଧ

ଯଯାଚ ଆନମ୍ୟ କିରୀଟକୋଟିଭିଃ—
ପାଦୌ ସ୍ପୃଶନ୍ନଚ୍ୟୁତମର୍ଥସାଧନମ୍ ।
ସିଦ୍ଧାର୍ଥ ଏତେନ ବିଗୃହ୍ୟତେ ମହା—
ନହୋ ସୁରାଣାଂ ଚ ତମୋ ଧିଗାଢ଼୍ୟତାମ୍ ॥ *

(ଶ୍ରୀ: ଭା: ୧୦ସ୍କ, ୫୯ ଅ: ୪୧ ଶ୍ଳୋକ)

## ଛପ୍ପୟ

ବୃକ୍ଷ ଉଖାରେ ଶ୍ୟାମ ଗରୁଡ଼କୀ ପୀଠି ଧରେ ଜବ ।
ରକ୍ଷକ ସେବକ ଗୟେ ଇନ୍ଦ୍ରତେଂ ବୃତ୍ତ କହ୍ୟୋ ସବ ॥
ଶଚୀ ଭଡ଼କେ ଇନ୍ଦ୍ର ସେନ ସଜି ଲଡ଼ବେ ଆୟେ ।
ରବି, ଶଶି, ଯମ ଅଗ୍ନି ବରୁନ ଦେବ ସୁର ସକଲ ସିଧାୟେ ॥
ଅସ୍ତ୍ରହୀନ ସୁରପତି ଭୟେ, ଭଗେ ଭୂମି ରନ ଛୋଡ଼କେଂ ।
ସତଭାମା କଟୁ ବଚନ ବହୁ, କହେ ହଁସୀଂ ମୁଁହ ମୋରକେଂ ॥

ଯେଉଁ ବ୍ୟକ୍ତି ଭଗବାନଙ୍କର ମହିମାକୁ ଭୁଲି ନିଜକୁ ସର୍ବଜ୍ଞ ମନେକରି ଭଗବାନଙ୍କ ସହିତ ବିବାଦ କରେ ଓ ତାଙ୍କୁ ତିରସ୍କାର କରିବାକୁ ବୃଥା ଚେଷ୍ଟା କରେ, ଶେଷରେ ତାକୁ ହିଁ ପରାଜିତ ହେବାକୁ ପଡ଼େ । କାରଣ ଭଗବାନ ତ ଅଚ୍ୟୁତ ଓ ଅପରାଜିତ ଅଟନ୍ତି । ବିଜୟ ତ ତାଙ୍କର କିଙ୍କରୀ । ସେ ତ ସର୍ବଦା ବିଜୟ ଯୁକ୍ତ ।

---

* ବାସବ ଆଦି ଦିଗପାଳ । ଆବୋରି ଆକାଶ ମଣ୍ଡଳ ॥
କୃଷ୍ଣର ରୂଳେ କଲେ ରଣ । ଜ୍ଞାନ ନଜାଣି ଦେବଗଣ ॥
ଯାହାର ପାଦପଦ୍ମ ନିତ । ମୁକୁଟ ଶିରେ ସେ ନମନ୍ତ ॥
ସେ ହରି ମହିମା ନ ଜାଣି । ମନୁଷ୍ୟ ଭ୍ରାନ୍ତେ ତାଙ୍କୁ ମଣି ॥
ଦେବଙ୍କ ଗର୍ବ ହେଲେ ନାହିଁ । ଦ୍ୱାରକା ତଳେ ଦ୍ରୁଷ୍ଟଗଣି ॥

ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ : ୬୪ଅ.

ତାଙ୍କ ନିକଟକୁ ପରାଜୟ କଦାପି ପ୍ରବେଶ କରିପାରେ ନାହିଁ । ଜୀବ ଭଗବାନଙ୍କ ନିକଟରେ ହାରିଯାଏ; କିନ୍ତୁ ତାର ଏଥିରେ ଏପରି ପ୍ରକାର ବିଜୟ ହୋଇଥାଏ । କାରଣ ସେ କୌଣସି କାରଣରୁ କୌଣସି ପ୍ରକାରେ ତାଙ୍କ ସମ୍ମୁଖରେ ପହଞ୍ଚି ପାରିଥାଏ । ଏହା ମଧ୍ୟ ପ୍ରାଣୀମାନଙ୍କର ସର୍ବୋତ୍କୃଷ୍ଟ ବିଜୟ ଓ ପରମ ପୁରୁଷାର୍ଥ । ଏହା ହିଁ ତାହାର ପରାକାଷ୍ଠା, ଏହାହିଁ ତାହାର ପରାଗତି । ତେଣୁ ନିଜର ସମସ୍ତ ଚେଷ୍ଟାକୁ ସଦୁପଯୋଗ କରିବାକୁ ଯଦି କେହି ଚାହୁଁଥାଏ, ତାହା ହେଲେ ଭଗବାନଙ୍କ ଠାରେ ହିଁ କରିବା ଉଚିତ୍ ।

ସୂତ କହିଲେ—"ମୁନିଗଣ ! ଶଚୀଦେବୀ ଉତ୍ତେଜିତ କରିବା ଓ ଉତ୍ସାହିତ କରିବା ଦ୍ୱାରା ଦେବରାଜ ଇନ୍ଦ୍ର ସୈନ୍ୟ ଏକତ୍ରିତ କରି କଳ୍ପବୃକ୍ଷକୁ ରକ୍ଷା କରିବା ପାଇଁ ଉଦ୍ୟତ ହୋଇଗଲେ । ଭଗବାନଙ୍କ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇ ସମସ୍ତ ଦେବଗଣ ପରିଘ, ନିସ୍ତ୍ରିଂଶ, ଗଦା, ଶୂଳ, ଧନୁ, ବାଣ, ଶତଘ୍ନୀ ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ନେଇ ଯୁଦ୍ଧ କରିବାକୁ ଗଲେ । ଦେବେନ୍ଦ୍ର ନିଜେ ମଧ୍ୟ ଐରାବତ ହାତୀ ଉପରେ ଚଢ଼ି ଯୁଦ୍ଧ କରିବାକୁ ଉଦ୍ୟତ ହେଲେ । ସେ ଐରାବତ ପିଠି ଉପରେ ବସି ନିଜର ଯୁଦ୍ଧୋପଯୋଗୀ ଶଙ୍ଖ ବଜାଇଲେ ! ତାହାର ଶବ୍ଦ ଦଶଦିଗ ପ୍ରକମ୍ପିତ କଲା । ଦେବତାମାନଙ୍କ ମନରେ ଅତ୍ୟନ୍ତ ଉତ୍ସାହ ଜାତ ହେଲା । ସମସ୍ତେ ଭଗବାନଙ୍କ ସମ୍ମୁଖରେ ପହଞ୍ଚି ତାଙ୍କୁ ଚତୁର୍ଦ୍ଦିଗରୁ ଘେରିଗଲେ ଓ ଏକ ସଙ୍ଗେ ଭଗବାନଙ୍କ ଉପରକୁ ବାଣ ତଥା ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ନିକ୍ଷେପ କଲେ । ଏଥିରେ ଭଗବାନ କିଛିଏ ହେଲେ ବିଚଳିତ ହେଲେ ନାହିଁ । ସେ ଖେଳଳା ଭଳି ସେହି ସମସ୍ତ ଅସ୍ତ୍ର ଶସ୍ତ୍ରକୁ କାଟି ପକାଇଦେଲେ ।

ବରୁଣ ତାଙ୍କ ନାଗ ପାଶରେ ଭଗବାନଙ୍କୁ ବାନ୍ଧି ପକାଇବାକୁ ଚାହିଲେ । ସଙ୍ଗେ ସଙ୍ଗେ ଗରୁଡ଼ ତାଙ୍କ ଥଣ୍ଟରେ ତାହା ଖଣ୍ଡ ଖଣ୍ଡ କରି କାଟି ପକାଇଲେ । ଯମରାଜ ନିଜର ଦଣ୍ଡ ଗ୍ରହିଲେ । ଭଗବାନ ତାଙ୍କ କୌମୋଦକୀ ଗଦାରେ ତାହା ଖଣ୍ଡ ଖଣ୍ଡ କରିଦେଲେ । କୁବେର ଯେଉଁ ଶିବିକାରେ ବସି ଯୁଦ୍ଧ କରିବାକୁ ଆସିଥିଲେ, ସେହି ଶିବିକାକୁ ସୁଦର୍ଶନ ଚକ୍ର ଖଣ୍ଡ ଖଣ୍ଡ କରି ଚୂନା କରିଦେଲା । ସୂର୍ଯ୍ୟ ଯେତେବେଳେ ପ୍ରବଳ ତେଜରେ ପ୍ରଭୁଙ୍କ ସମ୍ମୁଖରେ ଯୁଦ୍ଧ କରିବାକୁ ଆସିଲେ ସେତେବେଳେ ଭଗବାନ ନିଜ ନେତ୍ରର ତେଜରେ ତାଙ୍କ ତେଜସ୍ୱୀନ କରି ଅନ୍ଧ କରିଦେଲେ । ଏହିପରି ଖୁବରେ ମରୁଦ୍‌ଗଣ, ସାଧ୍ୟଗଣ, ରୁଦ୍ରଗଣ ଓ ଅନ୍ୟାନ୍ୟ ଦେବଗଣ ସମସ୍ତଙ୍କୁ ଭଗବାନ କାବୁ କରିଦେଲେ । ସମସ୍ତେ ପରାଜିତ ହୋଇ ଯୁଦ୍ଧରୁ ଉପରତ ହେଲେ । ଏହା ଦେଖି ଇନ୍ଦ୍ର ଐରାବତ ଉପରେ ବସି ଯୁଦ୍ଧ କରିବାକୁ ଆସିଲେ । ସେ ଗ୍ରହସ୍ତ ବାଣ ନିକ୍ଷେପ କରି ଗରୁଡ଼ଙ୍କ ସହିତ ଶ୍ରୀ କୃଷ୍ଣଙ୍କୁ ଆଚ୍ଛାଦିତ କରିଦେଲେ । ଭଗବାନ ଏକାଥରେ ସମସ୍ତ ବାଣ ବ୍ୟର୍ଥ କରିଦେଲେ । ଏଣେ ଗରୁଡ଼ ଉଡ଼ିଉଡ଼ି ଐରାବତକୁ ମାରିବାକୁ ଲାଗିଲେ । ଐରାବତ ରଡ଼ିକରି ସେଠାରୁ ପଳାଇଗଲା । ଯେପରି ପିତା ପିଲାଙ୍କ ସଙ୍ଗରେ ଖେଳ କରନ୍ତି, ସେହିପରି

ଭଗବାନ କେତୁତ ଘମଣ୍ଡ ପର୍ଯ୍ୟନ୍ତ ଅନେକ ଅସ୍ତ୍ର ଶସ୍ତ୍ର ଦ୍ୱାରା ଦେବେନ୍ଦ୍ରଙ୍କ ସହିତ ଯୁଦ୍ଧ କଲେ । ଇନ୍ଦ୍ର ଯେତେ ପ୍ରକାର ଅସ୍ତ୍ର ନିକ୍ଷେପ କଲେ, ଭଗବାନ ସେ ସମସ୍ତ ବ୍ୟର୍ଥ କରିଦେଲେ । ଯେତେବେଳେ ତାଙ୍କର ସମସ୍ତ ଅସ୍ତ୍ର ଶସ୍ତ୍ର ବିଫଳ ହୋଇଗଲା, ସେତେବେଳେ ସେ ନିଜର ଅମୋଘ ଅସ୍ତ୍ର ବଜ୍ରକୁ ଶ୍ୟାମସୁନ୍ଦରଙ୍କ ଉପରକୁ ଫିଙ୍ଗିବାକୁ ଉଠାଇଲେ । ଭଗବାନ୍ ମଧ୍ୟ ତାହାର ପ୍ରତିରୋଧ ପାଇଁ ସୁଦର୍ଶନ ଚକ୍ର ଉଠାଇଲେ । ଉଭୟ ଅସ୍ତ୍ର ଅମୋଘ ଥିଲା । ଏହି ଯୁଦ୍ଧରେ ଦଶଦିଗରେ ହାହାକାର ଖେଳିଗଲା । ସମସ୍ତେ ଭାବିଲେ ଏବେ ଅକାଳରେ ପ୍ରଳୟ ହୋଇଯିବ ।

ଇନ୍ଦ୍ର କ୍ରୋଧରେ ଜର୍ଜ୍ଜରିତ ହୋଇ ନିଜର ଅମୋଘ ଅସ୍ତ୍ର ବଜ୍ରକୁ ଯିନା ଭଗବାନଙ୍କ ଉପରେ ନିକ୍ଷେପ କଲେ; କିନ୍ତୁ ଭଗବାନ ନିଜର ସୁଦର୍ଶନ ଚକ୍ରକୁ ଇନ୍ଦ୍ର ଉପରକୁ ନିକ୍ଷେପ କରି ନ ଥିଲେ । ଇନ୍ଦ୍ରଙ୍କୁ ମାରିଦେବାର ଭଗବାନଙ୍କର ଅଭିପ୍ରାୟ ନ ଥିଲା । ସେ ଲୀଳାରେହିଁ ଇନ୍ଦ୍ର ଛାଡ଼ିଥିବା ବଜ୍ରକୁ ନିଜ ହାତରେ ଧରିନେଲେ । ଏବେ ଇନ୍ଦ୍ର କିଂକର୍ତ୍ତବ୍ୟ ବିମୂଢ଼ ହୋଇଗଲେ । ତାଙ୍କର ବାହାନ ଐରାବତ ଗରୁଡ଼ଙ୍କ ଆକ୍ରମଣରେ କ୍ଷତ ବିକ୍ଷତ ହୋଇଗଲା । ନିଜ ପାଖରେ ଆଉ ଗୋଟିଏ ହେଲେ ଅସ୍ତ୍ର ରହିଲା ନାହିଁ । ସେ ଅସ୍ତ୍ରହୀନ ହୋଇ ପ୍ରାଣ ଭୟରେ ସମର ଭୂମିରୁ ପଳାଇଯିବାକୁ ବସିଲେ । ତାଙ୍କୁ ପଳାଇ ଯିବାର ଦେଖି ସତ୍ୟଭାମା ବ୍ୟଙ୍ଗ ସ୍ୱରରେ କହିଲେ—"ଶଚୀପତି ଦେବେନ୍ଦ୍ର ! ଏଥର ଜଣାଗଲା ତୁମର କେତେ ବଳ ପରାକ୍ରମ । ସମର କ୍ଷେତ୍ରରୁ ଭୟଭୀତ ହୋଇ ପଳାଇବାରେ ତୁମକୁ ଲଜ୍ଜା ବୋଧ ହେଉନାହିଁ ? ଏବେ ତୁମେ ନିଜର ପତ୍ନୀ ଶଚୀଦେବୀଙ୍କୁ ମୁଖ ଦେଖାଇ ପାରିବ କି ? ସେ ଯେତେବେଳେ ତୁମକୁ କଳ୍ପ ବୃକ୍ଷର ପୁଷ୍ପ ମାଗିବେ ସେତେବେଳେ କ'ଣ ଦେଇ ତୁମେ ତାଙ୍କୁ ଶାନ୍ତ କରିବ ? ତୁମ ରାଣୀ ତ ମୋତେ ସାଧାରଣ ମାନବୀ ବୋଲି ଭାବି ଗୋଟିଏ ଫୁଲ ବି ମୋତେ ଦେବାକୁ ଇଚ୍ଛା କରିନଥିଲେ । ଏବେ ଆମେ ସ୍ୱର୍ଗରୁ ସମସ୍ତ କଳ୍ପବୃକ୍ଷ ଉପାଡ଼ି ନେଇ ଯାଉଛୁ । ଛି, ଛି, ତୁମେ ନିଜ ସ୍ତ୍ରୀ ଭୁକ୍ତିରେ ଗୋଟିଏ ହେଲେ ବୃକ୍ଷକୁ ବି ରକ୍ଷା କରି ପାରୁ ନାହିଁ । ଏବେ ସମର ଛାଡ଼ି ପଳାଇ ଯାଅନା । ଆମେ କଳ୍ପବୃକ୍ଷ ପାଇଁ କାଙ୍ଗାଳି ନୋହୁ । ଆମର ସେଥିରୁ କ'ଣ ହେବ ! ନେଇଯାଅ ତୁମ କଳ୍ପ ବୃକ୍ଷ । ମୋତେ ତ ଏହା ଜଣାଥିଲା ଯେ, ଏହିପରି ୩୬୦ କଳ୍ପବୃକ୍ଷ ଆମ ନଗର ଉପବନରେ ଲଗି ପାରିବ । ତୁମ ଶଚୀରାଣୀ ମୋତେ ଅପମାନିତ କଲା । ସ୍ତ୍ରୀ ଲୋକଙ୍କ ହୃଦୟରେ ଅପମାନ ଅତି ଅସହ୍ୟ ହୋଇ ପଡେ । ବିଶେଷ କରି ଯାହାର ପତି ସର୍ବ ସମର୍ଥ ଓ ତାଙ୍କୁ ପ୍ରାଣରୁ ଅଧିକ ପ୍ରେମ କରନ୍ତି, ତାଙ୍କ ବିଷୟରେ ଅଧିକ କହିବା ନିଷ୍ପ୍ରୟୋଜନ । ଏବେ ମୁଁ ତୁମର ବଳ, ପୌରୁଷ ସବୁ ପରୀକ୍ଷା କରିନେଲି । ଏ କଳ୍ପବୃକ୍ଷକୁ ତୁମେ ଏବେ ନେଇଯାଅ । ସମସ୍ତ ଦେବତା ପୂର୍ବଭଳି ସୁସ୍ଥ ହୋଇ ଯାଆନ୍ତୁ ।"

ସତ୍ୟଭାମାଙ୍କର ଏପ୍ରକାର ବ୍ୟଙ୍ଗ ବଚନ ଶୁଣି ଦେବେନ୍ଦ୍ର ସଙ୍ଗେ ସଙ୍ଗେ ଲେଉଟି ପଡ଼ିଲେ । ତାଙ୍କର ଚେତନା ଫେରି ଆସିଲା । ସେ ବଡ଼ପଣ ଭରା ଅଭିମାନରେ କହିଲେ—"ଆଗୋ ଚଣ୍ଡୀ ! ତୁ ମୋତେ କାହିଁକି ଏତେ ଥିଙ୍ଗାମି କରି କହୁଛୁ ? ମୋ ପରାଜୟରେ ମୋ ମନରେ କୌଣସି ଦୁଃଖ ନାହିଁ କିମ୍ବା ମୁଁ ଲଜ୍ଜା ବୋଧ କରୁ ନାହିଁ । ଯାହାଙ୍କ ସଂକଳ୍ପ ମାତ୍ରେ ବିଶ୍ୱର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ହୁଏ, ତାଙ୍କଠାରୁ ପରାଜିତ ହେବାରେ ଲଜ୍ଜା କରିବାର କୌଣସି କାରଣ ନାହିଁ । ଯେତେ କେହି ନିଜ ହାତରେ ନିଜର କେଶକୁ ଉପାଡ଼ିଦିଏ ବା ଛିଣ୍ଡାଇଦିଏ, ଏଥିରେ କେଶକୁ କେବେ ଲଜ୍ଜା ହୁଏ କି ? ଏହି ବିଶ୍ୱରୂପ ଶ୍ରୀକୃଷ୍ଣଠାରେ ହିଁ ସମସ୍ତ ବିଶ୍ୱ ବିଦ୍ୟମାନ ! ମୋ ଭଳି ଅସଂଖ୍ୟ ଇନ୍ଦ୍ର ଏହାଙ୍କ ଶ୍ୱାସପ୍ରଶ୍ୱାସରୁ ବାହାରନ୍ତି ଓ ପୁନଶ୍ଚ ବିଲୀନ ହୁଅନ୍ତି ।"

ଦେବେନ୍ଦ୍ରଙ୍କର ଏପରି ଯୁକ୍ତି ଶୁଣି ଭଗବାନ ହସି ହସି କହିଲେ—"ଦେବରାଜ ! ଆପଣ ଏ କି କଥା ସବୁ କହୁଛନ୍ତି ? ଆପଣ ହେଉଛନ୍ତି ତ୍ରିଭୁବନାଧୀଶ, ଦେବଗଣଙ୍କର ରାଜା, ସ୍ୱର୍ଗବାସୀ, ଆମେ ମର୍ତ୍ତ୍ୟଲୋକର ପ୍ରାଣୀ ମର୍ତ୍ତ୍ୟଲୋକରେ ଆମେ ବାସ କରୁ । ଆପଣଙ୍କ ସହିତ ଆମେ କେବେହେଲେ ତୁଳନୀୟ ହୋଇ ପାରୁଁ ? ବାସ୍ତବରେ ସ୍ତ୍ରୀଙ୍କ ଆଗ୍ରହରେ ମୁଁ ଏପରି ଅଶିଷ୍ଟ ଆଚରଣ କଲି । ଆପଣଙ୍କୁ ନ ପଚାରି ଆପଣଙ୍କ ଉଦ୍ୟାନର କଳ୍ପବୃକ୍ଷ ଉପାଡ଼ିଦେଲି । ଆପଣ ମୋର ଏହି ଅପରାଧକୁ କ୍ଷମା କରିବେ । ଆପଣଙ୍କର ସେହି ପାରିଜାତ ବୃକ୍ଷକୁ ଆପଣ ଖୁସିରେ ଏବେ ନେଇ ଯାଆନ୍ତୁ । ଆପଣଙ୍କର ଏହି ଅମୋଘ ଅସ୍ତ୍ର ବଜ୍ରକୁ ମଧ୍ୟ ନିଅନ୍ତୁ । ସ୍ତ୍ରୀ ଲୋକମାନଙ୍କର ଅଳି ଅତ୍ୟନ୍ତ ଖରାପ । ସେହି ହଠର ବଶୀଭୂତ ହୋଇ ମୁଁ ଏ ପ୍ରକାର ଦୁଃସାହସ କରି ପକାଇଲି ।"

ଭଗବାନଙ୍କର ଏପରି କଥା ଶୁଣି ଦେବେନ୍ଦ୍ର ଲଜ୍ଜିତ ହୋଇ କହିଲେ—"ଭଗବାନ ! ଆପଣ ଆଉ କାହିଁକି ମୋତେ ଭ୍ରମରେ ପକାଇବାକୁ ଚାହୁଁଛନ୍ତି ? ଆପଣ ତ ସ୍ୱୟଂ ବିଶ୍ୱମ୍ଭର । ଚରାଚର ବିଶ୍ୱର ସ୍ୱାମୀ ବସୁଧାର ପାପ ଭାର ଲାଘବ କରିବା ପାଇଁ ଆପଣ ମନୁଷ୍ୟ ରୂପରେ ଅବନୀରେ ଅବତୀର୍ଣ୍ଣ ହୋଇଛନ୍ତି । ଏହା ସତ୍ୟ ଯେ, ମୁଁ ଆପଣଙ୍କ ପାଦଧୂଳି ସହିତ ବି ସମାନ ହେବି ନାହିଁ । ମୁଁ ଅତି ସାନ, ଆପଣ ମହାନ୍ । ମୁଁ ଅଂଶ, ଆପଣ ଅଂଶୀ । ମୁଁ ଦାସ, ଆପଣ ପ୍ରଭୁ । ଆପଣ ଯିଏ ହୁଅନ୍ତୁ ନା କାହିଁକି ମୋର ପୂଜନୀୟ, ସ୍ୱାମୀ । ଆପଣଙ୍କ ପାଦପଦ୍ମରେ ମୁଁ ପ୍ରଣାମ କରୁଛି । ଆପଣ କେବଳ ମୋତେ ଶିକ୍ଷା ଦେବାପାଇଁ ଏହି ଲୀଳା ରଚନା କରିଛନ୍ତି । ତା ନ ହୋଇଥିଲେ ଆପଣଙ୍କୁ ସାମାନ୍ୟ ପାରିଜାତର କି ଆବଶ୍ୟକତା ପଡ଼ିଥାଆନ୍ତା ? ଆପ୍ତକାମଙ୍କୁ କୌଣସି ବସ୍ତୁରେ କେବେ ସ୍ପୃହା ବା ଆସକ୍ତି ଜନ୍ମେ କି ?"

ଭଗବାନ କହିଲେ—"ଏବେ ତୁମେ ତୁମ କଳ୍ପବୃକ୍ଷ ନେଇ ଯାଅ ।"

ଦେବେନ୍ଦ୍ର ହାତଯୋଡ଼ି ବିନୀତ ଭାବରେ କହିଲେ—"ପ୍ରଭୋ ! ମୋର ଏତିକି ମିନତି ରକ୍ଷା କରନ୍ତୁ । ଏହି କଳ୍ପବୃକ୍ଷକୁ ଆପଣ ଦ୍ୱାରକାକୁ ନେଇ ଯାଆନ୍ତୁ ଓ ସତ୍ୟଭାମାଙ୍କ ଭବନ ସମ୍ମୁଖରେ ଏହା ଲଗାଇ ଦିଅନ୍ତୁ । ଏହା ଭବନର ଶୋଭା ବଢ଼ାଇବ । ଯେ ପର୍ଯ୍ୟନ୍ତ ଆପଣ ମର୍ତ୍ତ୍ୟଲୋକରେ ନରଲୀଳା କରୁଥିବେ, ସେ ପର୍ଯ୍ୟନ୍ତ ଏହା ସେଠାରେ ରହିବ । ଆପଣଙ୍କ ତିରୋଧାନ ପରେ ଏହା ପୃଥିବୀ ପୃଷ୍ଠରେ ରହି ପାରିବ ନାହିଁ । ଆପେ ଆପେ ଏହା ସ୍ୱର୍ଗକୁ ଚାଲି ଆସିବ ।"

ଇନ୍ଦ୍ରଙ୍କର ଅତି ଆଗ୍ରହ ଦେଖି ଓ ପ୍ରିୟା ସତ୍ୟଭାମାଙ୍କର ମୁହଁ ଶୁଖି ଯାଇଥିବାର ଦେଖି ଭଗବାନ କହିଲେ—"ତେବେ ଠିକ୍ ଅଛି ! ତୁମେ ଯଦି ଚାହୁଁଚ, ତାହାହେଲେ ମୁଁ ଏହାକୁ ନେଇ ଯାଉଛି ।" ଏହା କହି ଭଗବାନ ବିଦାୟ ନେବାକୁ ଚାହାଁଲେ । ଏହି ସମୟରେ ଶଚୀ ଆସି ନିଜର ଦୁର୍ବ୍ୟବହାର ପାଇଁ ସତ୍ୟଭାମାଙ୍କୁ କ୍ଷମା ପ୍ରାର୍ଥନା କଲେ । ଇନ୍ଦ୍ର ଇନ୍ଦ୍ରାଣୀଙ୍କ ସହିତ ଭଗବାନ ଓ ସତ୍ୟଭାମାଙ୍କର ପୂଜା କଲେ । ଏହିପରି ପୂଜିତ ହୋଇ ଭଗବାନ କଳ୍ପବୃକ୍ଷକୁ ଗରୁଡ଼ଙ୍କ ପୃଷ୍ଠରେ ରଖି ବିଜୟ ଶଙ୍ଖ ବଜାଇ ଦ୍ୱାରକା ଅଭିମୁଖେ ଯାତ୍ରା କଲେ ।

ସେହି କଳ୍ପବୃକ୍ଷରେ ଅନେକ ମଧୁଲୋଲୁପ ମକରନ୍ଦପ୍ରେମୀ ମଧୁପ ରହୁଥିଲେ । ସେମାନଙ୍କୁ ସେହି ବୃକ୍ଷରେ ହେଉଥିବା ପୁଷ୍ପର ମଧୁ ଭାରି ଭଲ ଲାଗୁଥିଲା । ତେଣୁ ସେଥିରେ ନିବାସ କରୁଥିବା ଭ୍ରମରବୃନ୍ଦ ମଧ୍ୟ ଗୁଣ୍ ଗୁଣ୍ ଗୁଞ୍ଜନ କରି ଗରୁଡ଼ଙ୍କ ପଛେ ପଛେ ଉଡ଼ି ଚାଲିଲେ । ମନେ ହେଉଥିଲା, ସେମାନେ ସତେ ଯେପରି ଭଗବାନଙ୍କର ଗୁଣ ଗାଇ ଗାଇ ଚାଲିଛନ୍ତି । ଏହିପରି ଅଦିତି ଦେବୀଙ୍କ କୁଣ୍ଡଳ ଦେଇ ଦେବତାମାନଙ୍କୁ ପରାସ୍ତ କରି କଳ୍ପବୃକ୍ଷ ନେଇ ଭଗବାନ ଶ୍ରୀକୃଷ୍ଣ ଦ୍ୱାରକାପୁରୀରେ ଆସି ପହଞ୍ଚିଲେ । ସେଠାରେ ପହଞ୍ଚି ସେ ଶୁଭଲଗ୍ନରେ ସତ୍ୟଭାମାଙ୍କ ମହଲ ସମ୍ମୁଖସ୍ଥ ଉପବନରେ କଳ୍ପବୃକ୍ଷକୁ ଲଗାଇଲେ । ପୁଷ୍ପ ଗନ୍ଧରେ ବାରକୋଶ ପର୍ଯ୍ୟନ୍ତ ଗଗନ ପବନ ସୁଗନ୍ଧିତ ହୋଇ ଉଠିଲା । ତାହା ମୂଳରେ ବୃଦ୍ଧମାନେ ଆସି ବସିବାମାତ୍ରେ ଯୁବକ ହୋଇଗଲେ । ବୃଦ୍ଧାମାନେ ଯୁବତୀ ହୋଇଗଲେ । ଚିନ୍ତାଗ୍ରସ୍ତ ଲୋକମାନେ ବସି ନିଶ୍ଚିନ୍ତ ହୋଇ ଯାଉଥିଲେ । ଲେଖକମାନେ ଆସି ବସି ଉତ୍ତମ ଗ୍ରନ୍ଥମାନ ରଚନା କରି ପାରୁଥିଲେ । ସାର କଥା ହେଲା, ସେହି ବୃକ୍ଷ ସମସ୍ତଙ୍କ ଇଚ୍ଛା ପୂର୍ଣ୍ଣ କରୁଥିଲା । ଏବେ ଦ୍ୱାରକାରେ ଦୁଇଟି କଳ୍ପବୃକ୍ଷ ହୋଇଗଲେ । ଗୋଟିଏ ମାଧବ ବା ଅପ୍ରାକୃତ ଓ ଅନ୍ୟଟି ନନ୍ଦନ ବା ପ୍ରାକୃତ ଏହି ପ୍ରାକୃତ କଳ୍ପବୃକ୍ଷଟି କେବଳ ସଂସାରୀମାନଙ୍କୁ ଭୋଗ ପ୍ରଦାନ କରି ପାରୁଥିଲା । କିନ୍ତୁ ଭକ୍ତବାଞ୍ଛାକଳ୍ପତରୁ ସତ୍ୟାତ୍ମା ବାସୁଦେବ ତ ଭୁକ୍ତି ମୁକ୍ତି ଓ ଭକ୍ତି ଏହି ତିନୋଟି ବସ୍ତୁ ପ୍ରଦାନ କରୁଥିଲେ । ସତ୍ୟଭାମା ଅତ୍ୟନ୍ତ ପ୍ରସନ୍ନ ରହୁଥିଲେ । ସେହି କଳ୍ପବୃକ୍ଷ ଲଗାହେବା ପରେ ତାଙ୍କ ଭବନର ଶୋଭା ଅତ୍ୟଧିକ ବୃଦ୍ଧି ପାଇଲା । ସେ ସମସ୍ତଙ୍କ ଘରେ ନେଇ ପାରିଜାତ ପୁଷ୍ପ

ବରାବର ହାରିଯାଇ ଆସୁଥିଲେ । ଏଥିପାଇଁ ତାହାଙ୍କ ମନରେ ତାଙ୍କପ୍ରତି ଈର୍ଷାଭାବ ରହିଲା ନାହିଁ ।

ସୂତ କହିଲେ—"ମୁନିଗଣ ! ଭଗବାନଙ୍କର ଏହି ମୋହମୟୀ ମାୟା କି ପ୍ରବଳ ? ମନୁଷ୍ୟ ସବୁ ଜାଣିଥିଲେ, ବୁଝିଥିଲେ ମଧ୍ୟ ମାୟାବଶତଃ ଅଜ୍ଞାନ ହୋଇଯାଏ । ସେ ଏହା ଜାଣିଥାଏ ଯେ, ଯେଉଁ କାମଟି କଲେ ମୋର ପତନ ହେବ, ତାହା ମୋର ବର୍ଣ୍ଣ, ଆଶ୍ରମ, ପଦ, ପ୍ରତିଷ୍ଠା, ସଦାଚାର ଓ କୁଳର ବିରୁଦ୍ଧ । ତଥାପି ସେ ତାହା ବାରମ୍ବାର କରୁଥାଏ । ଜାଣି ଶୁଣି ସେ ଏହା କରେ । ପୂର୍ବରୁ ଯଦି କି ସେ ଆଉ ଏପରି କାର୍ଯ୍ୟ କରିବ ନାହିଁ ବୋଲି ପ୍ରତିଜ୍ଞା କରିଥାଏ, ପରେ ତାହା ଭୁଲିଯାଏ । ଅନ୍ୟମାନଙ୍କ କଥା ଛାଡ଼ନ୍ତୁ, ଯାହାଙ୍କୁ ତିନି ଭୁବନର ଅଧୀଶ୍ୱର କୁହାଯାଏ, ସେହି ଇନ୍ଦ୍ର ଯେତେବେଳେ ଐଶ୍ୱର୍ଯ୍ୟ ମଦରେ ମାତି ଯାଆନ୍ତି, ସେତେବେଳେ ତମୋଗୁଣ ବଢ଼ିଯିବା କାରଣରୁ ସେ ଭଗବାନଙ୍କ ମହିମାକୁ ଭୁଲି ଯାଆନ୍ତି । ବ୍ରଜରେ ନିଜର ଯଜ୍ଞ ବନ୍ଦ ହୋଇଯିବାରୁ ସେ ଥରେ ଖୁବ୍ ଉପଦ୍ରବ କରିଥିଲେ । ବ୍ରଜକୁ ନାଶ କରି ଦେବାକୁ ସଙ୍କଳ୍ପ କରିଥିଲେ । ସେତେବେଳେ ଭଗବାନ ଗୋଟିଏ ଅଙ୍ଗୁଳିରେ ଗୋବର୍ଦ୍ଧନ ପର୍ବତକୁ ଉଠାଇ ତାଙ୍କର ମାନ ମର୍ଦ୍ଦନ କରିଥିଲେ ଓ ସେ ନିଜର ଅପରାଧ ପାଇଁ କ୍ଷମା ପ୍ରାର୍ଥନା କରିଥିଲେ । ପୁନଶ୍ଚ ସ୍ୱର୍ଗରେ ଇନ୍ଦ୍ରାଣୀ ତାଙ୍କୁ ଉସ୍‌କାଇ ଉତ୍ତେଜିତ କରାଇବା ଫଳରେ ସେ ତମୋଗୁଣରେ ଭରିଗଲେ । ପୁନର୍ବାର ଭଗବାନଙ୍କ ସହିତ ଯୁଦ୍ଧ କରିବାକୁ ପ୍ରବୃତ୍ତ ହେଲେ । ପ୍ରଥମେ ଦ୍ୱାରକାକୁ ଯାଇ କପଟ ବିଳାପ କରି ସେ ଭଗବାନଙ୍କୁ ନରକାସୁରର ଉପଦ୍ରବ କଥା କହିଲେ, ଏବେ ଯେତେବେଳେ ମାତାଙ୍କ କୁଣ୍ଡଳ ମିଳିଗଲା, ସେ ସଙ୍ଗେ ସଙ୍ଗେ ନିଜକୁ ସର୍ବସମର୍ଥ ଈଶ୍ୱର ବୋଲି ଭାବିଲେ । ଏଥିରେ ବୁଝିବାକୁ ଗଲେ ଇନ୍ଦ୍ରଙ୍କର ପ୍ରକୃତରେ କିଛି ଦୋଷ ନାହିଁ । ସବୁ ଦୋଷ ହେଉଛି ଭଗବାନଙ୍କ ମାୟାଙ୍କର । ଯେଉଁଠାରେ ଧନର ମଦ ରହେ, ସେଠାରେ ମନୁଷ୍ୟ କାମୀ ହୋଇଯାଏ । କାମୀ ପୁରୁଷର କର୍ତ୍ତବ୍ୟାକର୍ତ୍ତବ୍ୟର ବିବେଚନା ରହେ ନାହିଁ ।"

ସୂତ କହିଲେ—"ମୁନିଗଣ ! ଭଗବାନ ଏହିପରି କଳ୍ପବୃକ୍ଷ ପୁଷ୍ପ ନେଇ ସତ୍ୟଭାମାଙ୍କ ସହିତ ପୂର୍ବରୁ କରିଥିବା ପ୍ରତିଜ୍ଞା ପୂର୍ଣ୍ଣ କଲେ । ଏହା ପରେ ସେ ଯେପରି ଷୋଳ ସହସ୍ର ଏକଶହ ରାଜକନ୍ୟାଙ୍କୁ ବିବାହ କଲେ ସେହି କଥା ମୁଁ ପରବର୍ତ୍ତୀ ପ୍ରସଙ୍ଗରେ କହିବି ।"

## ଛପ୍ପୟ

ଅବ ସବ ସମୁଝହୁ ଇନ୍ଦ୍ର, ଶକ୍ର ସକୁଚ ତଜି ବୋଲେ ବାନୀ ।
ହୈଁ ଅଚ୍ୟୁତ ଅଖିଳେଶ ଆପ ହୌଂ ଅତ ଅଭିମାନୀ ।।

ମାୟା ତୁମର ପ୍ରବଲ ଭୂଲବେଂ ଉରଝେଁ ୟା ସ୍ୱାମୀ ।
କ୍ଷମା କରେଂ ଅପରାଧ ଅଖିଳପତି ଅନ୍ତର୍ଯ୍ୟାମୀ ॥
ସୁନତ ଇନ୍ଦ୍ରକେ ବଚନ ମୃଦୁ, ଉଠ୍ୟେ ସଦୟ କରୁଣାୟତନ ।
ପୁର ଆୟେ ସୁରଦ୍ରୁମ ଲୟେ, ଥାପେୟା ସତଭାମା ସଦନ ॥



# ଷୋଳ ସହସ୍ର କନ୍ୟାଙ୍କ ସହିତ ବିବାହ

ଅଥୋ ମୁହୂର୍ତ୍ତ ଏକସ୍ମିନ୍ନାନାଗାରେଷୁ ତାଃ ସ୍ତ୍ରିୟଃ ।
ଯଥୋପୟେମେ ଭଗବାଂସ୍ତାବତ୍ ରୂପ ଧରୋଽବ୍ୟୟଃ ॥ *

( ଶ୍ରୀ ଭା. ୧୦ ସ୍କ. ୫୯ ଅ. ୪୨ ଶ୍ଳୋକ )

## ଛପ୍ପୟ

ପୁଣ ଜୋ ସୋଳହ ସହସ ଏକଶତ କନ୍ୟା ଆଇଂ ।
ବନବାୟେ ବହୁ ଭବନ ସକଲ ସୁଖ ତେତିଂ ଠହରାଇଂ ॥
ବିଧିବତ କରେୟା ବିବାହ ରୂପ ଉତନେ ଧର ଲୀନ୍ହେ ।
ସବ କହୁଁ ଭୂଷଣ ବସନ ଦାସ ଦାସୀ ବହୁ ଦୀନ୍ହେ ॥
ଭବନ ଭବନ ମହଁ ଭୁବନପତି, ପୃଥକ୍ ପୃଥକ୍ ନିଜ ତନୁ ଧରେଂ ।
ସୁଖଦ ସରସ ସୁନ୍ଦର ସତତ, କ୍ରୀଡ଼ା ସବନ୍ହି ସଁଗ କରେଂ ॥

---

* ନାରକାପୁରୁ କନ୍ୟା ଆଣି । ଏକଇ ଲଗ୍ନେ ଚକ୍ରପାଣି ॥
ବିଭା ହୋଇଲେ ବିଧିମତେ । ଶୁଣ କହୁଛୁ ମୁହିଁ ତୋତେ ॥
ନାନା ଭୁବନେ କନ୍ୟା ଥୋଇ । ସୁଖେ ରମିଲେ ଶ୍ରୀବତ୍ସାଙ୍କ ॥

ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ : ୬୪ ଅ.

ଅଗ୍ନି ଏକ, ତାହା ଯେପରି କାଷ୍ଠ ବା ଆଧାର ପ୍ରଜ୍ୱଳିତ ସେପରି ପ୍ରଜ୍ୱଳିତ ହେବାକୁ ଲାଗେ । ସୂର୍ଯ୍ୟ ଏକ, କିନ୍ତୁ ଜଳ ପୂର୍ଣ୍ଣ ହୋଇଥିବା ଅସଂଖ୍ୟ ଘଡ଼ି ମଧ୍ୟରେ ତାଙ୍କର ପ୍ରତିବିମ୍ବ ପୃଥକ୍ ପୃଥକ୍ ଦୃଷ୍ଟିଗୋଚର ହୁଏ । ଆକାଶ ଏକ; କିନ୍ତୁ ପାତ୍ର ଭେଦରେ ତାହା ଘଟାକାଶ, ମଠାକାଶ ଓ ଦେହାକାଶ ସଂଜ୍ଞ ହୋଇଯାଏ । ସେହିପରି ସର୍ବାନ୍ତର୍ଯ୍ୟାମୀ, ଅଜ, ଅଚ୍ୟୁତ, ଅଖିଳେଶ, ଶ୍ରୀହରି ଏକ, ଅଦ୍ୱୈତ । ତଥାପି ଭକ୍ତଜନମାନଙ୍କୁ ସୁଖ ପ୍ରଦାନ କରିବା ପାଇଁ ରସମୟୀ ମଧୁର କ୍ରୀଡ଼ା କରିବା ନିମିତ୍ତ ସେ ଅନେକ ହୋଇ ଯାଆନ୍ତି ଓ ଭକ୍ତଗଣଙ୍କର ଭାବନା ଅନୁସାରେ ତାଙ୍କ ସହିତ ସେହିପରି କ୍ରୀଡ଼ା କରନ୍ତି ଓ ସେମାନଙ୍କୁ ଇପ୍‌ସିତ ବର ପ୍ରଦାନ କରନ୍ତି । ଭଗବାନ ସମସ୍ତଙ୍କର ସେ । ସମସ୍ତଙ୍କ ଭାବନା ଅନୁସାରେ ରୂପ ଧାରଣ କରନ୍ତି । କିନ୍ତୁ ତାଙ୍କ ନିଜର କୌଣସି ନାମ ନାହିଁ କି ରୂପ ବି ନାହିଁ ।

ସୂତ କହିଲେ—"ମୁନିଗଣ ! ଭଗବାନ ଯେତେବେଳେ କଳ୍ପବୃକ୍ଷ ନେଇ ଦ୍ୱାରକାକୁ ଆସିଲେ, ସେତେବେଳେ ସେ ଭୌମାସୁରର ବନ୍ଦୀଶାଳାରୁ ଉଦ୍ଧାର କରି ଆଣିଥିବା ସେହି ଷୋଳ ସହସ୍ର ଏକଶହ କନ୍ୟାଙ୍କ ଖବର ନେଲେ । ସେ ସଙ୍ଗେ ସଙ୍ଗେ ବିଶ୍ୱକର୍ମାଙ୍କୁ ଡକାଇ ଆଜ୍ଞା ଦେଲେ ଯେ—"ଦେଖ, ଏମାନେ ହେଉଛନ୍ତି ରାଜକନ୍ୟା । ଏମାନଙ୍କ ପାଇଁ ତୁମେ ପୃଥକ୍ ପୃଥକ୍ ଷୋଳ ସହସ୍ର ଏକ ଶହ ଭବନ ନିର୍ମାଣ କରିଦିଅ । କିନ୍ତୁ ମନେରଖ, ସେହି ସବୁ ଭବନ ଯେପରି ଏକାଭଳି ହୁଏ । ସେଥିରେ କୌଣସି ପ୍ରକାର ପ୍ରଭେଦ ନ ରହେ । କେହି ଯେପରି ଭବିଷ୍ୟତରେ ମୋତେ ନ କୁହନ୍ତି ଯେ, ଅମୁକର ଭବନ ଅଧିକ ସୁନ୍ଦର, ମୋ ଭବନ ସବୁଠାରୁ ନିକୃଷ୍ଟ ; ସମସ୍ତ ଭବନ ଯେପରି ସମାନ ହୁଏ ଓ ସେଥିରେ ବ୍ୟବହାର କରାଯାଉଥିବା ସମସ୍ତ ସାମଗ୍ରୀ ଯେପରି ଏକଭଳି ହୁଏ ।"

ଏହା ଶୁଣି ବିଶ୍ୱକର୍ମା ସଙ୍ଗେ ସଙ୍ଗେ ସମସ୍ତଙ୍କ ପାଇଁ ଅତି ସୁନ୍ଦର, ସୁଖଦ, ସୁରମ୍ୟ ତଥା ସମସ୍ତ ଋତୁ ଅନୁକୂଳ ଭବନ ନିର୍ମାଣ କରିଦେଲେ । ଭଗବାନ ସମସ୍ତଙ୍କୁ ଏକ ଏକ ଭବନ ଦେଲେ । ସେଥିରେ ଜୀବନପଯୋଗୀ ସମସ୍ତ ପ୍ରକାର ଆବଶ୍ୟକୀୟ ସାମଗ୍ରୀମାନ ରଖି ଦିଆହେଲା । ପ୍ରତ୍ୟେକ ଭବନ ପାଇଁ ସୁନ୍ଦର ଉଦ୍ୟାନ, ସରୋବର, କ୍ରୀଡ଼ାସ୍ଥଳ ଓ ବିହାର ଭବନ ରହିଲା । ପ୍ରତ୍ୟେକ ଭବନ ପାଇଁ ଶହ ଶହ ଦାସ ଦାସୀ ରଖାଗଲେ । ପ୍ରତ୍ୟେକ ଉଦ୍ୟାନରେ ଫୁଲ ଫୁଟି ଉଦ୍ୟାନ ହସି ଉଠୁଥିଲା ଓ ସୁନ୍ଦର ସୁନ୍ଦର ପକ୍ଷୀ ମଧୁର ମଧୁର ଶବ୍ଦରେ କାକଳି କରୁଥିଲେ । ଏପରି ସୁନ୍ଦର ଭବନକୁ ପାଇ ସେମାନେ ସମସ୍ତେ ପରମ ପ୍ରମୁଦିତ ହେଲେ । ଏପର୍ଯ୍ୟନ୍ତ ତ ସେମାନେ ମେଣ୍ଢା ଛେଳିଙ୍କ ପରି ଏକ ସ୍ଥାନରେ ରହି ଦିନ କାଟି ଆସୁଥିଲେ । ଏବେ ସେମାନେ ସମସ୍ତେ ସୁଖରେ ରହିବାକୁ ଲାଗିଲେ ।

ଭଗବାନ ଜ୍ୟୋତିଷମାନଙ୍କୁ ବିବାହର ଶୁଭଲଗ୍ନ ପଚାରିଲେ । ଜ୍ୟୋତିଷମାନେ ଲଗ୍ନ ବତାଇଦେଲେ ଓ ଏକ ସମୟରେ ଭଗବାନ ସମସ୍ତ ରାଜକନ୍ୟାଙ୍କୁ ବିବାହ କଲେ ।

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଏକ ସଙ୍ଗେ ଷୋଳ ସହସ୍ର ଏକ ଶହ ରାଜକୁମାରୀମାନଙ୍କ ସହିତ ଭଗବାନ କିପରି ବିବାହ କଲେ ? ଏକ ମଣ୍ଡପରେ ଏମାନେ ସମସ୍ତେ ବିବାହ ହେଲେ ନା ପୃଥକ୍ ପୃଥକ୍ ବେଦୀ ତିଆରି ହୋଇଥିଲା ?"

ସୂତ କହିଲେ—"ମହାରାଜ ! ଯେତେ ରାଜକୁମାରୀ ଥିଲେ, ସମସ୍ତଙ୍କ ଘରେ ପୃଥକ୍ ପୃଥକ୍ ବିବାହ ମଣ୍ଡପ ତିଆରି ହୋଇଥିଲା । ସବୁ ଭବନରେ ପୁରୋହିତ ମଧ୍ୟ ପୃଥକ୍ ଥିଲେ । କେବଳ ସେତିକି ନୁହେଁ ଯେତେ ରାଜକୁମାରୀ ଥିଲେ, ଭଗବାନ ସେତେ ରୂପରେ ବିରାଜମାନ ଥିଲେ । ତେଣୁ ଏକ ସମୟରେ ବିବାହ କାର୍ଯ୍ୟ ସମ୍ପନ୍ନ ହୋଇ ପାରିଲା । ଏହି ରାଜକନ୍ୟାମାନେ ଲକ୍ଷ୍ମୀଙ୍କ ଅଂଶରେ ଜନ୍ମ ଗ୍ରହଣ କରିଥିଲେ । ଶ୍ରୀଲକ୍ଷ୍ମୀଦେବୀ ଏହି ସମସ୍ତ ରୂପରେ ଆବିର୍ଭୂତା ହୋଇଥିଲେ । ତେଣୁ ଭଗବାନ ସେତିକି ରୂପରେ ସେମାନଙ୍କ ସହିତ ରମଣ କରୁଥିଲେ ।

ଭଗବାନ ଯଦିଓ ଆତ୍ମାରାମ, ନିଜ ଆନନ୍ଦରେ ସଦା ନିମଗ୍ନ ରହନ୍ତି, ତଥାପି ମାନବ ଲୀଳା ପ୍ରଦର୍ଶନ କରିବା ପାଇଁ ସେ ରାଜକୁମାରୀମାନଙ୍କ ସହିତ ପ୍ରାକୃତ ପୁରୁଷଙ୍କ ଭଳି ବ୍ୟବହାର କରି ସେମାନଙ୍କୁ ସୁଖ ପ୍ରଦାନ କରିଥିଲେ ।

ଯେଉଁ ଅଚ୍ୟୁତ, ଅଖିଳେଶ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ପାଇବା ପାଇଁ ବ୍ରହ୍ମାଦି ଦେବଗଣ ଓ ମୁନି ଋଷିଗଣ ହଜାର ହଜାର ବର୍ଷ ଘୋର ତପସ୍ୟା କରନ୍ତି, ସେମାନେ ମଧ୍ୟ ତାଙ୍କ ପଦ ଦର୍ଶନ କରିବାର ସୁଯୋଗ ପାଆନ୍ତି ନାହିଁ । ସେହି ପ୍ରଭୁଙ୍କୁ ପତି ରୂପେ ପାଇ ପରମ ଭାଗ୍ୟବତୀ ରାଜକୁମାରୀଗଣ ସମ୍ପୂର୍ଣ୍ଣ ସନ୍ତୋଷ ଲାଭ କରି ପାରୁ ନଥିଲେ । ସେମାନେ ଚାହୁଁଥିଲେ ନିରନ୍ତର ଯେପରି ସେମାନେ ତାଙ୍କର ସେବାରେ ମଗ୍ନ ରହିବେ । ବିନମ୍ର ସହକାରେ ବାସୁଦେବଙ୍କୁ ନିଜର ବଶ କରି ନେବେ । ପ୍ରତ୍ୟେକ ଚାହୁଁଥିଲେ ସେ ଯେପରି ଆମମାନଙ୍କୁ ଅଧିକ ପ୍ରେମ କରନ୍ତୁ । ଏଥିପାଇଁ ସେମାନେ ସର୍ବଦା ଅନୁରାଗପୂର୍ଣ୍ଣ ମନ୍ଦ ମନ୍ଦ ହାସ୍ୟ କଟାକ୍ଷରେ ତାଙ୍କୁ ନିରୀକ୍ଷଣ କରୁଥିଲେ ଓ ହୃଦୟ, ମନ, ପ୍ରାଣ ଦେଇ ତାଙ୍କୁ ଭଲ ପାଉଥିଲେ । ମଧୁର ବାଣୀରେ ନବ ସଙ୍ଗମର ସରସ ସୁଖଦ କଥାମାନ ତାଙ୍କୁ ସର୍ବଦା କହୁଥିଲେ । ନିଜର ସର୍ବସ୍ୱ ସମର୍ପିତ କରି ତାଙ୍କୁ ସେବା କରୁଥିଲେ । ଯଦି ଚ ତାଙ୍କ ଭବନମାନଙ୍କରେ ଅନେକ ଦାସ ଦାସୀ ଥିଲେ, ତଥାପି ସେମାନେ ନିଜେ ନିଜେ ଭଗବାନଙ୍କର ସମସ୍ତ ପ୍ରକାର ସେବା କରୁଥିଲେ । ଏହାକୁ ସେମାନେ ନିଜେ ନିଜର ସୌଭାଗ୍ୟ ବୋଲି ମନେ କରୁଥିଲେ ।

ଭଗବାନ ଯେତେବେଳେ ସୁଧର୍ମା ସଭାରୁ ଫେରୁଥିଲେ, ସେମାନେ ସେତେବେଳେ ଆଗେଇ ଯାଇ ତାଙ୍କୁ ପାଛୋଟି ନେଉଥିଲେ । ତାହାପରେ ଅନୁରାଗଭରା ହୃଦୟରେ ବସିବା ପାଇଁ ଆ ... ପ୍ରଦାନ କରୁଥିଲେ । ନିଜ ନିଜ ହାତରେ ସୁଗନ୍ଧିତ ଜଳଦ୍ୱାରା ସ୍ନାନ କରାଇ ଦେଉଥିଲେ । ତାଙ୍କ ଅରୁଣ ବର୍ଣ୍ଣର ପରମ ମୃଦୁଳ ଚରଣ କମଳକୁ ନିଜ ନିଜର ସୁନ୍ଦର ସୁକୋମଳ କରରେ ପ୍ରକ୍ଷାଳନ କରି ଦେଉଥିଲେ । ମୁଣ୍ଡ କୁଣ୍ଡାଇ ଦେଇ ଚନ୍ଦନାଦି ଲଗାଇ ଦେଉଥିଲେ । ସୁନ୍ଦର ସ୍ୱଚ୍ଛ ବସ୍ତ୍ର ପିନ୍ଧାଇ ଦେଉଥିଲେ । ନିଜ ହାତରେ ବିଭିନ୍ନ ପ୍ରକାର ସୁସ୍ୱାଦୁ ଷଡ଼ରସପୂର୍ଣ୍ଣ ଖାଦ୍ୟ ପ୍ରସ୍ତୁତ କରି ଖୁଆଇ ଦେଉଥିଲେ । ଏହାପରେ ମୁଖ ଶୁଦ୍ଧି ପାଇଁ ପାନ, ଅଲେଇଚ, ଲବଙ୍ଗ ଆଦି ଦେଉଥିଲେ । ସୁନ୍ଦର ସୁଖଦ ଶଯ୍ୟାରେ ତାଙ୍କୁ ଆଦରରେ ଶୁଆଇ ଥିଲେ । ତାଙ୍କ ପାଦସେବା କରୁଥିଲେ । ମୟୂରପକ୍ଷୀ ନିର୍ମିତ ପଙ୍ଖାରେ ତାଙ୍କୁ ବିଞ୍ଚି ଦେଉଥିଲେ । ସାରକଥା ଏହି ଯେ, ସେମାନେ ଭଗବାନଙ୍କର ସମସ୍ତ ପ୍ରକାର ସେବା କରି ନିଜ ନିଜକୁ ଧନ୍ୟ ମନେ କରୁଥିଲେ ।

ଭଗବାନ ୧୬୧୦୮ (ଷୋଳ ସହସ୍ର ଏକଶହ ଆଠ) ରୂପରେ ନିଜକୁ ପ୍ରକାଶ କରି ସମସ୍ତଙ୍କ ଭବନରେ ପୃଥକ୍ ପୃଥକ୍ ଭାବେ ବିରାଜମାନ କରୁଥିଲେ । ଏଣୁ କେହି କହିପାରୁ ନଥିଲେ ଯେ, ଭଗବାନ ଆମ ଭବନକୁ ଆସୁନାହାନ୍ତି । ସମସ୍ତେ ଭାବୁଥାନ୍ତି "ଭଗବାନ ପ୍ରତ୍ୟେକଙ୍କୁ ଅଧିକ ପ୍ରେମ କରୁଛନ୍ତି । ସେ ମୋ ଭବନ ବ୍ୟତୀତ ଅନ୍ୟ କାହାରି ଭବନକୁ ଯାଇ ନାହାନ୍ତି । କେଣୁ କାହାରି ସହିତ କେହି ଈର୍ଷାଭାବ ରଖି କଳହ କରିବାର ଅବକାଶ ନଥାଏ । ଯେତେବେଳେ ଭଗବାନ ସମସ୍ତଙ୍କ ମହଲରେ ରହନ୍ତି, ସେତେବେଳେ ପୃଥକ୍ ପୃଥକ୍ ରୂପ ରଖି ରହନ୍ତି । କିନ୍ତୁ ସଭାକୁ ଗଲାବେଳେ ଦ୍ୱାରଦେଶ ପର୍ଯ୍ୟନ୍ତ ପୃଥକ୍ ପୃଥକ୍ ରୂପରେ ଆସି ଦ୍ୱାର ନାହାରେ ଏକ ରୂପରେ ସଭା ସ୍ଥଳକୁ ଯାଆନ୍ତି । ଯେତେବେଳେ ଦ୍ୱାର ଦେଶରେ ପହଞ୍ଚାଇ ଦେଇ ସମସ୍ତ ରାଣୀ ଫେରି ଯାଆନ୍ତି ସେତେବେଳେ ହିଁ ଭଗବାନଙ୍କର ସମସ୍ତ ରୂପ ଏକ ରୂପରେ ମିଶିଯାଏ । ଏହିପରି ଭାବରେ ସମସ୍ତଙ୍କୁ ସନ୍ତୁଷ୍ଟ କରି ଶ୍ୟାମ ସୁନ୍ଦର ଦ୍ୱାରକାରେ ରହି ଗୃହସ୍ଥ ଧର୍ମ ପାଳନ କରୁ ଥାଆନ୍ତି ।

ଶୌନକ ପଚାରିଲେ—"ହେ ସୂତ ! ଭଗବାନଙ୍କର ଭ ଏତେ ରାଣୀ ଥିଲେ, ତାଙ୍କର ସମୁଦାୟ କେତେ ପୁତ୍ର ହୋଇଥିଲେ ? ସେମାନଙ୍କର କୌଣସି ପୁତ୍ର କନ୍ୟା ଜନ୍ମ ହୋଇଥିଲେ ନା ସେମାନେ ଷୋଳ ସହସ୍ର ଗୋପିକାଙ୍କ ଭଳି କୃଶୋଦରୀ ଥିଲେ । ?"

ସୂତ କହିଲେ—ନା ମହାରାଜ ! ସେମାନେ କୃଶୋଦରୀ କାହିଁକି ହେବେ ! ସେମାନେ ଯେତେବେଳେ ଭଗବାନଙ୍କର ବାଧ୍ୟବାଧକ ଭାବରେ ପତ୍ନୀ ଥିଲେ, ସେତେବେଳେ ପତ୍ନୀଙ୍କରତ ମୁଖ୍ୟ ଉଦ୍ଦେଶ୍ୟ ସନ୍ତାନବତୀ ହେବା । ସତ୍ୟସଙ୍କଳ୍ପ ଅମୋଘବୀର୍ଯ୍ୟ ଭଗବାନଙ୍କର

ପତ୍ନୀମାନେ ପୁତ୍ରହୀନ ହୋଇଥିବେ ବୋଲି ଆପଣ ଭାବୁଛନ୍ତି କିପରି ? ସମସ୍ତ ରାଣୀଙ୍କର ପୁତ୍ର ହୋଇଥିଲେ । ଭଗବାନ ସେମାନଙ୍କୁ ଯେପରି ସମଭାବରେ ସମସ୍ତ ପ୍ରକାର ଭୋଗ ସାମଗ୍ରୀ ପ୍ରଦାନ କରିଥିଲେ, ସେହିପରି ସମସ୍ତଙ୍କ କୋଳରେ ପୁତ୍ର ମଧ୍ୟ ଦେଇଥିଲେ । କାହାକୁ ଶତପୁତ୍ର ଓ କାହାକୁ ଯଦି ଦଶ କନ୍ୟା ଦେଇଥାନ୍ତେ ଓ କାହାକୁ ଏକ ପୁତ୍ର ଦେଇ ଥାଆନ୍ତେ, ତାହା ହେଲେ ସେମାନେ ଅସନ୍ତୁଷ୍ଟ ହୋଇ ଥାଆନ୍ତେ ଓ ଖରାପ ଭାବ ଆଣନ୍ତେ । ଏଥିପାଇଁ ଭଗବାନ ଏପରି ଅଶାନ୍ତି ତାହାଙ୍କ ମନରେ ସୃଷ୍ଟି ହେବାକୁ ଦେଇ ନଥିଲେ । ଯେପରି ବିବାହ ଉତ୍ସବରେ ପରିବେଷଣ ହେଉଥିବା ସମୟରେ କାହାରି ପ୍ରତି ପ୍ରାଣର ଅନ୍ୟ ଭାବ ନ ରଖି ପରିବେଷଣକାରୀ ସମସ୍ତଙ୍କୁ ଲଡ଼ୁ, ମିଠା ଆଦି ସମସ୍ତ ସୁମିଷ୍ଟ ବସ୍ତୁ ସମଭାବରେ ପରିବେଷଣ କରିଥାଏ, ସେହିପରି ଭଗବାନ ଏ ସମସ୍ତଙ୍କୁ ଦଶ ଦଶ ପୁତ୍ର ଓ ଏକ ଏକ କନ୍ୟା ପ୍ରଦାନ କରିଥିଲେ ।"

ଶୌନକ କହିଲେ—ହେ ସୂତ ! ଆପଣ ଭଗବାନଙ୍କର ସମସ୍ତ ପୁତ୍ରଙ୍କ ନାମ ଆମ୍ଭମାନଙ୍କ ଆଗରେ ପ୍ରକାଶ କରନ୍ତୁ ।"

ଏହା ଶୁଣି ସୂତ ହସି ହସି କହିଲେ—"ମହାରାଜ ! ଆପଣ ତ ଅସମ୍ଭବ ପ୍ରକାର ପ୍ରଶ୍ନ କରୁଛନ୍ତି, କଥା ଶୁଣି ଶୁଣି କଣ ବାତୁଳ ହୋଇଗଲେ ? କୁହନ୍ତୁ ତ ଏ ସମସ୍ତଙ୍କ ନାମ ମୋତେ କହିବାକୁ ହେଲେ ମଝିରେ ମଝିରେ ଗଣିବାକୁ ତ ପଡ଼ିବ ? ଏକଲକ୍ଷ ଏକଷଠୀ ହଜାର ଅଶୀ ସଙ୍ଖ୍ୟକ ପୁତ୍ର ଓ ଷୋଳ ସହସ୍ର ଏକଶହ ଆଠ କନ୍ୟାଙ୍କର ନାମ କଣ ଗଣିକରି କହିବା ସମ୍ଭବପର ? ଅଷ୍ଟ ପାଟରାଣୀଙ୍କର ମୁଖ୍ୟ ମୁଖ୍ୟ ପୁତ୍ରଙ୍କ ନାମ ଯଦି ଜାଣିବାକୁ ଆପଣମାନେ ଚାହାନ୍ତି, ତେବେ ଆଜ୍ଞା କରନ୍ତୁ, ତାହା ମୁଁ କହିପାରେ ।"

ଏହା ଶୁଣି ଶୌନକ ଚମକି ପଡ଼ି କହିଲେ—"ହଁ ସୂତ ! ମୁଁ ଗୋଟିଏ କଥା ଭୁଲି ଯାଇଥିଲି । ଆପଣ କହିଥିଲେ, ଭଗବାନଙ୍କର ପାଟରାଣୀ ରୁକ୍ମିଣୀଙ୍କର ପ୍ରଦ୍ୟୁମ୍ନ କେବଳ ପୁତ୍ରଟିଏ ହୋଇଥିଲା ଓ ସମ୍ବରାସୁର ଛଦ୍ମବେଶଧରି ତାଙ୍କୁ ସୂତିକା ଗୃହରୁ ହିଁ ହରଣକରି ନେଇଥିଲା । ତା'ପରେ କଣ ଘଟିଲା ? ପୁନଶ୍ଚ ମତ୍ସ୍ୟ ଉଦରରୁ ବାହାରିଥିବା ମାୟାବତୀ ନାମରେ ପ୍ରସିଦ୍ଧ ରତି ତାଙ୍କୁ କି ପାଳନ କରୁଥିଲେ ? ଏବେ ତ ସେ ବଡ ହୋଇସାରିଥିବେ ? ଯୁବକ ହୋଇଥିବେ ? ସେ ଦ୍ୱାରକା ଫେରି ଆସିଛନ୍ତି କି ନାହିଁ ? ତାଙ୍କର ବିବାହ ହୋଇଛି କି ନାହିଁ ? କୃପାକରି ପ୍ରଥମେ ଭଗବାନଙ୍କର ଜ୍ୟେଷ୍ଠପୁତ୍ର ସେହି ପ୍ରଦ୍ୟୁମ୍ନଙ୍କ କଥା ଆମ୍ଭମାନଙ୍କୁ କୁହନ୍ତୁ, ପରେ ଭଗବାନଙ୍କର ଅନ୍ୟାନ୍ୟ ପୁତ୍ର ପୌତ୍ରଙ୍କ କଥା କହିବେ ।"

ସୂତ କହିଲେ—"ତେବେ ଠିକ୍ ଅଛି, ମହାରାଜ ! ଏବେ ମୁଁ ଆପଣମାନଙ୍କୁ ପ୍ରଦ୍ୟୁମ୍ନଙ୍କ କଥା ସଂକ୍ଷିପ୍ତରୂପେ କହିବି । ଆପଣମାନେ ମନଧ୍ୟାନ ଦେଇ ତାହା ଶ୍ରବଣ କରନ୍ତୁ ।"

## ଛପ୍ପୟ

ପୁଚ୍ଛେ ଶୌନକ ସୂତ ! ବ୍ୟାହ ହୁଅ ବହୁତ ବତାୟେ ।
କନ୍ତୁ ପୁତ୍ର କେ ଭୟେ ଆପୁନେ ନାହିଁ ଗିନାୟେ ॥
ହଁସି କେଂ ବୋଲେ ସୂତ, କହୁଁ । ତଜ ପୂତ ଗିନାଉଁ ।
ମୁଖ୍ୟ ମୁଖ୍ୟ ଯେ ଭୟେ ଝନହିଁ ତଜ ନାମ ବତାଉଁ ॥
ଶୌନକ ବୋଲେ—'ପ୍ରଥମ ତୁମ, ଶ୍ରୀ ପ୍ରଦ୍ୟୁମ୍ନ କହୋ କଥା ।
ଶମ୍ବରପୁର ମାୟାବତୀ, ରଖନେ ପାଲେ ବେ ଯଥା ॥



## ପ୍ରଦ୍ୟୁମ୍ନଙ୍କ କଥା

ପ୍ରଭ୍ରଶୈବଂ ଦଦୌ ବିଦ୍ୟାଂ ପ୍ରଦ୍ୟୁମ୍ନାୟ ମହାତ୍ମନେ ।
ମାୟାବତୀ ମହାମାୟାଂ ସର୍ବମାୟା ବିନାଶିନୀମ୍ ॥
ସ ଚ ସମ୍ବରମଭ୍ୟେତ୍ୟ ସଂଯୁଗାୟ ସମାହ୍ୱୟତ୍ ।
ଆବିଷହ୍ୟୈସ୍ତମାକ୍ଷେପୈଃ କ୍ଷେପେନ ସଞ୍ଜନିୟନ୍ କଲିମ୍ ॥ *

(ଶ୍ରୀ: ଭା: ୧୦ ସ୍କ: ୫୫ ଅ : ୧୭ ଶ୍ଳୋକ)

---

* ଏମନ୍ତ କହି ମାୟାବତୀ । ମୋହନ ବିଦ୍ୟା ଦେଲା ଅତି ॥
ସକଳ ମାୟା ଯେତେକ ଜାଣି । ସ୍ୱାମୀଙ୍କି କହିଲା ତରୁଣୀ ॥
କୃଷ୍ଣନନ୍ଦନ ଶୁଣି ତାହା । ଅଭ୍ୟାସ କଲା ସର୍ବମାୟା ॥
ଏମନ୍ତେ ପାହିଲା ରଜନୀ । କନ୍ଦର୍ପ କରେ ଚଢା ଯୋନ ॥
ଶମ୍ବର ସଙ୍ଗତେ ମିଳି । ଯୁଦ୍ଧେ ଡାକଇ ମହାବଳୀ ॥

ଭାଗବତ: ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ: ୫୯ ଅ

## ଛପ୍‌ପୟ

କହେହୁଂ ସୂତ ସବ ସୁଦ୍ଧ ଦୟୋ ଶିଶୁ ରକ୍ଷ କୁଁ ମନହର ।
ଅଜ ପକ୍ଷ କୁଁ ପଦ୍ମଗନ୍ଧ କରେ ପାଳନ ଛପି ଭୀତର ॥
ଭୟୋ ଯୁବକ ପକ୍ଷ ସକଳ ଭାବ ଲଖି ତେ ଘବରୟୋ ।
ରଣ୍ଡେନ ତବ ସବ ପର୍ଚେ ଜନ୍ମକେ ବୃତ୍ତ ବତାୟୋ ॥
ରତି ମାୟା ପ୍ରଦ୍ୟୁମ୍ନ କୁଁ, ଦୀଂ ହ୍ରୀ ତେ ନଭୟୁ ଭୟୋ ।
ଲଡ ହନ ଶମ୍ବର ତେଁ ସୁମ୍ୟୁଂ, ବନା ବାତ ହ୍ରୀ ଭିଦ୍ଧ ଗୟୋ ॥

ପୂର୍ବଜନ୍ମ ସଂସ୍କାର ହୃଦୟ ହେବାଛଣି ଅସମ୍ଭବ ପରି ଜଣାପଡୁଥିବା କଥା ସମ୍ଭବ ହୋଇଯାଏ । ପୂର୍ବଜନ୍ମର ସଂସ୍କାରବଶତଃ ହିଁ ପାପପୁଣ୍ୟରେ ପ୍ରବୃତ୍ତି ଜନ୍ମେ । ପ୍ରାଣୀ ଯେଉଁଠାକୁ ଯାଏ, ତା ସଙ୍ଗେ ସଙ୍ଗେ ଯେପରି ତାହାର ଛାୟା ଯାଇଥାଏ, ସେହିପରି ଜୀବ ଯେଉଁ ଯୋନିରେ ଜନ୍ମଗ୍ରହଣ କରେ, ତାହାର ସଂସ୍କାର ତା ସହିତ ସେହିଭଳି ଲାଗିରହିଥାଏ । ସୁସଂସ୍କାର ଥିଲେ ସେ ସୁଫଳ ଭୋଗକରେ ଓ କୁସଂସ୍କାର ଥିଲେ ସେ କୁଫଳ ଭୋଗକରେ ।

ସୂତ କହିଲେ—"ମୁନିଗଣ ! ଭଗବାନଙ୍କର ପାଟରାଣୀଙ୍କ ଠାରୁ ପ୍ରଦ୍ୟୁମ୍ନ ଜନ୍ମଲାଭ କରିଥିଲେ । ଶମ୍ବରାସୁର ତାଙ୍କୁ ନିଜର ଶତ୍ରୁ ବୋଲି ଭାବି ତାଙ୍କୁ ସୂତିକାଘରୁ ନେଇଯାଇ ସମୁଦ୍ରରେ ଫିଙ୍ଗି ଦେଇଥିଲା । ସେଠାରେ ତାଙ୍କୁ ଏକ ବଡ଼ ମାଛ ଗିଳି ଦେଲା । ଜଣେ କୈବର୍ତ୍ତ ସେହି ମାଛଟି ଧରି ଶମ୍ବରାସୁରକୁ ଉପହାର କରିଥିଲା । ଶମ୍ବରାସୁର ତାକୁ ନେଇ ରୋଷେଇଆକୁ ଦେଲା । ରୋଷେଇଆ ମାଛର ପେଟ ଚିରୁଚିରୁ ତହିଁରୁ ପ୍ରଦ୍ୟୁମ୍ନ ବାହାରିଲେ । ରୋଷେଇଆ ତାଙ୍କୁ ନେଇ ଶମ୍ବରାସୁର ଘରେ ରହୁଥିବା ମାୟାବତୀକୁ ଦେଇଦେଲା । ସେହି ମାୟାବତୀ ପୂର୍ବଜନ୍ମରେ ରତି ଥିଲା । ସେ ପ୍ରଦ୍ୟୁମ୍ନଙ୍କୁ ଅତି ସ୍ନେହରେ ଲାଳନ ପାଳନ କଲା । ନାରଦ ଆସି ତାକୁ କହି ଦେଇଗଲେ ଯେ, "ଏ ହେଉଛନ୍ତି ତୋର ପୂର୍ବଜନ୍ମର ପତି କାମଦେବ ।" ଏଥିପାଇଁ ରତି ତା ମନରେ ପତିଭାବ ରଖି ତାଙ୍କୁ ମାନିକ ଭଜିବାକୁ ଲାଗିଲା । ଏହିପରି ଭାବରେ ଅନ୍ତଃପୁର ମଧ୍ୟରେ ରହି ରହି ତାଙ୍କ ଷୋଳବର୍ଷ ହୋଇଗଲା ।

ପ୍ରଥମେ ଶ୍ରେଷ୍ଠ ପିଲା ଥିଲାବେଳେ ସେ କିଛି ବୁଝି ନଥିଲେ । ଏବେ ଯୁବକ ହୋଇଯିବାରୁ ସ୍ତ୍ରୀମାନଙ୍କର ହାବଭାବ ସବୁ ବୁଝିଗଲେ । ସେ ଅନେକ ସମୟରେ ଅନୁଭବ କରୁଥିଲେ ଯେ, "ମୋତେ ପାଳନ କରୁଥିବା ମାତାଙ୍କର କାର୍ଯ୍ୟ ଆଦୌ

ଭଲନୁହେଁ । ସେ ମୋତେ ପୁତ୍ରଭଳି ବ୍ୟବହାର ନ କରି କାମଭାବରେ ବ୍ୟବହାର କରୁଛନ୍ତି । ଏଥିରେ ସେ ଅତ୍ୟନ୍ତ ଲଜ୍ଜା ବୋଧ କଲେ ଓ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ ।

ଯେତେବେଳେ ସେ ଅତି ଅନୁରାଗପୂର୍ଣ୍ଣ ହୃଦୟରେ ରତି ସମ୍ବନ୍ଧୀୟ ହାବଭାବ କଟାକ୍ଷ ଦ୍ୱାରା ସତୃଷ୍ଣ ନୟନରେ ଅତୃପ୍ତାଙ୍କ ଭଳି ସେ ତାଙ୍କୁ ଚାହୁଁଥିବାର ଦେଖିଲେ, ସେତେବେଳେ ବାସୁଦେବ ନନ୍ଦନ ପ୍ରଦ୍ୟୁମ୍ନ ତାଙ୍କୁ କହିଲେ—"ମା ! ମୁଁ ଦେଖୁଛି, ଆପଣଙ୍କ ବୁଦ୍ଧି ଲୋପ ପାଇଯାଇଛି । ଆପଣଙ୍କ ଭାବରେ ହଠାତ ପରିବର୍ତ୍ତନ ବୋଧ ହେଉଛି । ଆପଣ ମାତୃଭାବ ପରିତ୍ୟାଗ କରି ମୋ ସହିତ କାମିନୀଙ୍କ ଭଳି ବ୍ୟବହାର କରୁଛନ୍ତି । ଏପରି ଆଚରଣ ଆଦୌ ଭଲ ନୁହେଁ । ଏହା ସର୍ବଥା ନିନ୍ଦନୀୟ । ଆପଣ ମୋ ସହିତ ଏପରି ବ୍ୟବହାର କରିବା ଶୋଭନୀୟ ନୁହେଁ ।

ଏହା ଶୁଣି ମାୟାବତୀ ଲଜ୍ଜିତା ହୋଇ କହିଲେ—"ପ୍ରଭୋ ! ମୁଁ ଆପଣଙ୍କର ମାତା ନୁହେଁ କିମ୍ବା ଏ ସମ୍ବରାସୁର ଆପଣଙ୍କର ପିତା ନୁହେଁ । ଆପଣ ହେଉଛନ୍ତି ବାସୁଦେବ ନନ୍ଦନ । ରୁକ୍ମିଣୀ ଦେବୀ ହେଉଛନ୍ତି ଆପଣଙ୍କର ମାତା ।"

ଏହା ଶୁଣି ପ୍ରଦ୍ୟୁମ୍ନ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ତାହାହେଲେ ଦ୍ୱାରକାରୁ ମୁଁ ଏଠାକୁ କିପରି ଆସିଲି ? ଆପଣ ମୋତେ କିପରି ପାଳନ କଲେ ? ଆପଣ କିଏ ? ମୋତେ ଏହିସବୁ କଥା ଭଲଭାବରେ ବୁଝାଇ କହନ୍ତୁ ।"

ଏହା ଶୁଣି ମାୟାବତୀ କହିଲେ—"ଦେଖନ୍ତୁ, ଆପଣଙ୍କର ଜନ୍ମ ଦ୍ୱାରକାପୁରୀର ଅନ୍ତଃପୁରରେ ପରମ ଭାଗ୍ୟବତୀ ରୁକ୍ମିଣୀଦେବୀଙ୍କ ଗର୍ଭରୁ ହୋଇଥିଲା । ଆପଣ ଦଶଦିନର ବି ହୋଇନଥିଲେ, ସେହି ସମୟରେ ଏହି ପାପୀ ସମ୍ବରାସୁର ଆପଣଙ୍କୁ ହରଣକରି ନେଇ ଆସିଲା ଓ ସମୁଦ୍ରରେ ନେଇ ଫିଙ୍ଗିଦେଲା । ଗୋଟିଏ ବଡ଼ମାଛ ଆପଣଙ୍କୁ ଗିଳି ଦେଇଥିଲା । ଦୈବ ଯୋଗକୁ ସେ କେଉଟଙ୍କ ଦ୍ୱାରା ଧରାହୋଇ ଏଠାକୁ ଆସିଲା । ତାହା ପେଟ ଚିରା ହେବାକ୍ଷଣି ଆପଣ ବାହାରିଲେ ।"

ଏ କଥା ଶୁଣି ପ୍ରଦ୍ୟୁମ୍ନ ପଚାରିଲେ—"ଆଚ୍ଛା, ତାହାହେଲେ ତୁମେ କିଏ ମୋତେ କୁହ ।" ମାୟାବତୀ କହିଲେ—"ମହାରାଜ ! ମୁଁ ଆପଣଙ୍କର ପୂର୍ବ ଜନ୍ମର ପତ୍ନୀ । ଆପଣ ପୂର୍ବଜନ୍ମରେ କାମଦେବ ଥିଲେ । ମୁଁ ଥିଲି ରତି । ଆପଣଙ୍କର ପ୍ରତୀକ୍ଷାରେହିଁ ମୁଁ ଏହି ସମ୍ବରାସୁର ପୁରରେ ଦିନ କାଟୁଥିଲି । ଏବେ ସୁଯୋଗ ଆସିଛି, ଆପଣ ଏହି ଦୁଷ୍ଟ ସମ୍ବରାସୁରକୁ ହତ୍ୟା କରନ୍ତୁ ।"

ପ୍ରଦ୍ୟୁମ୍ନ କହିଲେ—"ତାହାହେଲେ ମୁଁ ଏହାକୁ କିପରି ମାରିବ ? ଏହା ସହିତ କିପରି ଯୁଦ୍ଧ କରିବ ?"

ମାୟାବତୀ ଭୟଭୀତ ହୋଇ କହିଲେ—"ନା, ମହାରାଜ ! ଆପଣ ସେପରି କରନ୍ତୁ ନାହିଁ । ଏ ଅସୁର ଅତ୍ୟନ୍ତ ଦୁର୍ଦ୍ଦମ୍ୟ ଓ ଦୁର୍ଜୟ । ଯୁଦ୍ଧରେ ଏହାକୁ କେହି ପରାସ୍ତ କରି ପାରିବେ ନାହିଁ । ସେ ବଡ଼ ମାୟାବୀ । ସେହି ମହାମାୟାଙ୍କର ଆଶ୍ରିତ । ତାଙ୍କୁ ଛାଡ଼ି ସେ ଅନ୍ୟ କୌଣସିଠାରେ ରହେ ନାହିଁ । ତାହାର ମୃତ୍ୟୁଭେଦ ଆପଣ ମୋଠାରୁ ଯଦି ଶିଖି ନେବେ, ତାହାହେଲେ ଆପଣ ତାକୁ ଅକ୍ଲେଶରେ ମାରି ପାରିବେ । ଅନ୍ୟଥା ଆପଣ ତାହା ସହିତ ଶତ ଶତ ବର୍ଷ ଯୁଦ୍ଧ କଲେ ମଧ୍ୟ ତାକୁ ଜୟକରି ପାରିବେ ନାହିଁ । ଏହାକୁ ମାରି ଆପଣ ମୋତେ ଦ୍ୱାରକାପୁରକୁ ନେବାର ବ୍ୟବସ୍ଥା କରନ୍ତୁ । ଆପଣଙ୍କର ପୁତ୍ର ସ୍ନେହାକୁଳା ମାତା ଆପଣଙ୍କ ବିରହରେ ନିରନ୍ତର କୁରରୀ ପରି ଅତି ବ୍ୟାକୁଳ ହୋଇ ବିଳାପ କରୁଛନ୍ତି । ଆପଣ ମାତା ନିକଟରେ ଯାଇ ପହଞ୍ଚିବା ମାତ୍ରେ ସେ ଅତ୍ୟନ୍ତ ଆନନ୍ଦିତ ହେବେ । ଯଦି ଏହା କରିପାରିବେ, ତାହା ହେଲେ ଆପଣଙ୍କର ପ୍ରବଳ ଶତ୍ରୁ ମାୟାଦ୍ୱାରା ଆପଣ ମାରି ମାରିବେ ।"

ପ୍ରଦ୍ୟୁମ୍ନ କହିଲେ—"ତାହାହେଲେ ଠିକ୍ ଅଛି । ସେହି ମହାମାୟାଙ୍କ ମନ୍ତ୍ର ମୋତେ ତୁମେ ପ୍ରଦାନ କର । ତୁମର ସମ୍ମତି ଓ ସହାୟତାରେ ହିଁ ମୁଁ ସେହି ଅସୁରକୁ ବିନାଶ କରି ପାରିବି ।"

ସୂତ କହିଲେ—"ମୁନିଗଣ ! ପ୍ରଦ୍ୟୁମ୍ନଙ୍କ କଥାରେ ଏକମତ ହୋଇ ମାୟାବତୀ ତାଙ୍କୁ ମହାମାୟାଙ୍କ ମନ୍ତ୍ର ବତାଇ ଦେଲେ । ପ୍ରଦ୍ୟୁମ୍ନ ଏଥର ନିର୍ଭୟରେ ସେହି ମନ୍ତ୍ରବଳରେ ଅସୁରର ସମସ୍ତ ମାୟା ବ୍ୟର୍ଥ କରିବାରେ ସକ୍ଷମ ହେଲେ ।

ସମ୍ବରାସୁର ନିଶ୍ଚିତ ଥିଲା ଯେ, ସେ କୃଷ୍ଣତନୟ ପ୍ରଦ୍ୟୁମ୍ନଙ୍କୁ ମାରି ଦେଇଛି । ତେଣୁ ସେ ନିଜର ମୃତ୍ୟୁକୁ ଜୟକରି ସାରିଛି । ପ୍ରଦ୍ୟୁମ୍ନ ମୃତ୍ୟୁବରଣ କରିଥିବାରୁ ଆଉ ତାକୁ କେହି ମାରି ପାରିବେ ନାହିଁ । ସେ କିପରି ବା ଜାଣନ୍ତା, ମାୟାବତୀ ଯେଉଁ ସୁନ୍ଦର ବାଳକକୁ ତା ଘରେ ପାଳନ କରୁଛି ସେହି ହିଁ ତାହାର ମୃତ୍ୟୁର କାରଣ ପ୍ରଦ୍ୟୁମ୍ନ ?

ପ୍ରଦ୍ୟୁମ୍ନ ଏତେ ସୁନ୍ଦର ଥିଲେ ଯେ, ତାଙ୍କୁ ଯିଏ ଦେଖୁଥିଲା ସେ ବିମୋହିତ ହୋଇଯାଉଥିଲା । ସମ୍ବରାସୁର ମଧ୍ୟ ତାଙ୍କୁ ଦେଖୁଥିଲା ଓ ଅତ୍ୟନ୍ତ ଭଲପାଉଥିଲା । ଦିନେ ସେ ସମ୍ବରାସୁର ନିକଟକୁ ଗଲେ ଓ ତାକୁ ରଗାଇ ତା ସହିତ ଯୁଦ୍ଧ କରିବାକୁ ଚାହିଁଲେ । ମନୁଷ୍ୟ ଯେତେ ଶାନ୍ତ ହୋଇଥାଉ ନା କାହିଁକି, ତାକୁ ଯଦି କୌଣସି ସତ ମିଛ କଥା କହି ଗାଳିଗୁଲଜ କରି ଚଡ଼ାଇ ଦିଆଯାଏ, ତେବେ ସେ ଅତ୍ୟନ୍ତ ରାଗିଯାଏ । ତାମସିକ ପ୍ରକୃତିର ଲୋକଙ୍କ କଥା ଅବା କଣ କୁହାଯାଇ ପାରେ ? ପ୍ରଦ୍ୟୁମ୍ନ ତା ନିକଟକୁ ଯାଇ ପ୍ରଥମେ କହିଲେ—"ରେ ପାପୀ ଅସୁର ! ତୁ ଅତି ନୀଚ ସ୍ୱଭାବର । ଅତି କାମୀ ଓ କ୍ରୂର । ତୁ ମୋ ସ୍ତ୍ରୀକୁ ତୋ ଘରେ ଆଣି କାହିଁକି ରଖିଛୁ ?" ଏହା ଶୁଣିବା ମାତ୍ରେ

ସମ୍ବରାସୁର ରାଗିଗଲା ଓ କହିଲା—"ଯ, ଏଠୁ ପଳା, ନିର୍ଲଜ କେଉଁଠିକାର । ନିଜର ମା ତାଙ୍କୁ ପତ୍ନୀ ବୋଲି କହିବାରେ ତୋତେ ଲଜ୍ଜାବୋଧ ହେଉ ନାହିଁ ? ତୁ ଜାଣୁ ନା ମୁଁ କିଏ ? ମୁଁ ଏବେ ତୋର ତଳର ତରବାରୀଗ୍ର କନ୍ଧାକୁ ଲକ୍ଷ୍ୟ କରି ଆସି ତତାଇ ଉପାଡ଼ି ଆଣିବି । ତାକୁ ମାଛ କୁକୁରଙ୍କ ଆଗରେ ଫିଙ୍ଗି ଦେବି । ରେ ମୂର୍ଖ ! ତୁ ମୋର ଶକ୍ତି କେତେ ଜାଣି ନାହୁଁ । ମୁଁ ରାକ୍ଷସରାଜେଶ୍ୱର । ଅଜର ଓ ଅମର । ଯୁଦ୍ଧରେ ମୋତେ କୌଣସି ଦେବତା ବି ହରାଇ ପାରନ୍ତି ନାହିଁ ।"

ଏହାଶୁଣି ପ୍ରଦ୍ୟୁମ୍ନ କ୍ରୋଧ ପ୍ରକାଶ କରି କହିଲେ—"ରେ ମୃତ୍ୟୁମୁଖର ପଥିକ ! କାହିଁକି ତୁ ଏତେ ବଡ଼ ବଡ଼ କଥା କହୁଛୁ । ଦେବତାଙ୍କୁ ଜିଣିବା ତ ଦୂରର କଥା, ତୁ ପ୍ରଥମେ ମୋ ସହିତ ଯୁଦ୍ଧ କରି ମୋତେ ଆଗ ପରାଜିତ କର ତ ଦେଖି । ମୁଁ ତୋତେ ଯମାଳୟକୁ ପଠାଇ ଦେବି । ମୋ ଠାରୁ ତୁ ବର୍ତ୍ତିଯାଇ ପାରିବୁ ନାହିଁ । ଯଦି ତୋର ବିଶ୍ୱାସ ନ ହେଉଛି, ତେବେ ଆ, ତୋର ମୋର ବଳ କଷାକଷି ହେବ ।"

ସମ୍ବରାସୁର ସଙ୍ଗେ ସଙ୍ଗେ ଖଡ୍ଗ ଧାରଣ କରି କହିଲା—"ଆଚ୍ଛା, ତାହାହେଲେ ପ୍ରସ୍ତୁତ ହୋଇ ଯା । ତୋର ଅଶିଷ୍ଟତା ପାଇଁ ଏବେ ମୁଁ ତୋତେ ଉପଯୁକ୍ତ ଫଳ ଚଖାଇବି ।"

ପ୍ରଦ୍ୟୁମ୍ନ ମଧ୍ୟ କହିଲେ—ତେବେ ପ୍ରସ୍ତୁତ ହୋଇଯା ।"

ସୂତ କହିଲେ—"ମୁନିଗଣ ! ବାସୁଦେବ ନନ୍ଦନ ପ୍ରଦ୍ୟୁମ୍ନଙ୍କର ଏପରି କଠୋର ଅସହ୍ୟ ବଚନ ଶୁଣି ଦେହ ସମ୍ବରାସୁର କ୍ରୋଧିତ ହୋଇ ପାଦ କଚାଡ଼ି ସର୍ପଭଳି ଲହ ଲହ ଜିଭ କରି ହସ୍ତରେ ଗଦା ଉଠାଇ ପ୍ରଦ୍ୟୁମ୍ନଙ୍କ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଗଲା । ଏଣେ ପ୍ରଦ୍ୟୁମ୍ନ ମଧ୍ୟ ଆଗରୁ ସାବଧାନ ହୋଇ ଯାଇଥିଲେ । ପ୍ରଥମେ ଅସୁର ଆପଣା ଦାନ୍ତ କଡ଼ମଡ଼ କରି ନିଜର ସମସ୍ତ ଶକ୍ତି ପ୍ରୟୋଗ କରି ଗଦାଟିକୁ ବୁଲାଇ ପ୍ରଦ୍ୟୁମ୍ନଙ୍କ ଉପରକୁ ଛାଡ଼ିଦେଲା ଓ ଚିତ୍କାର କରି କହିଲା—"ପିଲାଟା ମରିଗଲାରେ ମରିଗଲା ।"

ପ୍ରଦ୍ୟୁମ୍ନ ତ ପୂର୍ବରୁ ଖୁବ୍ ସାବଧାନ ଥିଲେ । ସେ ଯେତେବେଳେ ଦେଖିଲେ ଅସୁରର ଗଦା ଅଗ୍ନିଭଳି ଜାଜ୍ୱଲ୍ୟମାନ ହୋଇ ତାଙ୍କ ଆଡ଼କୁ ଆସୁଛି, ସେତେବେଳେ ସେ ନିଜର ଗଦାଘାତରେ ତାହାକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେଲେ । ତାହା ପରେ ସେ ନିଜ ଗଦାକୁ ଅସୁର ଉପରକୁ ନିକ୍ଷେପ କଲେ । ଅସୁର ତ ମାୟାବୀ ଥିଲା । ମାୟାସୁରର ସେ ଶିଷ୍ୟ ଥିଲା, ତେଣୁ ନିଜର ଆସୁରୀ ମାୟା ପ୍ରଭାବରେ ସେ ଆକାଶକୁ ଉଡ଼ିଗଲା ଓ ସେଠାରୁ ପ୍ରଦ୍ୟୁମ୍ନଙ୍କ ଉପରକୁ ଅସ୍ତ୍ର ଶସ୍ତ୍ର ବର୍ଷା କରିବାକୁ ଲାଗିଲା । ସେ ଯେଉଁ ଗୋଳାମାନ ଫିଙ୍ଗୁଥିଲା, ତାହା ତଳକୁ ଖସିବା ମାତ୍ରେ ଫାଟି ଯାଉଥିଲା ଓ ତହିଁରୁ ଅସଂଖ୍ୟ ଅସ୍ତ୍ର

ବାହାର ପଡ଼ୁଥିଲା । ପ୍ରଦ୍ୟୁମ୍ନ ଦେଖିଲେ ଅସୁରର ଏପରି ମାୟାକୁ ସେ ନିଜ ଶକ୍ତିଦ୍ୱାରା ପରାହତ କରି ପାରିବେ ନାହିଁ । ତେଣୁ ସେ ମାୟାବତୀଙ୍କ ପ୍ରଦତ୍ତ ମହାମାୟାଙ୍କ ମନ୍ତ୍ର ପାଠକରି ଅସ୍ତ୍ର ପ୍ରୟୋଗ କଲେ । ପ୍ରଦ୍ୟୁମ୍ନଙ୍କର ଅମୋଘ ଅସ୍ତ୍ର ପ୍ରୟୋଗ ଦେଖି ସମ୍ବରାସୁର ଅତ୍ୟନ୍ତ ଉଦ୍‌ଘାତ ହେଲା । ସେ ଯକ୍ଷ, ରାକ୍ଷସ, ପିଶାଚ, ସର୍ପ, ଗନ୍ଧର୍ବ ଓ ଅସୁର ଆଦିଙ୍କ ମାୟା ବିଦ୍ୟାରେ ପାରଙ୍ଗମ ଥିଲା । ତେଣୁ ସେ ସମସ୍ତ ଅସ୍ତ୍ର ପ୍ରୟୋଗ କଲା । କିନ୍ତୁ ମାୟାବତୀଙ୍କ ପ୍ରଦତ୍ତ ମହାମାୟା ମନ୍ତ୍ରଦ୍ୱାରା ନିବାରିତ ହେଲେ ଅସୁରର ବିଦ୍ୟା ବ୍ୟର୍ଥ ହୋଇଗଲା । ଏହା ଦେଖି ଅସୁର ଭୟରେ ଥରିବାକୁ ଲାଗିଲା । ଏହି ଅବସରରେ ପ୍ରଦ୍ୟୁମ୍ନ ତୀକ୍ଷ୍ଣ ଖଡ୍ଗ ବାହାର କରି ସମ୍ବରାସୁରର କିରୀଟ କୁଣ୍ଡଳ ମଣ୍ଡିତ ଶିରକୁ ଗଣ୍ଡିରୁ ଅଲଗା କରି ଦେଲେ । ସେ ମରିଯିବାରୁ ସମସ୍ତ ଅସୁର ରୋଦନ କରିବାକୁ ଲାଗିଲେ । ଦେବତାମାନେ ଆକାଶରୁ ପ୍ରଦ୍ୟୁମ୍ନଙ୍କ ଉପରେ ପୁଷ୍ପବୃଷ୍ଟି କଲେ । ପ୍ରଦ୍ୟୁମ୍ନ ଅତ୍ୟନ୍ତ ପ୍ରସନ୍ନ ହୋଇ ନିଜର ପ୍ରିୟା ମାୟାବତୀଙ୍କ ସମ୍ମୁଖକୁ ଆସି ତାଙ୍କୁ କହିଲେ—"ପ୍ରିୟେ, ଏଥର ଦ୍ୱାରକାପୁରୀ ଯିବା । ସେଠାରେ ମାତା ପିତାଙ୍କୁ ଦର୍ଶନ କରିବା ।"

ଏହା ଶୁଣି ମାୟାବତୀ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ସଙ୍ଗେ ସଙ୍ଗେ ଭଲ ଭଲ ବସ୍ତ୍ର ଆଭୂଷଣ ପରିଧାନ କରି ପ୍ରଦ୍ୟୁମ୍ନଙ୍କ ସହିତ ଦ୍ୱାରକା ଯିବା ପାଇଁ ପ୍ରସ୍ତୁତ ହୋଇଗଲେ ।

ସୂତ କହିଲେ—"ମୁନିଗଣ ! ପାପୀ ସମ୍ବରାସୁରକୁ ଏହିପରି ଭାବରେ ବଧକରି ନିଜର ପୂର୍ବଜନ୍ମର ପ୍ରିୟାକୁ ସଙ୍ଗରେ ନେଇ ପ୍ରଦ୍ୟୁମ୍ନ ରଥରେ ବସି ଆକାଶ ମାର୍ଗରେ ଦ୍ୱାରକାପୁରୀ ଯାତ୍ରା କଲେ । ଏହା ପରେ ଦ୍ୱାରକା ପୁରୀରେ ଯେପରି ଭାବରେ ଆନନ୍ଦ ଉତ୍ସବ ହେଲା, ସେ କଥା ମୁଁ ଆପଣମାନଙ୍କୁ ପରବର୍ତ୍ତୀ ପ୍ରସଙ୍ଗରେ କହିବି ।

## ଛପ୍‌ପୟ

କହା ସୁନୀ କନ୍ତୁ ଭଇ ଯୁଦ୍ଧକୀ କୌତକ ଆୟୀ ।
ହ୍ୱୈ କେଂ ଦୋଉ କ୍ରୂପିତ ପରସ୍ପର ଗଦା ଚଲାଈ ॥
ପୁନି ମାୟାତେଂ ଲଡ଼େ ଅସୁର ନଭଗୟୋ ଉଡ଼ାଈ ।
ମାୟା କୀହ୍ନୀଂ ବହୁତ ଶ୍ୟାମ ସୁତକୁଁ ସୁଧି ଆଈ ॥
ସତ୍ୱମୟୀ ମାୟା ମହା, ଛୋଡ଼ୀ ଶମ୍ବର ମର ଗୟୋ ।
ଅସୁର ସକଲ ଦୁଃଖିତ ଭୟେ, ସୁରଗନ ହିୟ ଅତି ସୁଖ ଭୟୋ ॥

●

# ପ୍ରଦ୍ୟୁମ୍ନଙ୍କ ଦ୍ୱାରକା ଆଗମନ

ଯଂ ବୈ ମୁହୁଃ ପିତୃସରୂପ ନିଜେଶଭାବା—
ସ୍ତନ୍ମାତରୋ ଯଦଭଜନ୍ ରହରୂଢ଼ଭାବାଃ ।
ଚିତ୍ରଂ ନ ତତ୍ଖଲୁ ରମାସ୍ପଦ ବିମ୍ବବିମ୍ବେ—
କାମେ ସ୍ମରେଽକ୍ଷବିଷୟେ କିମୁତାନ୍ୟନାର୍ଯ୍ୟଃ ॥

( ଶ୍ରୀ: ଭା: ୧୦ସ୍କ, ୫୫ ଅ: ୪୦ ଶ୍ଳୋକ )

## ଛପ୍ପୟ

ମାୟାବତୀ ଲେଇ ସଙ୍ଗ ଚଳେ ପ୍ରଦ୍ୟୁମ୍ନ ମୁଦିତ ମନ ।
ଶୋଭିତ ନଭ ମହଁ ମନହୁଁ ଦାମିନୀ ଦମକତ ସହଘନ ।
ପହୁଁଚ ଦ୍ୱାରକା ଗଏଉ ଭବନ, ସବନୀ ସକୁଚାୟୀଂ ।
କୃଷ୍ଣ ସଦୃଶ ନର ନିରଖି କାମବଶ ଭଇଂ ଲଜାୟୀଂ ॥
ତବ ଆଏଉ ଘନଶ୍ୟାମ ତହଁ, ନାରଦତେଂ ସବ ଜାନିକେଂ ।
ଭଇଂ ମୁଦିତ ଅତି ରୁକ୍ମିନୀ, ନିଜ ସୁତକୁଁ ପହିଚାନିକେଂ ॥

ସମୟ ସମୟରେ ଅସମ୍ଭବ ଆଶା ମଧ୍ୟ ସମ୍ଭବ ହୋଇଯାଏ । ଯାହା ପାଇଁ ଆମେ ଆଶା ତ୍ୟାଗ କରି ଦେଇଥାଉଁ, ଯାହା ପାଇଁ ଆମ ହୃଦୟ ମଧ୍ୟରେ କ୍ଷୀଣ ଆଶା ରହିଥାଏ, ସେ ଯଦି ସହସା ଆସି ପହଞ୍ଚିଯାଏ, ତାହାହେଲେ ପ୍ରଥମେ ତ ସହଜରେ ଆମେ ଆଖିକୁ ବିଶ୍ୱାସ କରିପାରୁ ନାହିଁ । ଯଦି କେହି ବିଶ୍ୱାସ କରାଇଦିଏ, ତାହାହେଲେ ତାକୁ ପାଇ ଆମର ହୃଦୟ ଯେପରି ଆନନ୍ଦରେ ଭରିଯାଏ, ତାହା ବାକ୍ୟଦ୍ୱାରା ପ୍ରକାଶ କରିବା ଅସମ୍ଭବ । ଯେଉଁ ବସ୍ତୁ ସହଜରେ, ବିନା ପରିଶ୍ରମରେ ସ୍ୱତଃ ମିଳିଯାଏ, ତାହା ପ୍ରାପ୍ତ ହେବା ମାତ୍ରେ ସେତେ ପ୍ରସନ୍ନତା ନ ହୁଏ, ବହୁଦିନ ପ୍ରତୀକ୍ଷା କଲା ପରେ ଯେଉଁ ବସ୍ତୁ ପ୍ରାପ୍ତ ହୋଇଯାଏ, ସେଥିରେ ଅବର୍ଣ୍ଣନୀୟ ସୁଖ ମିଳିଥାଏ । ମନେ କରନ୍ତୁ କାହାର ପୁତ୍ର ବିଦେଶ ଯିବା ସମୟରେ କହିଗଲା—ମୁଁ ମାସକ ପରେ ନିଶ୍ଚୟ ଫେରି ଆସିବି । ମାସକ ପରେ ଫେରି ଆସିବାଟା କୌଣସି ବଡ଼ କଥା ନୁହେଁ । କିନ୍ତୁ କାହାର

ପ୍ରତ୍ୟାବର୍ତ୍ତନ ହେବାରେ ଯେତେ ବିଳମ୍ବ ହେଉଥାଏ, ସେତେ ଅଧିକ ପ୍ରତୀକ୍ଷା କରିବାକୁ ପଡେ଼ ଓ ବେଳୁବେଳ ଉତ୍କଣ୍ଠା ବଢ଼ିଯାଇଥାଏ ।। ଯେତେ ଅଧିକ ଉତ୍କଣ୍ଠା ବଢ଼ୁଥାଏ, ସେତେ ଆନନ୍ଦ ମଧ୍ୟ ଲାଭ ହେଉଥାଏ ।

ସୂତ କହିଲେ—"ମୁନିଗଣ ! ବାସୁଦେବ ନନ୍ଦନ ପ୍ରଦ୍ୟୁମ୍ନ ଶମ୍ବରାସୁରକୁ ମାରି ଓ ନିଜର ପୂର୍ବ ଜନ୍ମର ପତ୍ନୀ ମାୟାବତୀଙ୍କୁ ସଙ୍ଗରେ ଧରି ଆକାଶ ମାର୍ଗରେ ଆସି ଦ୍ୱାରକାରେ ପହଞ୍ଚିଲେ । ବସ୍ତ୍ରାଭୂଷଣରେ ସୁସଜ୍ଜିତା ଗୌରବର୍ଣ୍ଣା ସ୍ତ୍ରୀଙ୍କ ସହିତ ଶ୍ୟାମବର୍ଣ୍ଣ-ବିଶିଷ୍ଟ ପ୍ରଦ୍ୟୁମ୍ନ ଏପରି ଶୋଭା ପାଉଥାଆନ୍ତି, ସତେ ଯେପରି ଆକାଶରେ ନୂତନ ଜଳଧର ଉପରେ ସୌଦାମିନୀ ଝଟକି ଉଠୁଥାଏ । ସେ ଦୁହେଁ ଆକାଶ ମାର୍ଗରୁ ଅବତରଣ କରି ପ୍ରଥମେ ରୁକ୍ମିଣୀଙ୍କର ବିଶାଳ ଅନ୍ତଃପୁରରେ ପଦାର୍ପଣ କଲେ । ସେତେବେଳେ ରୁକ୍ମିଣୀ ସେଠାରେ ସମସ୍ତ ରାଣୀମାନଙ୍କ ସହିତ ବସିଥିଲେ । ଭଗବାନ ରାଜସଭାକୁ ଯାଇଥିଲେ । ହଠାତ୍ ପ୍ରଦ୍ୟୁମ୍ନଙ୍କୁ ଦେଖି ରାଣୀମାନେ ତାଙ୍କୁ ଚିହ୍ନି ନ ପାରି ଲଜ୍ଜାବୋଧ କଲେ ଓ ମୁଣ୍ଡରେ ଓଢ଼ଣା ଟାଣି ଦେଲେ । ପ୍ରଦ୍ୟୁମ୍ନଙ୍କର ନବୀନ ନୀରଦ କାନ୍ତି ଯାହାଙ୍କୁ ଉଜ୍ଜ୍ୱଳ ଓ ପତଳା ରେଶମୀ ପୀତାମ୍ବର ଅତ୍ୟନ୍ତ ଶୋଭା ପାଉଥିଲା । ତାଙ୍କର ବାହୁଦ୍ୱୟ ବିଶାଳ ଥିଲା । କମଳ ସଦୃଶ ବିକଶିତ ଅରୁଣ ବର୍ଣ୍ଣର ବିଶାଳ ଆକର୍ଷକ ନେତ୍ର ଥିଲା । ତାଙ୍କର ମୁଖାରବିନ୍ଦରେ ସର୍ବଦା ମନ୍ଦ ମନ୍ଦ ମନୋହର ହସ ବିକଶିତ ହେଉଥିଲା । ତାଙ୍କ କୃଷ୍ଣ କୁଞ୍ଚିତ କେଶ ଶିର ଦେଶର ଶୋଭା ବର୍ଦ୍ଧନ କରୁଥିଲା । ତାଙ୍କର ଭ୍ରୂଲତା କୁଟିଳ ଓ ଧନୁଷାକାର ଥିଲା । ଏହି ସମସ୍ତ ଲକ୍ଷଣରେ ଯୁକ୍ତ ହୋଇଥିବାରୁ ଅନ୍ତଃପୁରର ସମସ୍ତ ରାଣୀ ପ୍ରଥମେ ତ ତାଙ୍କୁ ଶ୍ରୀକୃଷ୍ଣ ବୋଲି ଭାବିଥିଲେ । ଏଥିପାଇଁ ସେମାନେ ସମ୍ଭ୍ରମରେ ଓଢ଼ଣା ଟାଣି ନିଜ ନିଜକୁ ଲୁଚାଇ ଦେଇଥିଲେ । ବଡ଼ଭଉଣୀ ଆଗରେ ସାନ ଭଉଣୀମାନେ ନିଜର ପତି ପାଖରେ ଥିଲେ ଲଜ୍ଜା କରିଥାଆନ୍ତି । ପତିଙ୍କ ସହିତ କଥାବାର୍ତ୍ତା ହୁଅନ୍ତି ନାହିଁ । ଏଥିପାଇଁ ଭଗବାନଙ୍କର ଅନ୍ୟ ରାଣୀମାନେ ଏଣେ ତେଣେ ଚାଲିଗଲେ । ରୁକ୍ମିଣୀ ତ ସମସ୍ତଙ୍କଠାରୁ ବଡ଼ ଥିଲେ, ତେଣୁ ସେ ସେଠାରୁ ଅନ୍ୟତ୍ର ଗଲେ ନାହିଁ । ସେ ପୂର୍ବରୁ ଜାଣି ପାରିଥିଲେ ଯେ, ଏ ଶ୍ରୀକୃଷ୍ଣ ନୁହନ୍ତି । ତେଣୁ ହସି ହସି ପଚାରିଲେ—"ଆରେ ! ତୁମ୍ଭେମାନେ କାହିଁକି ଯାଉଛ ? ତୁମ୍ଭେମାନେ ନିଜର ପତିଙ୍କୁ ବି ଏ ପର୍ଯ୍ୟନ୍ତ ଚିହ୍ନି ପାରି ନାହଁ ? ଏ ତୁମ୍ଭମାନଙ୍କର ପତି ନୁହନ୍ତି ! ଏ ଅନ୍ୟ କୌଣସି ଏକ ପୁରୁଷରତ୍ନ ।" ଏହି କଥା ଶୁଣିବା ମାତ୍ରେ ରାଣୀମାନେ ଲଜ୍ଜିତା ହୋଇ ପୁନର୍ବାର ଫେରି ଆସିଲେ । ସେମାନେ ଦେଖିଲେ ସେ ଏକ କିଶୋରବୟସ୍କ କୁମାର । ତାଙ୍କ ସହିତ ଏକ ସୁନ୍ଦରୀ ସ୍ତ୍ରୀ ନିର୍ଭୟରେ ତାଙ୍କ ପାଖରେ ଠିଆ ହୋଇଛନ୍ତି । ସମସ୍ତେ ଚିନ୍ତା କରୁଥିଲେ—"ତାଙ୍କର ଚାଲିଚଳନ ରଙ୍ଗଢ଼ଙ୍ଗ ସବୁ ଭଗବାନଙ୍କ ସଦୃଶ ଓ ତାଙ୍କ ଆକୃତି ଠିକ୍ ଭଗବାନଙ୍କ ସଦୃଶ ସୁନ୍ଦର ଆକୃତି ।"

ସୂତ କହିଲେ—"ମୁନିଗଣ ! ରକ୍ତର ପ୍ରଭାବ ବଡ଼ ବିଚିତ୍ର । ଯାହାର ଯାହା ସହିତ ରକ୍ତ ସମ୍ପର୍କ ଥାଏ, (ଯେପରି କି ମାତା, ପିତା, ଭାଇ, ଭଉଣୀ, ପୁତ୍ର କନ୍ୟା ଆଦି) ତାଙ୍କୁ ଦେଖିବା ମାତ୍ରେ ହୃଦୟରେ ସ୍ୱତଃ ଆତ୍ମୀୟତା ଭରିଯାଏ । ସେ ପରିଚିତ ହୁଅନ୍ତୁ ଅବା ଅପରିଚିତ ହୁଅନ୍ତୁ, ତାଙ୍କୁ ଦେଖିବା ମାତ୍ରେ ହୃଦୟରେ ଏକ ବିଚିତ୍ର ଭାବ ଉତ୍ପନ୍ନ ହୋଇଯାଏ । ଏଥିପାଇଁ ରୁକ୍ମିଣୀ ପ୍ରଦ୍ୟୁମ୍ନଙ୍କୁ ଦେଖିବାମାତ୍ରେ ପୁତ୍ର ସ୍ନେହରେ ଚମକ୍ରିତ ହୋଇଗଲେ । ସୂତିକା ଗୃହରୁ ଅପହୃତ ହୋଇଥିବା ତାଙ୍କ ପୁତ୍ର କଥା ହଠାତ୍ ସ୍ମରଣ ଆସିଲା । ସେ ଚିନ୍ତା କରିବାକୁ ଲାଗିଲେ—"ମୋର ଯେଉଁ ପୁତ୍ର ହୋଇଥିଲା, ତାହାର ମୁଖାକୃତି ତ ଠିକ୍ ଏହିପରି ! କିଏ ତାକୁ ସୂତିକା ଘରୁ ଅପହୃତ କରିନେଲା ମୋତେ ତ ତାହା ଜଣା ନାହିଁ । ଯଦି ମୋ ଭାଗ୍ୟରେ ଥିବ, ସେ ଯଦି କୌଣସିମତେ ବଞ୍ଚି ରହିଥିବ, ତାହାହେଲେ ଠିକ୍ ଏତିକି ବଡ଼ ହୋଇସିବଣି । କିନ୍ତୁ ଏ ଯୁବକ କିଏ, କାହାର ପୁତ୍ର, କେଉଁ ଭାଗ୍ୟଶାଳିନୀ ମାତାଙ୍କଠାରୁ ଏହାଙ୍କର ଜନ୍ମ ଓ ଏହାଙ୍କୁ ଏପରି ସୁନ୍ଦରୀ ସ୍ତ୍ରୀ କେଉଁଠାରେ ମିଳିଲା, ମୋତେ ଏ ସବୁ ବିଷୟ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି ଯେ, ଏହାଙ୍କୁ ଶ୍ରୀକୃଷ୍ଣଙ୍କ ରୂପ କିପରି ମିଳିଲା ? ଏହାଙ୍କର ଆକୃତି ଅଚ୍ୟୁତଙ୍କ ଆକୃତି ସହିତ ଠିକ୍ ମିଳି ଯାଉଛି । ଏହାଙ୍କ ଚାଲିଚଳନ ରଙ୍ଗଢ଼ଙ୍ଗ ମଧ୍ୟ ଠିକ୍ ତାଙ୍କର ପରି । ରଙ୍ଗ, ରୂପ, ସ୍ୱଭାବ ବ୍ୟବହାର, ଅଙ୍ଗ ଗଠନ ଓ ହାବଭାବ ସବୁ ତ ଠିକ୍ ଘନଶ୍ୟାମଙ୍କ ଭଳି । ଏ ମୋର ପୁତ୍ର ସେହି ପ୍ରଦ୍ୟୁମ୍ନ ନା କଣ ? ମୋ ପ୍ରାରବ୍ଧର ସୁକୃତ ବଶତଃ ସେ ଆଜି ଏତେ ବଡ଼ ହୋଇ ମୋ ପାଖକୁ ପୁଣି ଫେରି ଆସିଛନ୍ତି କଣ ? ଯଦି ଏହା ସତ ନ ହୋଇଥାଏ, ତାହାହେଲେ ଏହାଙ୍କ ପ୍ରତି ମୋର ମନରେ ସହଜ ସ୍ୱାଭାବିକ ବାତ୍ସଲ୍ୟ ସ୍ନେହ କେଉଁ କାରଣରୁ ଉଦୟ ହେଉଛି ? ମୋର ବାମ ଆଖିପତା କାହିଁକି ଡେଉଁଛି ? ଏହି ସମସ୍ତ ଶୁଭସୂଚକ ଶକୁନରୁ ଏହା ଜଣାପଡ଼ୁଛି ଯେ ଆଜି ମୋର ଅତ୍ୟନ୍ତ ସ୍ନେହର ମିଳନ ସୁଖ ନିଶ୍ଚୟ ମିଳିବ ।

ପ୍ରଦ୍ୟୁମ୍ନଙ୍କୁ ଦେଖି ରୁକ୍ମିଣୀ ଏହିସବୁ ବିଷୟ ଚିନ୍ତା କରୁଥିବା ସମୟରେ ସେଠାରେ ବସୁଦେବ ଓ ଦେବକୀଙ୍କ ସହିତ ଭଗବାନ ଶ୍ରୀକୃଷ୍ଣ ହଠାତ୍ ଆସି ପହଞ୍ଚିଗଲେ । ସର୍ବଜ୍ଞ ଭଗବାନଙ୍କୁ ତ କୌଣସି କଥା ଅଜଣା ନୁହେଁ, ସେ ସବୁକଥା ପୂର୍ବରୁ ଜାଣିଥିଲେ । ତେଣୁ ସେ ସେଠାକୁ ଆସି କିଛି କହି ନଥିଲେ । ସେ କିଛି ନ ଜାଣିଲା ଭଳି ଆଶ୍ଚର୍ଯ୍ୟ ଦୃଷ୍ଟିରେ ପ୍ରଦ୍ୟୁମ୍ନଙ୍କ ଆଡ଼କୁ ବାରମ୍ବାର ଚାହିଁବାକୁ ଲାଗିଲେ ଓ ପଚାରିଲେ—"ଏ ପିଲା କିଏ ? କେଉଁଠାରୁ ଆସିଛି ?" ସମସ୍ତେ ନୀରବ ଥିଲେ ! ପ୍ରଦ୍ୟୁମ୍ନ ମଧ୍ୟ କିଛି କହୁ ନଥିଲେ । ସେ କେବଳ ନତଶିର ହୋଇ ଠିଆ ହୋଇଥିଲେ । ସେହି ସମୟରେ ବୀଣା ବଜାଇ ବଜାଇ, ହରି ଗୁଣ ଗାଇ ଗାଇ ନାରଦ ସେଠାରେ ଆସି ପହଞ୍ଚିଲେ । ନାରଦଙ୍କୁ ଦେଖିବା ମାତ୍ରେ ଭଗବାନ ହସି ହସି କହିଲେ—"ଆସନ୍ତୁ ଦେବର୍ଷେ !"

ନାରଦ ପଚାରିଲେ—"ମହାରାଜ ! ଆଜ କେଉଁଥି ପାଇଁ ପୁରବାସୀଙ୍କର ସମସ୍ତ ଲୋକ ଏଠାରେ ଏକତ୍ରିତ ହୋଇଛନ୍ତି ? ଆପଣ କାହିଁକି ଏପରି ଆଶ୍ଚର୍ଯ୍ୟ ହୋଇ ଠିଆ ହୋଇଛନ୍ତି ?"

ଭଗବାନ କହିଲେ—"ନାରଦ ! ମୁଁ କହି ପାରିବି ନାହିଁ ଯେ, ଏ ଯୁବକଟି ସଙ୍ଗରେ ଏକ ସ୍ତ୍ରୀ ଲୋକକୁ ନେଇ କେଉଁଠାରୁ ଆସିଛନ୍ତି ? ତାଙ୍କୁ ଦେଖି ଆମେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଏଠାରେ ଠିଆ ହୋଇଅଛୁ । ତାଙ୍କୁ ପରିଚୟ ପଚାରୁଥିଲୁ । କିନ୍ତୁ ସେ କିଛି କହୁ ନାହାନ୍ତି ।"

ଏହା ଶୁଣି ନାରଦ କହିଲେ—"ମହାରାଜ ! ଆପଣ କାହିଁକି ଏପରି ନରଲୀଳା କରୁଛନ୍ତି ? କାହିଁକି ସମସ୍ତଙ୍କୁ ସନ୍ଦେହରେ ପକାଉଛନ୍ତି ? ଆପଣ କ'ଣ ଏହାଙ୍କୁ ଜାଣନ୍ତି ନାହିଁ ? ଏ ତ ଆପଣଙ୍କ ପ୍ରଥମ ପୁତ୍ର ପ୍ରଦ୍ୟୁମ୍ନ । ସମ୍ବରାସୁର ଏହାଙ୍କୁ ଅପହରଣ କରି ନେଇଥିଲା । ତାକୁ ମାରି ନିଜର ପୂର୍ବଜନ୍ମର ପତ୍ନୀଙ୍କୁ ସଙ୍ଗରେ ନେଇ ସେ ଆଜି ଆପଣଙ୍କ ଚରଣ ନିକଟକୁ ଫେରି ଆସିଛନ୍ତି ।" ଏହା କହି ମାତ୍ର ନାରଦ ପ୍ରଦ୍ୟୁମ୍ନଙ୍କୁ କହିଲେ—"ଭାଇ ! ତୁମେ ଯାଇ ତୁମର ମାତା ପିତା, ଦାଦା, ଖୁଡ଼ୀ ଓ ଅନ୍ୟାନ୍ୟ ଗୁରୁଜନଙ୍କୁ ଶୀଘ୍ର ପ୍ରଣାମ କର ।"

ଏହା ଶୁଣିବାମାତ୍ରେ ପ୍ରଦ୍ୟୁମ୍ନ ନବବଧୂଙ୍କ ସହିତ ଯାଇ ସମସ୍ତ ଗୁରୁଜନଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ପ୍ରତ୍ୟେକେ ପ୍ରଦ୍ୟୁମ୍ନଙ୍କୁ ଆଲିଙ୍ଗନ କରି ଆଶୀର୍ବାଦ କଲେ । ଯେପରି କେହି ମୃତ ସୁହୃଦ ପୁନରାୟ ଜୀବିତ ହୋଇ ଫେରିଆସିଲେ ତାକୁ ଦେଖି ସମସ୍ତ ନଗର ଲୋକ ଅତ୍ୟନ୍ତ ସୁଖୀ ହୁଅନ୍ତି, ପ୍ରଦ୍ୟୁମ୍ନଙ୍କୁ ଦେଖି ସମସ୍ତେ ଅତ୍ୟଧିକ ସୁଖୀ ହେଲେ । ପୁରବାସୀଗଣ ଯେତେବେଳେ ଏ ଶୁଭ ସମ୍ବାଦ ଶୁଣିଲେ, ସେମାନେ ଅତ୍ୟନ୍ତ ଆନନ୍ଦିତ ହୋଇ ପ୍ରଦ୍ୟୁମ୍ନ ଓ ନବବଧୂଙ୍କୁ ଦର୍ଶନ କରିବାକୁ ଆସିଲେ । ସେମାନେ କହିଲେ—"ପ୍ରାରବ୍ଧ କଥା କେହି କହି ନପାରେ । ଆମ୍ଭେମାନେ ସମସ୍ତେ ଭାବିଥିଲୁ ତ ବାଳକ ନିଶ୍ଚିତ ଭାବେ ମୃତ୍ୟୁବରଣ କରିଥିବ, କିନ୍ତୁ ସେ ପ୍ରାରବ୍ଧ ବଶତଃ ପୁନଶ୍ଚ ଫେରି ଆସିଛି । ଏହା ସତ୍ୟ ଯେ, ଭଗବାନ ଯାହାଙ୍କୁ ରକ୍ଷା କରନ୍ତି, ତାଙ୍କୁ କେହି ମାରି ପାରନ୍ତି ନାହିଁ ।"

କ୍ରମେ ସମସ୍ତ ନଗରର ଲୋକମାନେ ପ୍ରଦ୍ୟୁମ୍ନଙ୍କୁ ଦର୍ଶନ କରିବାକୁ ଆସି ତାଙ୍କ ମନୋହର ରୂପକୁ ଦେଖି ମୁଗ୍ଧ ହୋଇଗଲେ । ଯେତେ ଦେଖୁଥିଲେ ମଧ୍ୟ ସେମାନଙ୍କ ନୟନ ତୃପ୍ତ ହେଉ ନଥିଲା । ସେ ତ ସ୍ୱୟଂ କାମଦେବଙ୍କ ଅବତାର ଥିଲେ । ଯେତେ-ବେଳେ ତାଙ୍କ ମାତାମାନଙ୍କ ମନ ତାଙ୍କୁ ଦେଖି ଚଞ୍ଚଳ ହୋଇ ଉଠିଥିଲା ସେତେବେଳେ ଅନ୍ୟ ସ୍ତ୍ରୀ ଲୋକମାନଙ୍କ ସମ୍ବନ୍ଧରେ ଆଉ କଣ ଅବା କୁହାଯାଇ ପାରେ ? ସମସ୍ତ ଦ୍ୱାରକା

ନଗରରେ ମହା ସମାରୋହରେ ଆନନ୍ଦ ଉତ୍ସବ ହେବାକୁ ଲାଗିଲା । ସତେ ଯେପରି ଆଜ ପ୍ରଦ୍ୟୁମ୍ନଙ୍କର ଦ୍ୱିତୀୟ ଜନ୍ମ ହୋଇଛି । ରୁକ୍ମଣୀ ନିଜର ହୃଦୟର ପୁତ୍ରକୁ ପାଇ ଅତ୍ୟନ୍ତ ପ୍ରମୁଦିତ ହେଲେ । ସେ ବାରମ୍ବାର ପ୍ରଦ୍ୟୁମ୍ନଙ୍କୁ କୋଳାଗ୍ରତ କରି ପ୍ରେମାଶ୍ରୁ ବିସର୍ଜନ କରିବାକୁ ଲାଗିଲେ, ସତେ ଯେପରି ତାଙ୍କର ଆଜି ଅକ୍ଷୟ ଧନ ।"

ସୂତ କହିଲେ—"ମୁନିଗଣ ! ମୁଁ ଆପଣମାନଙ୍କୁ ରୁକ୍ମଣୀଙ୍କର ପ୍ରଥମ ପୁତ୍ର ବିଷୟରେ କହିଲି । ଆପଣମାନେ ଆଉ କଣ ଶୁଣିବାକୁ ଚାହୁଁଛନ୍ତି କୁହନ୍ତୁ ?"

ଶୌନକ କହିଲେ—ହେ ସୂତ ! ଷୋଳ ସହସ୍ର ଏକଶହ ଆଠ ରାଣୀମାନଙ୍କର ପୁତ୍ରଙ୍କ ନାମ ଯଦି କହିବା ସମ୍ଭବ ନୁହେଁ, ତାହାହେଲେ ଅଷ୍ଟପାଟରାଣୀଙ୍କ ମୁଖ୍ୟ ମୁଖ୍ୟ ପୁତ୍ରମାନଙ୍କର ନାମ ଆପଣ ଆମ୍ଭମାନଙ୍କୁ କୁହନ୍ତୁ ।

ସୂତ କହିଲେ—"ଠିକ୍ ଅଛି, ଏବେ ମୁଁ ଆଠରାଣୀଙ୍କ ପୁତ୍ରମାନଙ୍କ କଥା ଆପଣମାନଙ୍କୁ କହିବି ।"

## ଛପ୍ପୟ

ପହିଚନେ ବସୁଦେବ, ଦେବକୀ, ବଲ ହରି ସବନେ ।
ବଦନ ସବନେ ଜରେଯା ବଧୂ ସଙ୍ଗ ହରି ନନ୍ଦନନେ ॥
ଛାତୀ ତେଁ ଲପଟାଇ ନେହ ସବନେ ଦରସାୟୋ ।
ମୃତକ ସରସ ସୁତ ପାଇ ଵଟ୍ୟୋ ସବକୀ ଫୁଲସାୟୋ ॥
ବୈଦର୍ଭୀକେ ପ୍ରଥମ ସୁତ, ଶ୍ରୀ ପ୍ରଦ୍ୟୁମ୍ନ କଥା କହୀ ।
ଅବ ଆଠନକେ ସୁତନକୀ, ସୁନୋ କଥା ଜୋ କହରହୀ ॥



# ପ୍ରଦ୍ୟୁମ୍ନଙ୍କ ବିବାହ କଥା

ତାସାଂ ଯା ଦଶପୁତ୍ରାଣାଂ କୃଷ୍ଣସ୍ତ୍ରୀଣାଂ ପୁରୋଦିତାଃ ।
ଅଷ୍ଟୌ ମହିଷ୍ୟସ୍ତତ୍ପୁତ୍ରାନ୍ ପ୍ରଦ୍ୟୁମ୍ନାଦୀନ୍ ଗୃଣାମି ତେ ॥ *

(ଶ୍ରୀ. ଭା. ୧୦ ସ୍କ. ୬୧ ଅ. ୭ ଶ୍ଳୋକ)

## ଛପ୍ପୟ

ବୈଦର୍ଭୀଙ୍କେ ପୁତ୍ର ଭୟେ ପ୍ରଦ୍ୟୁମ୍ନ ଆଦି ଦଶ ।
ସତ୍ୟଭାମାଙ୍କେ ଭାନୁ ଆଦି ଜନ ପାୟୋ ଜଗ ଯଶ ॥
ଜାମ୍ବବତୀଙ୍କେ ସାମ୍ବ ସୁମିତ୍ରାଦିକ ସୁତ ଜାୟେ ।
ନାଗ୍ନଜିତୀଙ୍କେ ବୀର, ଚନ୍ଦ୍ର ବସ ଆଦି ସୁହାୟେ ॥
ଶ୍ରୀ କାଳିନ୍ଦୀଙ୍କେ ଭୟେ, ଶ୍ରୁତକବି ଆଦିକ ତନୟ ଦଶ ।
ଜନ ବୃଘୋଷ ଆଦିକ ତନୟ, ଲଦ୍ଧ୍ୟା ଲକ୍ଷ୍ମଣାଙ୍କେ ସୁଯଶ ॥

ଵସ୍ତୀର୍ଣ୍ଣ ସ୍ଥାନ ହୋଇଥିବା, ସୁନ୍ଦର ସୁସଜ୍ଜିତ, ସ୍ୱଚ୍ଛ ସୁଖକର ଭବନ ହୋଇଥିବା, ଧନରତ୍ନର ଅଭାବ ନଥିବା, ଉପଭୋଗୋପଯୋଗୀ ବସ୍ତୁ ପ୍ରଚୁର ମାତ୍ରାରେ ମିଳୁଥିବା ଓ ଲାଳନ ପାଳନର ଚିନ୍ତା ନ ଥିବା ଏପରି ଭାଗ୍ୟଶାଳୀ ଭବନରେ ବହୁତ ସୁନ୍ଦର ସୁନ୍ଦର ବାଳକ ଆନନ୍ଦରେ କ୍ରୀଡ଼ା କରୁଥାଆନ୍ତି । ହସି ଖେଳି ଏଣେ ତେଣେ ଦୌଡ଼ୁଥାଆନ୍ତି । ଏହି ଧରାବକ୍ଷ ହିଁ ସ୍ୱର୍ଗ । ସୁନ୍ଦର ସ୍ୱଚ୍ଛ ପୋଷାକ ପିନ୍ଧି ଛୋଟ ଛୋଟ ପିଲା

---

* ଏବେ ହୋ ଶୁଣ ନରପତି । କୃଷ୍ଣର ଯେତେକ ଯୁବତୀ ॥
ତହିଁରେ ଶ୍ରେଷ୍ଠ ଅଷ୍ଟ ନାରୀ । ରୁକ୍ମିଣୀ ଦେବୀ ଆଦିକରି ॥
ଏକ ଏକ କନ୍ୟାକେ ଦଶସୁତ । ତାହାଙ୍କ ଉଦରୁ ସମ୍ଭୂତ ॥
ଅଷ୍ଟ କନ୍ୟାଙ୍କ ପୁତ୍ର ଯେତେ । ପ୍ରମାଣୀ କହିବି ମୁଁ ତୋତେ ॥
ସେ କଥା ଶୁଣ ନରନାଥ । ... ... ...

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ, ୬୨ ଅ.)

ନିଜ ନିଜର ବାଳ ସୁଲଭ ଚପଳତାବଶତଃ କ୍ରୀଡ଼ା କରୁଥିବା ସମୟରେ ଖୁବ୍ ସୁନ୍ଦର ଦିଶୁ ଥାଆନ୍ତି । ଏହି ପ୍ରାଣୀ କ୍ରୀଡ଼ାପ୍ରିୟ । ସେମାନେ ଖେଳିବା ଭଲପାନ୍ତି । ଶ୍ରେଷ୍ଠ ପିଲାମାନେ ବିଭିନ୍ନ ପ୍ରକାର ଖେଳ ଖେଳି ଥାଆନ୍ତି । ବଡ଼ ହୋଇଗଲା ପରେ ଏହି ପୁଅ ଝିଅ-ମାନଙ୍କର ଯେତେବେଳେ ପିଲା ହୁଅନ୍ତି, ସେମାନେ ତାଙ୍କର ଖେଳନା ହୁଅନ୍ତି । ନିଜ ନିଜର ପିଲାମାନଙ୍କୁ ସେମାନେ ସଫା ସୁତରା କରାଇ, ଭଲ ଭଲ ପୋଷାକ ପିନ୍ଧାଇ, ଆଖିରେ କଜଳ ଲଗାଇଦେଇ ପିତା ମାତା ଅତ୍ୟନ୍ତ ପ୍ରସନ୍ନ ହୁଅନ୍ତି । ସେମାନେ ପିଲାମାନଙ୍କ ସହିତ ଖେଳ ଖେଳାଇ ନିଜ ନିଜକୁ ଭାଗ୍ୟବାନ୍ ବୋଲି ମନେକରନ୍ତି । ଗରିବ ଘରେ ବହୁ ସନ୍ତାନ ଜନ୍ମ ହେବା ଦାରିଦ୍ର୍ୟର ଲକ୍ଷଣ । କିନ୍ତୁ ଧନୀଲୋକ ଘରେ ବହୁ ସନ୍ତାନ ହେବା ଦ୍ୱାରା ସେମାନେ ନିଜ ନିଜକୁ ଭାଗ୍ୟବାନ୍ ବୋଲି ମନେ କରନ୍ତି । ଯାହାଙ୍କର ଲକ୍ଷେ ପୁତ୍ର ହୋଇ ଥାଆନ୍ତି, ସେ ତ ସହଜେ ସମସ୍ତ ଐଶ୍ୱର୍ଯ୍ୟ ବଳ, ଯଶ, ଶ୍ରୀ, ଜ୍ଞାନ ଓ ବୈରାଗ୍ୟର ସ୍ୱାମୀ । କେବଳ ସେହି ଐଶ୍ୱର୍ଯ୍ୟଶାଳୀ ପକ୍ଷେ ଏହା ହିଁ ସମ୍ଭବ, ଯେ କି ସମଗ୍ର ବିଶ୍ୱର ପିତା ଅଟନ୍ତି ।

ସୂତ କହିଲେ—"ମୁନିଗଣ ! ଷୋଳ ସହସ୍ର ଏକଶହ ଆଠ ରାଣୀମାନଙ୍କର ପୁତ୍ରମାନଙ୍କ ନାମ ଆପଣମାନଙ୍କୁ କହି କିଛି ଲାଭ ନାହିଁ । ସେମାନଙ୍କ ମଧ୍ୟରେ କେହି ବିଶେଷ ପ୍ରସିଦ୍ଧ ନ ଥିଲେ । ତେଣୁ ସମୟର ସ୍ୱଳ୍ପତା ଦୃଷ୍ଟିରୁ ସେହି ସମସ୍ତ ଶ୍ରୀକୃଷ୍ଣ ପୁତ୍ରଙ୍କ ସମ୍ବନ୍ଧରେ କହିବା ମୋ ପକ୍ଷେ ସମ୍ଭବ ନୁହେଁ । କେବଳ କଥା ପ୍ରସଙ୍ଗକୁ ପୂର୍ଣ୍ଣ କରିବା ନିମନ୍ତେ ଭଗବାନଙ୍କର ଯେଉଁ ଅଷ୍ଟ ପାଟରାଣୀ, ସେମାନଙ୍କର ଦଶ ଦଶ ପୁତ୍ରର ନାମ ମୁଁ ଆପଣମାନଙ୍କୁ କହୁଛି । ସବୁ ପ୍ରଥମେ ବିଦର୍ଭ ନନ୍ଦିନୀ ଭଗବତୀ ରୁକ୍ମିଣୀଙ୍କ ଦଶପୁତ୍ରଙ୍କ ନାମ ଆପଣମାନେ ଶୁଣନ୍ତୁ । ପ୍ରଦ୍ୟୁମ୍ନ ତ ତାଙ୍କର ଜ୍ୟେଷ୍ଠ ତଥା ଶ୍ରେଷ୍ଠ ପୁତ୍ର । ତାଙ୍କ ବ୍ୟତୀତ ଚାରୁଦେଷ୍ଣ, ସୁଦେଷ୍ଣ, ଚାରୁଦେହ, ସୁଚାରୁ, ଚାରୁଗୁପ୍ତ, ଭଦ୍ରଚାରୁ, ଚାରୁଚନ୍ଦ୍ର, ବିଚାରୁ ଓ ଚାରୁ ଏହିପରି ନଅ ପୁତ୍ର ଥିଲେ । ଏମାନେ ପ୍ରଦ୍ୟୁମ୍ନଙ୍କ ଭଳି ଅତ୍ୟନ୍ତ ପରାକ୍ରମୀ ଥିଲେ । ରୁକ୍ମିଣୀଙ୍କ ଚାରୁମତୀ ନାମକ ଏକ କନ୍ୟା ଥିଲା । ସେ କୃତବର୍ମାଙ୍କ ପୁତ୍ର ବଳୀଙ୍କୁ ବିବାହ କରିଥିଲା । ତେଣୁ କୃତବର୍ମା ଭଗବାନ ଶ୍ରୀକୃଷ୍ଣଙ୍କର ସମୁଧୀ ଥିଲେ । ଏହିପରି ପ୍ରତ୍ୟେକ ରାଣୀଙ୍କର ଦଶ ଦଶ ସନ୍ତାନ ହୋଇଥିଲେ । ଏମାନେ ନିଜ ପିତାଙ୍କ ଭଳି ପରାକ୍ରମୀ ଥିଲେ ।

ସତ୍ରାଜିତଙ୍କ କନ୍ୟା ସତ୍ୟଭାମାଙ୍କର ଭାନୁ, ସୁଭାନୁ, ସ୍ୱର୍ଭାନୁ, ପ୍ରଭାନୁ, ଭାନୁମାନ୍, ଚନ୍ଦ୍ରଭାନୁ, ବୃହଦ୍ଭାନୁ, ଅତିଭାନୁ, ଶ୍ରୀଭାନୁ ଓ ପ୍ରତିଭାନୁ ଏହି ଦଶପୁତ୍ର ଥିଲେ ।

ଜାମ୍ବବାନଙ୍କର କନ୍ୟା ଜାମ୍ବବତୀଙ୍କର ଶାମ୍ବ, ସୁମିତ୍ର, ପୁରୁଜିତ୍, ଶତଜିତ ସହସ୍ରଜିତ୍, ବିଜୟ, ଚିତ୍ରକେତୁ, ବସୁମାନ୍, ଦ୍ରବିଡ ଓ କ୍ରତୁ ଏହି ଦଶପୁତ୍ର ଥିଲେ । ଏମାନେ ସମସ୍ତେ ପିତାଙ୍କ ଭଳି ପରାକ୍ରମୀ ଓ ଯୁଦ୍ଧପ୍ରିୟ ଥିଲେ । ଏମାନଙ୍କ ମଧ୍ୟରେ ଶାମ୍ବ

ଏତେ ସୁନ୍ଦର ଥିଲେ ଯେ, ତାଙ୍କୁ ଦେଖିଲେ ସ୍ୱର୍ଗର ଅପ୍‌ସରାମାନେ ମଧ୍ୟ ମୋହିତ ହୋଇ ଯାଉଥିଲେ । ତାଙ୍କର ଯୋଗୁଁ ହିଁ ଯଦୁକୁଳ ଧ୍ୱଂସ ପାଇଲା । ଏହାଙ୍କର ଅଙ୍ଗ ପ୍ରତ୍ୟଙ୍ଗ ଥିଲା ସ୍ତ୍ରୀଙ୍କ ଭଳି ଅତି ଆକର୍ଷଣୀୟ ଓ କୋମଳ ।

ମହାରାଜ ନଗ୍ନଜିତ୍‌ଙ୍କ କନ୍ୟା ନାଗ୍ନଜିତୀଙ୍କର ବୀର, ଚନ୍ଦ୍ର, ଅଶ୍ୱସେନ, ଚିତ୍ରଗୁପ୍ତ ବେଗବାନ୍, ବୃଷ, ଆମ ଶଙ୍କୁ, ବସୁ, ଓ ତେଜସ୍ୱୀକୁନ୍ତୀ ଏହି ଦଶପୁତ୍ର ଥିଲେ । ସେହିପରି ସୂର୍ଯ୍ୟ ତନୟା କାଳିନ୍ଦୀଙ୍କର ମଧ୍ୟ ପରମ ପ୍ରସିଦ୍ଧ ଦଶପୁତ୍ର ଥିଲେ । ସେମାନେ ହେଉଛନ୍ତି— ଶ୍ରୁତ, କବି, ବୃଷ, ବୀର, ସୁବାହୁ, ଭଦ୍ର ଏକଳ, ଶାନ୍ତି, ଦର୍ଶ, ପୂର୍ଣ୍ଣମାସ ଓ ସୋମକ ।

ମଦ୍ରଦେଶଙ୍କର କନ୍ୟା ମାଦ୍ରୀ ଲକ୍ଷ୍ମଣାଙ୍କର ପୁତ୍ରମାନେ ହେଲେ— ପ୍ରଘୋଷ, ଗାତ୍ରବାନ୍, ସିଂହ, ବଳ, ପ୍ରବଳ, ଊର୍ଦ୍ଧ୍ୱଗ, ମହାଶକ୍ତି, ସହ, ଓଜ ଓ ଅପରାଜିତ ।

ଅଷ୍ଟମରାଣୀ ଭଦ୍ରାଙ୍କର ସଂଗ୍ରାମଜିତ୍, ବୃହତ୍‌ସେନ, ଶୂର, ପ୍ରହରଣ, ଜୟ, ସୁଭଦ୍ର, ବାମ, ଆୟୁ ଓ ସତ୍ୟକ ଏହି ପରାକ୍ରମୀ ପୁତ୍ରମାନେ ଥିଲେ । ଏହି ଆଠରାଣୀଙ୍କ ବ୍ୟତୀତ ଅନ୍ୟ ଯେଉଁ ରୋହିଣୀ ଆଦି ଷୋଳ ସହସ୍ର ଏକଶହ ରାଣୀ ଥିଲେ, ସେ ସମସ୍ତଙ୍କର ମଧ୍ୟ ଦଶ ଦଶ ପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ ରୋହିଣୀଙ୍କର ପୁତ୍ର ତାମ୍ର ତପ୍ତ ଅତି ପ୍ରସିଦ୍ଧ ଥିଲେ ।

ଶୌନକ ପଚାରିଲେ—"ହେ ସୂତ ! ଆପଣ ତ ଶ୍ରୀକୃଷ୍ଣଙ୍କର କେତେକ ପୁତ୍ରଙ୍କ ନାମ କହିଲେ, ଏମାନେ କେଉଁ କେଉଁ ରାଜକନ୍ୟାଙ୍କୁ ବିବାହ କରିଥିଲେ ?"

ସୂତ ହସି ହସି କହିଲେ—"ହଁ, ମହାରାଜ ! କ୍ଷତ୍ରିୟକୁମାରଙ୍କ ପାଇଁ ବିବାହର ଚିନ୍ତା ନ ଥାଏ । କେହି ଯଦି ପ୍ରସନ୍ନ ହୋଇ କନ୍ୟା ନ ଦିଅନ୍ତି, ତାହାହେଲେ ସେମାନେ ବଳ ପ୍ରୟୋଗ କରି କନ୍ୟାକୁ ନେଇଆସି ବିବାହ କରନ୍ତି । ସେ କାଳରେ ତ ଅନୁରାଗିଣୀ କନ୍ୟାକୁ ବର ସ୍ୱୟଂ ବଧିରେ ଗ୍ରହଣ କରିବା ଏକ ବୀରତ୍ୱର ପରିଚ୍ୟକ ଥିଲା । ଘରର ମୁରବୀମାନେ ଯେପରି କରି ଆସୁଥିଲେ, ପିଲମାନେ ମଧ୍ୟ ସେମାନଙ୍କୁ ଅନୁକରଣ କରି ସେହିପରି କରୁଥିଲେ । ଭଗବାନ୍ କନ୍ୟାହରଣ ମାର୍ଗର ପ୍ରଦର୍ଶକ ଥିଲେ, ତେଣୁ ଏ ସମସ୍ତ ରାଜକୁମାର ଏହିପରି ସ୍ୱୟମ୍ବରରେ କୃତକାର୍ଯ୍ୟ ହୋଇ କନ୍ୟାକୁ ନେଇ ଆସୁଥିଲେ । ଏହି ରାଜକୁମାରମାନେ କୁଳୀନ, ସୁନ୍ଦର, ବଳବାନ ଓ ଧନୁର୍ବିଦ୍ୟା ବିଶାରଦ ଥିଲେ । ଏମାନଙ୍କ ପକ୍ଷେ କନ୍ୟା ଆଣି ବିବାହ କରିବା ଅତି ସହଜ ଥିଲା ।

ଶୌନକ ପଚାରିଲେ—"ହେ ସୂତ ! ଭଗବାନଙ୍କର ପ୍ରଥମ ପୁତ୍ର ପ୍ରଦ୍ୟୁମ୍ନଙ୍କର ବିବାହ ସେହି ମାୟାବତୀଙ୍କ ସହିତ କେବଳ ହୋଇଥିଲା ନା ସେ ଆଉ ବିବାହ କରିଥିଲେ ?"

ସୂତ କହିଲେ—"ଭଗବନ୍! ମାୟାବତୀ ତାଙ୍କର ପୂର୍ବଜନ୍ମର ପତ୍ନୀ ଥିଲେ। ପ୍ରଦ୍ୟୁମ୍ନଙ୍କର ବିବାହ ତ ପରେ ତାଙ୍କର ରୁକ୍ମୀଙ୍କ କନ୍ୟା ରୁକ୍ମବତୀଙ୍କ ସହିତ ହୋଇଥିଲା।

ଏହା ଶୁଣି ଶୌନକ ଚମକି ପଡ଼ି ପଚାରିଲେ—"ହେ ସୂତ ! ରୁକ୍ମୀ ତ ଭଗବାନଙ୍କ ସହିତ ଦ୍ୱେଷ କରିଥିଲେ। ସେ ତାଙ୍କ କନ୍ୟାକୁ ପୁଣି କିପରି ପ୍ରଦ୍ୟୁମ୍ନଙ୍କ ସହିତ ବିବାହ ଦେଲେ ?"

ସୂତ କହିଲେ—ହଁ, ମହାରାଜ ! ତୁମେ ବୁଝି ଲୋକଙ୍କ ଆଚରଣ ଜାଣିନାହଁ। ଏମାନେ ପରସ୍ପର ଥରେ ଲଢ଼ନ୍ତି ଓ ପରସ୍ପର ଥରେ ପୁଣି ଏକାଠି ହୋଇ ଯାଆନ୍ତି। ଯାହା ସହିତ ସମ୍ବନ୍ଧ ସ୍ଥାପିତ ହୋଇ ଯାଇଥାଏ, ତାଙ୍କ ସହିତ କଳିତକରାଳ ହେଉଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ସେବା ସମ୍ବନ୍ଧ ତ ତୁଟେ ନାହିଁ ? ଯଦି ତ ରୁକ୍ମୀଙ୍କର ମନ ଶୁଦ୍ଧ ନଥିଲା, ତଥାପି ରୁକ୍ମିଣୀଙ୍କ ହରଣ ସମୟରେ ସେ ପ୍ରତିଜ୍ଞା କରିଥିଲେ ଯେ, "ଯେପର୍ଯ୍ୟନ୍ତ ମୁଁ ଶ୍ରୀକୃଷ୍ଣଙ୍କୁ ହରାଇ ନିଜର ଭଉଣୀ ରୁକ୍ମିଣୀଙ୍କୁ ଫେରାଇ ନ ଆଣିଛି, ସେ ପର୍ଯ୍ୟନ୍ତ ନିଜର ନଗର କୁଣ୍ଡିନପୁରରେ ପ୍ରବେଶ କରିବି ନାହିଁ।" ଭଗବାନଙ୍କୁ ହରାଇବା ତ ଦୂରର କଥା, ସେ ନିଜର ପ୍ରାଣ ରକ୍ଷା କରିବା ମଧ୍ୟ ତାଙ୍କ ପକ୍ଷେ କଠିନ ହୋଇପଡ଼ିଲା। ସେଥିପାଇଁ ସେ ଲଜ୍ଜାରେ ଆଉ କୁଣ୍ଡିନପୁର ଯାଇ ନ ଥିଲେ। ସେ ପୃଥକ ଭାବରେ 'ଭୋଜକଟ୍' ନାମକ ଏକ ନଗର ବସାଇ ସେଠାରେ ରହୁଥିଲେ। ସେ ଯେତେବେଳେ କୁଣ୍ଡିନପୁରକୁ ଯିବା ପାଇଁ ଇଚ୍ଛା କରୁଥିଲେ, ସେତେବେଳେ ଶ୍ରୀକୃଷ୍ଣଙ୍କ ଦ୍ୱାରା ଅପମାନିତ ହୋଇଥିବା କଥା ତାଙ୍କର ମନେ ପଡ଼ି ଯାଉଥିଲା। ଏଥିପାଇଁ ସେ ସେହି ବୈମନସ୍ୟକୁ ଭୁଲି ପାରୁ ନ ଥିଲେ। ଭ୍ରାତୃ ସ୍ନେହବଶତଃ ରୁକ୍ମିଣୀ ମଝେ ମଝେ ଭୋଜକଟ ଯାଉଥିଲେ। ଯେତେବେଳେ ତାଙ୍କର ଭାଇ ରୁକ୍ମୀଙ୍କର କନ୍ୟା ରୁକ୍ମବତୀ ବଡ଼ ହୋଇଗଲେ, ସେତେବେଳେ ସେ ରୁକ୍ମୀଙ୍କୁ କହିଲେ—"ଭାଇ ! ଏହାକୁ ତୁ ପ୍ରଦ୍ୟୁମ୍ନଙ୍କ ସହିତ ବିବାହ କରାଇଦେ।" ରୁକ୍ମୀ ଏହା ଚାହୁଁ ନଥିଲା ଯେ, ଯାଦବଙ୍କ ସହିତ ସେ ପୁନଶ୍ଚ ସମ୍ବନ୍ଧ ସ୍ଥାପନ କରିବ। ମାତ୍ର ଭଉଣୀକୁ ସେ ସ୍ପଷ୍ଟରୂପେ ମନାକରି ଦେଇ ପାରୁ ନଥିଲା। ତେଣୁ ସେ କହିଲା, "ଭଉଣୀ ! ମୁଁ ତ ମୋ ଝିଅପାଇଁ ସ୍ୱୟମ୍ବର କରିବାକୁ ନିଶ୍ଚିତ କରି ସାରିଛି। ସ୍ୱୟମ୍ବରରେ ସେ ଯାହାକୁ ବରଣ କରିବ, ତା ସହିତ ମୁଁ ତାକୁ ବିବାହ ଦେବି। ଏହା ତ ଘର ଭିତରର କଥା ଥିଲା। ରୁକ୍ମିଣୀ ରୁକ୍ମବତୀକୁ ଭଲ ଭାବରେ ଏ କଥା ପୂର୍ବରୁ ବୁଝାଇ କହିଦେଲେ। ପ୍ରଦ୍ୟୁମ୍ନ ମଧ୍ୟ ଖୁବ୍ ସୁନ୍ଦର ଥିଲେ। ସେ ଥିଲେ ସାକ୍ଷାତ କାମଦେବଙ୍କର ଅବତାର। ତେଣୁ ରୁକ୍ମବତୀ ପୂର୍ବରୁ ଏହି ପ୍ରସ୍ତାବକୁ ସ୍ୱୀକାର କରି ନେଇଥିଲେ।

ରୁକ୍ମୀ ଖୁବ୍ ଆଡ଼ମ୍ବର ସହକାରେ ସ୍ୱୟମ୍ବର କଲା। ସବୁ ରାଜ୍ୟରୁ ରାଜା ଓ ରାଜପୁତ୍ରମାନେ ସେହି ସ୍ୱୟମ୍ବରକୁ ଆସିଲେ। ରୁକ୍ମବତୀ ଜୟମାଳ ଧରି ପତି ବରଣ କରିବା

ପାଇଁ ସ୍ୱୟମ୍ବର ସଭାରେ ଆସି ପହଞ୍ଚିଲେ । ସେ ସମସ୍ତ ରାଜକୁମାରଙ୍କୁ ଦେଖି ନଦେଖିଲା ଭଳି ଆଗେଇ ଚାଲିଲେ । ଶେଷରେ ପ୍ରଦ୍ୟୁମ୍ନଙ୍କୁ ସେହି ଜୟମାଳା ପିନ୍ଧାଇ ଦେଲେ । ଏହା ଦେଖି ଅନ୍ୟ ସମସ୍ତ ରାଜା ଓ ରାଜପୁତ୍ର କୁପିତ ହେଲେ । ସେମାନେ ଚିନ୍ତାକଲେ, ରୁକ୍ମୀର ଯଦି ନିଜ ଭଣଜା ସହିତ ଝିଅକୁ ବିବାହ କରାଇବାର ଥିଲା, ତାହାହେଲେ ସେ ଆମ୍ଭମାନଙ୍କୁ କାହିଁକି ଏଠାକୁ ଡାକି ଅପମାନିତ କରୁଥିଲା ? ଚାଲ, ସମସ୍ତେ ମିଳିମିଶି କନ୍ୟାକୁ ବଳାତ୍କାରରେ ନେଇଯିବା ।" ଏହା ସ୍ଥିର କରି ସେମାନେ ଏକତ୍ରିତ ହୋଇ ପ୍ରଦ୍ୟୁମ୍ନଙ୍କଠାରୁ କନ୍ୟାକୁ ଛଡ଼ାଇ ନେବାପାଇଁ ଉଦ୍ୟତ ହେଲେ । ପ୍ରଦ୍ୟୁମ୍ନ ତ ସ୍ୱୟଂ ମହାରଥୀ ଥିଲେ, ଏମାନଙ୍କ ଆକ୍ରମଣରେ ସେ ଟଳେ ହେଲେ ବିଚଳିତ ହେଲେ ନାହିଁ । ଏକା ହୋଇ ସେ ସମସ୍ତଙ୍କ ସହିତ ସଂଗ୍ରାମ କଲେ । ଶେଷରେ ସମସ୍ତେ ପରାସ୍ତ ହେଲେ ଓ ସେ ରୁକ୍ମବତୀଙ୍କୁ ନେଇ ଚାଲିଗଲେ ।

ରୁକ୍ମୀ ଯଦିଓ ଦ୍ୱୈଷ ବଶତଃ ଦ୍ୱାରକା ଯାଉ ନଥିଲା ଓ ଶ୍ରୀକୃଷ୍ଣଙ୍କୁ ସୁବିଧା ଦେଖି ମାରିଦେବା ପାଇଁ ସୁଯୋଗ ଖୋଜୁଥିଲା, ତଥାପି ନିଜର ଭଉଣୀକୁ ଖୁସି କରାଇବା ପାଇଁ ସେ ଏବେ ଦ୍ୱାରକାକୁ ଆସି ନିଜର କନ୍ୟାକୁ ପ୍ରଦ୍ୟୁମ୍ନଙ୍କ ସହିତ ବିବାହ କରାଇଲା । ଅତ୍ୟନ୍ତ ଆନନ୍ଦର ସହିତ ପ୍ରଦ୍ୟୁମ୍ନଙ୍କର ବିବାହ ହୋଇଗଲା । ଏହି ରୁକ୍ମବତୀଙ୍କ ଗର୍ଭରୁ ଅନିରୁଦ୍ଧ ଜନ୍ମଗ୍ରହଣ କରିଥିଲେ । ଏହି ଅନିରୁଦ୍ଧଙ୍କ ବିବାହ କାଳରେ ବଳଦେବ ରୁକ୍ମୀକୁ ମାରି ଦେଇଥିଲେ ।

ସୂତ କହିଲେ—"ମୁନିଗଣ ! ଭୂତ, ଭବିଷ୍ୟତ, ବର୍ତ୍ତମାନ, ଅତୀନ୍ଦ୍ରିୟ, ଦୂରସ୍ଥ ଓ ବ୍ୟବହିତ ସମସ୍ତ ପ୍ରକାର କଥାକୁ ଜାଣୁଥିବା ଯୋଗୀରାଜ ମୋର ଗୁରୁ ଶୁକଦେବ ମହାରାଜ ପରୀକ୍ଷିତଙ୍କୁ ଯେପରି ଭାବରେ ପ୍ରଦ୍ୟୁମ୍ନଙ୍କର ବିବାହ ବୃତ୍ତାନ୍ତ କହିଥିଲେ, ମୁଁ ସେହିପରି ଆପଣମାନଙ୍କୁ ତାହା କହିଲି । ଏବେ ଆପଣମାନେ ଆଉ କ'ଣ ଶୁଣିବାକୁ ଇଚ୍ଛା କରୁଛନ୍ତି କୁହନ୍ତୁ ।"

ଶୌନକ କହିଲେ—"ହେ ସୂତ ! ଆପଣ କହିଲେ ଯେ, ବଳଦେବ ଅନିରୁଦ୍ଧଙ୍କ ବିବାହ କାଳରେ ରୁକ୍ମୀକୁ ମାରିଦେଲେ, ଏହାର କାରଣ କ'ଣ ଆମ୍ଭମାନଙ୍କୁ କୁହନ୍ତୁ । ଅନିରୁଦ୍ଧଙ୍କର ବିବାହ କେଉଁଠି ହୋଇଥିଲା ? ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଏବଂ ଅନିରୁଦ୍ଧ ଭଗବାନଙ୍କର ଏହି ଚତୁର୍ବ୍ୟୂହାବତାର ମଧ୍ୟରେ ଚତୁର୍ଥବ୍ୟୂହ ଅନିରୁଦ୍ଧଙ୍କ ବିବାହ ବୃତ୍ତାନ୍ତ ଆମ୍ଭମାନଙ୍କୁ କହନ୍ତୁ ।

ସୂତ କହିଲେ—"ତାହାହେଲେ ଠିକ୍ ଅଛି, ମୁଁ ଭଗବାନଙ୍କ ପୌତ୍ର ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧଙ୍କର ବିବାହ ବୃତ୍ତାନ୍ତ ଆପଣମାନଙ୍କୁ କହୁଅଛି. ଶୁଣନ୍ତୁ ।"

## ଛପ୍‌ପଯ୍ୟ

ନୃକ ହର୍ଷାଦିକ ଲଲ ମଁଭିନ୍ନବାନେ ଯାଅୟେ ।
ଉଦ୍‌ଗ୍ରୀନେ ସଂଗ୍ରାମଜୀତ ଦାଶ ନେବଗା ଜାୟେ ॥
କହୁଁ କହାଁ ତକ ନାମ ସକନ ସୂତ ଦଶ ଦଶ ମାନେ ।
ଏକ ଲଖ ଉଜସଠ ହଜାର ଅସ୍‌ସୀ ସୁତ ଜାନୋ ॥
ଭୟେ ପୁତ୍ର ପ୍ରଦ୍ୟୁମ୍ନକେ ଶ୍ରୀଅନିରୁଦ୍ଧ ମହାରଥୀ ॥
ରୁକ୍ମୀ ଜିନକେ ବ୍ୟାହ ମହୁଁ, ମରେ ଦ୍ୟୁତକେ ସ୍ୱାରଥୀ ॥



# ଅନିରୁଦ୍ଧ ବିବାହ ଓ ରୁକ୍ମୀ ବଧ

ଦୌହିତ୍ରାୟାନିରୁଦ୍ଧାୟ ପୌତ୍ରୀଂ ରୁକ୍ମ୍ୟଦଦାଦ୍ଧରେଃ ।
ରୋଚନାଂ ବଦ୍ଧବୈରୋଽପି ସ୍ୱସୁଃ ପ୍ରିୟଚିକୀର୍ଷୟା ॥
ଜାନନ୍ନଧର୍ମଂ ତଦ୍ ଯୌନଂ ସ୍ନେହପାଶାନୁବନ୍ଧନଃ ॥ *

( ଶ୍ରୀ ଭାଃ ୧୦ ସ୍କଃ ୬୧ ଅଃ ୨୫ ଶ୍ଳୋକ)

## ଛପ୍‌ପଯ୍ୟ

ଶୌନକ ପୂଛେଂ—'ସୂତ ! ହନେ ରୁକ୍ମୀ କେସୈଂ ବଲନେ ।
ସୂତ କହେଂ—'ମୁନି ! ଗଏେ ଖେଲ ଯୁଦ୍ଧ କାଲ ପ୍ରବଲନେ ॥
କରନ ବ୍ୟାହ ଅନିରୁଦ୍ଧ ଭୋଜକଟ ଆୟେ ଯାଦବ ।
ରୁକ୍ମୀ ପୌତ୍ରୀ ସଙ୍ଗ ବ୍ୟାହ ସମ୍ପନ୍ନ ଭୟୋ ଜବ ॥
ରଚ୍ୟୋ ଦ୍ୟୁତକୋ ଖେଲ ତହୁଁ, ବଲ ରୁକ୍ମୀ ଦରପତ ଭୟେ ।
ରୁଁ ଗଟ ରୁକ୍ମୀନେ କରୀ, କୁପିତ ଦେବବଲ ହୈ ଗୟେ ॥

---

* ରୁକ୍ମୀ ପୁତ୍ରର କନ୍ୟା ଥିଲା । ଅନିରୁଦ୍ଧକୁ ବିଭା ଦେଲା ॥
କୃଷ୍ଣର ବଇରୀ ହୁଅନ୍ତେ । ଦେଲା ରୁକ୍ମିଣୀ ପ୍ରିୟ ଅର୍ଥେ ॥
ଅଧର୍ମ ଶାସ୍ତ୍ର ଏ ବିଷୟ । ତଥାପି ଦେଲା ସ୍ନେହବଶ ॥

[ ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କଃ ୬୨ ଅ ]

ବଡ଼ ବଡ଼ ବୁଦ୍ଧିମାନ ବ୍ୟକ୍ତିମାନେ ଏହା ଜାଣନ୍ତି ଯେ, ମୃଗୟା, ମଦ୍ୟ, ମାଂସ, ଧର୍ମବିରୁଦ୍ଧ କାର୍ଯ୍ୟ ଓ ଦ୍ୟୁତକ୍ରୀଡ଼ା ଏ ସମସ୍ତ ବ୍ୟସନ କଳହ ଓ ପତନର କାରଣ । ତଥାପି ଏଥିରେ ସେମାନେ ପ୍ରବୃତ୍ତ ହୋଇଥାଆନ୍ତି । ଏହିସବୁ କାର୍ଯ୍ୟ ଏପରି ଆକର୍ଷକ ଯେ, ଅନେକ ଧର୍ମାତ୍ମା ମଧ୍ୟ ଏଥିରୁ ବାଦ ପଡ଼ନ୍ତି ନାହିଁ । ଯେତେବେଳେ ଜାଣନ୍ତି ଜୁଆ ଖେଳରେ ତାହାର କଲ୍ୟାଣ ହେଉ ନାହିଁ ବରଂ ଏଥିରେ ବିନାଶର ଆଶା ଏପରି ଜଡ଼ିତ ଯେ, ସର୍ବସ୍ୱ ହରାଇ ସାରିବା ପରେ ମଧ୍ୟ ମନୁଷ୍ୟ ଏଥିରୁ ବିରତ ହୋଇପାରେ ନାହିଁ । ଜୁଆଖେଳରେ କେବଳ ସେହିମାନେ ବିଜୟ ଲାଭ କରନ୍ତି, ଯେଉଁମାନେ ଛଳ କପଟ କରି ଜାଣନ୍ତି । ପରିଣାମରେ କଳହ ବିଗ୍ରହ, ଦ୍ୱେଷ ଓ ଶେଷକୁ ମୃତ୍ୟୁ ମଧ୍ୟ ହୋଇଥାଏ । ଏଥିପାଇଁ ଶାସ୍ତ୍ରକାର ବାରମ୍ବାର ଏହି କଥା ଉପରେ ଜୋର ଦିଅନ୍ତି ଯେ, କୌଣସି ପ୍ରକାରର ଦୁର୍ବ୍ୟସନରେ ନ ପଡ଼ିବା ଉଚିତ୍ ।

ସୂତ କହିଲେ—"ମୁନିଗଣ ! ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧ ହୋଇଥିଲେ ମଧ୍ୟ ତାଙ୍କ ରାଜ୍ୟରେ ମାମୁଁଝିଅ ଭଉଣୀକୁ ବିବାହ କରିବାର ପ୍ରଥା ଥିବାରୁ ଏହାକୁ ଏକ ସଦାଚାର ବୋଲି ବୁଝାଯାଏ । ଯଦି ତ ଏହା ପ୍ରକୃତରେ ଅଧର୍ମ, ତଥାପି ଦକ୍ଷିଣରେ ଏହି ଭାଇ ଭଉଣୀ ସମ୍ପର୍କରେ କୌଣସି ବାଛ ବିଚାର ରହେନାହିଁ । ମହାରାଷ୍ଟ୍ର, ସୌରାଷ୍ଟ୍ର ଗୁର୍ଜ୍ଜର, କଳିଙ୍ଗ, ପାଣ୍ଡ୍ୟ ଓ ଅନ୍ୟାନ୍ୟ ଦାକ୍ଷିଣାତ୍ୟ ରାଜ୍ୟରେ ଏହି ପ୍ରଥା ପ୍ରଚଳିତ ଅଛି । ଏଥିପାଇଁ ଦେଶାଚାରକୁ ମାନି ଲୋକେ ଏହା କରନ୍ତି । କିନ୍ତୁ ଏହା ଅଧର୍ମ ।

ରୁକ୍ମୀ ତ ମନମଧ୍ୟରେ ଶ୍ରୀକୃଷ୍ଣଙ୍କ ପ୍ରତି ଦ୍ୱେଷ ରଖିଥିଲା । ସେ ରୁକ୍ମବତୀର ବିବାହ ମଧ୍ୟ ଅନିଚ୍ଛା ସତ୍ତ୍ୱେ ନିଜ ଭଉଣୀ ଇଚ୍ଛାରେ ବାଧ୍ୟ ହୋଇ ପ୍ରଦ୍ୟୁମ୍ନଙ୍କ ସହିତ କରାଇଥିଲା । ଏଣେ ତା ପୁଅର ରୋଚନା ନାମକ ଏକ କନ୍ୟା ଥିଲା । ପ୍ରଦ୍ୟୁମ୍ନଙ୍କ ପୁତ୍ର ଅନିରୁଦ୍ଧ ମଧ୍ୟ ବିବାହ ଯୋଗ୍ୟ ହୋଇଯାଇଥିଲା । ରୁକ୍ମିଣୀ ଗୁହୁଁଥିଲେ, ମୋର ବୋହୂମାନେ ଯେପରି ମୋର କୁଳର ହୁଅନ୍ତୁ । ତେଣୁ ସେ ଭୋଜକଟ ଯାଇ ରୁକ୍ମୀକୁ କହିଲେ —"ଭାଇ ! ଏବେ ରୋଚନା ପାଇଁ ଆଉ କେଉଁଠାକୁ ବାହାକି ବର ଖୋଜିବାକୁ ଯିବ ? ମୁଁ ଗୁହୁଁଛି ଘରଝିଅ ଘରେ ରହୁ । ଅନିରୁଦ୍ଧ ଏବେ ବଡ଼ ହୋଇଯାଇଛି । ମୋର ଇଚ୍ଛା, ତୁମେ ରୋଚନାକୁ ଅନିରୁଦ୍ଧ ସହିତ ବିବାହ କରାଇଦିଅ ।"

ରୁକ୍ମୀ ଭାବିଲା, ଯେତେବେଳେ ମୋ ଭଉଣୀ ଇଚ୍ଛା କରୁଛି, ତେବେ ମୁଁ ରୋଚନାକୁ ଅନିରୁଦ୍ଧ ସହିତ ବିବାହ ନ ଦେବି କାହିଁକି ? ଯଦି ମୁଁ ପ୍ରସନ୍ନତାର ସହିତ ବିବାହ ନ କରାଏ, ତାହାହେଲେ ଏ ଶ୍ରୀକୃଷ୍ଣ ପ୍ରଦ୍ୟୁମ୍ନ ଓ ବଳଦେବ ଆଦି ଯାଦବ ସୈନ୍ୟଙ୍କୁ ଧରି ବଳପୂର୍ବକ କନ୍ୟାକୁ ନେଇଯିବେ । ତେଣୁ ସେ ଏଥିରେ ପ୍ରତିବାଦ କରିବାକୁ ସାହସ କଲା ନାହିଁ । ଏହି କଥା ଚିନ୍ତା କରି ସେ କହିଲା—"ଆଚ୍ଛା, ଠିକ୍ ଅଛି । ତୋର ଯାହା ଇଚ୍ଛା, ତାହା ହିଁ ହେଉ ।"

ଏକଥା ଶୁଣି ରୁକ୍ମିଣୀ ଅତ୍ୟନ୍ତ ପ୍ରସନ୍ନ ହେଲେ । ଦ୍ୱାରକାରେ ପୁନଶ୍ଚ ବିବାହ ଉତ୍ସବର ଆୟୋଜନ ହେଲା । ସମସ୍ତେ ଯାଦବ କହିବାକୁ ଲାଗିଲେ, ରାଜ୍ୟରେ ଏତେ ଆଡ଼ମ୍ବର ସହକାରେ ଦୁଇ ଦୁଇ ଥର ବିବାହ ଉତ୍ସବ ହେଲା, କିନ୍ତୁ ଆମ୍ଭମାନଙ୍କ ଭାଗ୍ୟରେ ଥରେ ହେଲେ ବି ବରଯାତ୍ରୀ ହୋଇ ଯିବାର ସୁଯୋଗ ମିଳିଲା ନାହିଁ । ଦୁଇଟି-ଯାକ ବିବାହ ଉତ୍ସବ ଦ୍ୱାରକାରେ ହିଁ ହେଲା । ଏ ତୃତୀୟ ଥର ଯଦି ବର ଭୋଜକଟ ଯାତ୍ରା କରେ, ତାହାହେଲେ ଆମ୍ଭେମାନେ ସେଠାକୁ ବରଯାତ୍ରୀ ହୋଇଯାଇ ମନଇଚ୍ଛା ଭୋଜି ଖାଇବା ।" ଏହା ଚିନ୍ତା କରି ସମସ୍ତେ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେମାନେ ଉତ୍ତମ ପୋଷାକ ପରିଧାନ କରି ବରଯାତ୍ରୀ ହୋଇ ଯିବାକୁ ପ୍ରସ୍ତୁତ ହୋଇଗଲେ । ଯଦି ଭଗବାନଙ୍କର ସମସ୍ତ ପୁତ୍ର ବରଯାତ୍ରୀ ହୋଇଯାଆନ୍ତି, ତାହାହେଲେ ରୁକ୍ମୀଙ୍କର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇପଡ଼ିବ । ତେଣୁ ସମସ୍ତେ ନ ଯାଇ ବଳରାମ, ଶ୍ରୀକୃଷ୍ଣ, ପ୍ରଦ୍ୟୁମ୍ନ, ଶାମ୍ବ ଓ ଆଉ ଗୁଟିକିଦାର ପୁତ୍ରଙ୍କ ସହିତ ମୁଖ୍ୟ ମୁଖ୍ୟ ଯାଦବ ବରଯାତ୍ରୀ ହୋଇଗଲେ । ରୁକ୍ମିଣୀ ତ ଉଭୟ ପକ୍ଷର ଲୋକ, ତେଣୁ ସେ ଭୋଜକଟ ଯିବାକୁ ବାଧ୍ୟ ହେଲେ ।

ବିଦର୍ଭ ରାଜ୍ୟର ଲୋକେ ଯାଦବ ବରଯାତ୍ରୀଙ୍କର ଉତ୍ତମ ସ୍ୱାଗତ ସତ୍କାର କଲେ । ଅତ୍ୟନ୍ତ ଆଡ଼ମ୍ବର ସହକାରେ ବୈଦିକ ବିଧିବିଧାନରେ ଅନିରୁଦ୍ଧଙ୍କ ସହିତ ରୋଚନାର ବିବାହ ସମ୍ପନ୍ନ ହେଲା । ବିବାହ ଶେଷରେ କେତେକ ଦିନ ପର୍ଯ୍ୟନ୍ତ ବରଯାତ୍ରୀ ସେଠାରେ ରହିଲେ । ସେଠାରେ ସେମାନେ ଭଲ ଭଲ ଦ୍ରବ୍ୟ ଖାଇ ପିଇ, ଖେଳ କୌତୁକରେ ମାତି କେତେକ ଦିନ ଆନନ୍ଦରେ କଟାଇଲେ । କନ୍ୟା ପକ୍ଷର ଲୋକେ ବର ପକ୍ଷର ଲୋକମାନଙ୍କୁ ବୁଦ୍ଧୁ (ବୋକା) ବନାଇବା ପାଇଁ କିଛି ନା କିଛି କୌଶଳ ସୃଷ୍ଟି କଲେ, ଯଥା—ପାନରେ ରଙ୍ଗ ଦେବା, ଭଜାଗୁଡ଼ିରେ ଅଧିକ ଲଙ୍କାଗୁଣ୍ଡ ଦେବା ଓ ନାନା ପ୍ରକାର ଅପଦସ୍ତ କରିବାର ଉପାୟମାନ କରି ଗୋପାଳ ତଥା ଯାଦବମାନଙ୍କ ବୋକାମିରୁ ଦେଖି ହସି ହସି ଗଡ଼ିଗଲେ । ଏହିପରି ଅନେକ କ୍ଷେତ୍ରରେ ଯାଦବ-ମାନଙ୍କୁ ଅତି ପରିହାସରେ ହଇରାଣ ହରକତ କରାଇ ସେମାନେ ମଜା ଦେଖିଲେ । ବିବାହ ଉତ୍ସବରେ ବରଯାତ୍ରୀମାନଙ୍କୁ ଏହି ପ୍ରକାର ବୁଦ୍ଧୁ ବନାଇବାର ପରମ୍ପରା ରହି ଆସିଛି । ତେଣୁ ବରଯାତ୍ରୀମାନେ ଆଗରୁ ସାବଧାନ ହୋଇଯାଇ ଥାଆନ୍ତି ।

ରୁକ୍ମୀ ଚିନ୍ତା କଲେ—"ବଳଦେବ ତ ନିଜକୁ ଅତି ବଳବାନ ବୋଲି ଭାବନ୍ତି, ଏହାଙ୍କୁ ମୁଁ କୌଣସି ପ୍ରକାରେ ଏବେ ବୁଦ୍ଧୁ ବନାଇବି ।" କନ୍ୟାପକ୍ଷର ନିମନ୍ତ୍ରଣରେ ମଧ୍ୟ ଅନେକ ରାଜା ଆସିଥିଲେ । ସେମାନଙ୍କ ମଧ୍ୟରେ କଳିଙ୍ଗ ଦେଶର ରାଜା ଅତ୍ୟନ୍ତ ଘନିଷ୍ଠ ପ୍ରିୟ ଥିଲେ । ସେ ରୁକ୍ମୀଙ୍କୁ କହିଲେ—"ବଳଦେବଙ୍କୁ ବୋକା ବନାଇବାର ଏକ ଉପାୟ ମୁଁ ସ୍ଥିର କରିଛି । ତାଙ୍କୁ ଆଦୌ ଜୁଆ ଖେଳ ଆସେ ନାହିଁ ।

ତଥାପି ତାଙ୍କର ଦ୍ୟୁତକ୍ରୀଡ଼ା ବଡ଼ ବ୍ୟସନ । ଆମ୍ଭମାନେ ତ ଦ୍ୟୁତକ୍ରୀଡ଼ାରେ ଧୁରନ୍ଧର । ତେଣୁ ଚାଲ, ତାଙ୍କୁ ଏଥିରେ ଉତ୍ସାହିତ କରାଇ ପ୍ରବୃତ୍ତ କରାଇବା ଓ ବୁଦ୍ଧୁ ବନାଇବା ।"

ଏହି କଥା ସମସ୍ତଙ୍କ ମନକୁ ପାଇଲା । ସମସ୍ତେ ବଳଦେବଙ୍କ ସହିତ ଖେଳିବାକୁ ସ୍ଥିର କଲେ ଓ ତାଙ୍କୁ ଅପଦସ୍ତ କରିବାକୁ ସ୍ଥିର କଲେ । ସେମାନଙ୍କର ପ୍ରକୃତରେ ବୁଦ୍ଧିଭ୍ରଷ୍ଟ ହୋଇ ଯାଇଥିଲା । ଖେଳ ହେବାର ଯଦି ଥିଲା, ତାହାହେଲେ କ୍ରୀଡ଼ାପ୍ରିୟ କୌରବମାନେ କୃଷ୍ଣଙ୍କ ସହିତ ହୋଇଥିଲେ ଭଲ ହୋଇଥାଆନ୍ତା, କିନ୍ତୁ ସର୍ପ ସହିତ ଖେଳିବାକୁ ଚେଷ୍ଟା କରିବା ଦ୍ୱାରା କେତେବେଳେ ଯେ ସେ କୁପିତ ହୋଇଯିବ, ତାହା କହି ହେବ ନାହିଁ । କୁଏତ ସେ ସମୟରେ ଦଂଶନ କରିପାରେ । ବିନାଶ କାଳରେ ମନୁଷ୍ୟର ବିପରୀତ ବୁଦ୍ଧି ହୋଇଯାଏ । ରାଜାମାନେ ଉତ୍ସାହିତ କରିବାକୁ ରୁକ୍ମୀ ଅତି ଆଦର ସହକାରେ ବଳରାମଙ୍କୁ ଡାକିଆଣି କହିଲେ—"ବଳଦେବ ! ଆମ୍ଭେମାନେ ଆପଣଙ୍କର ଦ୍ୟୁତକ୍ରୀଡ଼ାର ପ୍ରଶଂସା ଶୁଣିଅଛୁ । ଆପଣ ଏହି କ୍ରୀଡ଼ାରେ ଅତ୍ୟନ୍ତ ନିପୁଣ ।"

ବଳଦେବ କହିଲେ—"ଆରେ ଭାଇ ! ନିପୁଣ ନୁହେଁ, ଏମିତି ମନୋବିନୋଦ ପାଇଁ ସମୟ ସମୟରେ ଟିକିଏ ଖେଳିଦେଇ ଥାଏ ।"

ରୁକ୍ମୀ କହିଲେ—"ତାହାହେଲେ ଆସ, ତୁମର ଆମର ବାଜିଏ ଦୁଇବାଜି ଖେଳିବା । ବିବାହ ଉତ୍ସବରେ ଦ୍ୟୁତକ୍ରୀଡ଼ା ହେବାର ପରମ୍ପରା ମଧ୍ୟ ଅଛି ।"

ବଳଦେବ କହିଲେ —"ତାହାହେଲେ ଠିକ୍ ଅଛି ମନୋରଞ୍ଜନ ହୋଇଯିବ ।" ଏହା କହି ସେ ଖେଳିବାକୁ ଉଦ୍ୟତ ହୋଇଗଲେ । ଖେଳର ସାମଗ୍ରୀ ମଗାହୋଇ ଆସିଲା । ପଶାପାଲି ପଡ଼ିଲା । ରୁକ୍ମୀଙ୍କ ପକ୍ଷରେ କଳିଙ୍ଗ ନରେଶ ଆଦି କେତେକ ଧୂର୍ତ୍ତ ରାଜା ଖେଳିଲେ । ବଳଦେବ ଏକା ଖେଳିଲେ । ରୁକ୍ମୀ ପଚାରିଲେ—"କହନ୍ତୁ ବଳଦେବଜୀ ଆପଣ ଏ ଖେଳରେ କ'ଣ ବାଜି ରଖିବେ ?"

ବଳଦେବ କହିଲେ—"ପ୍ରଥମେ ଏକଶହ ସୁବର୍ଣ୍ଣ ମୁଦ୍ରା ମୁଁ ବାଜି ରଖିଲି ।"

ଏହା ଶୁଣି ରୁକ୍ମୀ ମଧ୍ୟ ଏକଶହ ସ୍ୱର୍ଣ୍ଣମୁଦ୍ରା ବାଜିରଖି ପଶା ଗଡ଼ାଇଲେ ଓ ସଙ୍ଗେ ସଙ୍ଗେ ଜିତିଯାଇ ଏକଶହ ସ୍ୱର୍ଣ୍ଣମୁଦ୍ରା ପାଇଲେ । ଜୁଆ ଖେଳୁ ଖେଳୁ ସେଥିରେ ଉତ୍ସାହ ବଢ଼ିଥାଏ । ଉଭୟପକ୍ଷ ଅଳ୍ପ ବାଜିରଖି ଖେଳିବାକୁ ପ୍ରବୃତ୍ତକରନ୍ତି । ଏଥର ବଳଦେବ ଏକ ସହସ୍ର ସ୍ୱର୍ଣ୍ଣମୁଦ୍ରା ବାଜି ରଖିଲେ ଓ ହାରିଯିବାରୁ ଦଶସହସ୍ର ସ୍ୱର୍ଣ୍ଣମୁଦ୍ରା ବାଜି ରଖିଲେ । ଏସବୁ ତ ସ୍ୱର୍ଣ୍ଣମୁଦ୍ରାର ପ୍ରଲୋଭନ ଉପରେ ଆଧାରିତ ଥିଲା, ବଳଦେବ ଯେତେଥର ବାଜି ଲଗାଇଲେ ସେତେଥର ହାରିଗଲେ

ଓ ଅନ୍ୟମାନେ ତାଙ୍କୁ ଅଟ୍ଟହାସ କରି ହସିଲେ । ବଳଦେବଙ୍କୁ ଚିଡ଼ାଇବାରେ କଳିଙ୍ଗ ନରେଶ ବଡ଼ ଆନନ୍ଦ ଅନୁଭବ କରୁଥିଲେ । ରୁକ୍ମୀଙ୍କର ବିଜୟ ହେଉଥିବାରୁ ସେ ହସି ହସି କହୁଥିଲେ—"ହଁ, ବଳଦେବଙ୍କ, ଆହୁରି ବାଜି ଲଗାନ୍ତୁ, ଆହୁରି ବାଜି ଲଗାନ୍ତୁ ।"

ରୁକ୍ମୀଙ୍କର ହସ ଓ ବ୍ୟଙ୍ଗ ବଚନରେ ବଳଦେବ ମନେ ମନେ ଅତ୍ୟନ୍ତ ରାଗି ଯାଇଥିଲେ; କିନ୍ତୁ କିଛି କହୁ ନଥିଲେ । ଯେତେବେଳେ ରୁକ୍ମୀ ଦଶହଜାର ସ୍ୱର୍ଣ୍ଣମୁଦ୍ରା ଜିତିଗଲେ, ସେତେବେଳେ ସେ କହିଲେ—"ଏବେ ମୁଁ ଏକଲକ୍ଷ ସ୍ୱର୍ଣ୍ଣମୁଦ୍ରା ବାଜି ରଖୁଛି ।" ଏହା କହି ସେ ପଶା କାଠି ଗଡ଼ାଇଲେ । ଏଥର ବଳରାମ ଜିତିଗଲେ । କିନ୍ତୁ ସେମାନେ ତ ସବୁ ଧୂର୍ତ୍ତ ଥିଲେ । ସମସ୍ତେ ଏକ ସ୍ୱରରେ କହି ଉଠିଲେ—"ଏଥର ମଧ୍ୟ ରୁକ୍ମୀ ଜିତିଲେ ।"

ଆଉ ବଳରାମ ନିଜର କ୍ରୋଧ ସଂବରଣ କରିପାରିଲେ ନାହିଁ । ତାଙ୍କର ନେତ୍ର ତ ସ୍ୱାଭାବିକ ଭାବେ ଅରୁଣ ବର୍ଣ୍ଣ, ଏ ଘଟଣାରେ ତାହା ଅଧିକ ଲାଲବର୍ଣ୍ଣ ହୋଇଗଲା । ସେ ସଙ୍ଗେ ସଙ୍ଗେ ପୂର୍ଣ୍ଣିମାର ଉତ୍ତାଳ ତରଙ୍ଗ ଭଳି ଅତ୍ୟନ୍ତ କ୍ଷୁଭିତ ହୋଇଗଲେ । ସେ ଆଉ ସମ୍ଭାଳି ହୋଇ ରହିପାରିଲେ ନାହିଁ । ସେ ତତ୍‌କ୍ଷଣାତ୍ ଦଶକୋଟି ସ୍ୱର୍ଣ୍ଣମୁଦ୍ରା ବାଜି ରଖିଲେ । ଏଥର ମଧ୍ୟ ପଶା ଖେଳରେ ସେ ଜିତିଗଲେ; କିନ୍ତୁ ରୁକ୍ମୀ ଛଳର ଆଶ୍ରୟ ନେଇ କହିଲେ—"ଏଥର ମୁଁ ହିଁ ଜିତିଗଲି ।"

ବଳରାମ ଅତ୍ୟନ୍ତ କ୍ରୋଧ ପ୍ରକାଶ କରି କହିଲେ—"ଏବେ ତୁମେ ଅତି ଅଧର୍ମ ପଥ ଧରିନେଲ । ମୁଁ ଜିତିଲି; କିନ୍ତୁ ତୁମେ କହୁଛ କ'ଣ ନା ତୁମେ ଜିତିଗଲ ?"

ଏହା ଶୁଣି ରୁକ୍ମୀ ବ୍ୟଙ୍ଗ ସ୍ୱରରେ କହିଲା—"ଯେତେବେଳେ ଧର୍ମରେ କାର୍ଯ୍ୟ ହାସଲ ହୋଇ ନପାରେ ଲୋକ ସେତେବେଳେ ଅଧର୍ମର ଆଶ୍ରୟ ନିଏ । ମୁଁ ଜିତିଲି; କିନ୍ତୁ ଆପଣ ମିଛଟାରେ କହୁଛନ୍ତି ଆପଣ ଜିତିଲେ ବୋଲି ? ଆପଣ ଏହି କଳିଙ୍ଗରାଜ ଓ ଅନ୍ୟ ରାଜାମାନଙ୍କୁ ପଚାରି ବୁଝନ୍ତୁ ତ, କିଏ ଜିତିଛି । ସେମାନେ ସତ କଥା କହିବେ । ନିଜେ ନିଜେ ଜିତାପଟ ନେଲି ବୋଲି କହିଲେ କ'ଣ ହେବ ? ଆପଣଙ୍କ କଥା କିଏ ବା ଶୁଣିବ ? ଏମାନେ ସମସ୍ତେ ତ ସାକ୍ଷୀ ଅଛନ୍ତି; ମଧ୍ୟସ୍ଥତା କରି ଏମାନେ ବିଚାର କରନ୍ତୁ । ଏମାନେ ଯାହା ନିର୍ଣ୍ଣୟ କରିବେ, ତାହା ହିଁ ଆମେ ଦୁହେଁ ମାନିବାକୁ ବାଧ୍ୟ ।" ଏ କଥା ଶୁଣି ସମସ୍ତ ଧୂର୍ତ୍ତ ରାଜା କହି ଉଠିଲେ—"ରୁକ୍ମୀ ହିଁ ଜିତିଛନ୍ତି, ରୁକ୍ମୀ ହିଁ ଜିତିଛନ୍ତି ।"

ରୁକ୍ମୀ ମଧ୍ୟ ସେହି କଥା କହି ବଳରାମଙ୍କୁ ରଗାଇବାକୁ ଲାଗିଲା । ସତ୍ୟବାଣୀକୁ ଉପେକ୍ଷା କରି, ସେହି ରାଜାମାନଙ୍କ ଉତ୍ସାହ ଉଦ୍ଦୀପନାରେ ପ୍ରେରିତ ହୋଇ ସେ ମଧ୍ୟ

ବଳରାମଙ୍କ ସହିତ ଦ୍ୱନ୍ଦ୍ୱ କଲା । ବଳରାମଙ୍କୁ ସେ ହସି ହସି ଉଡ଼ାଇ ଦେବାକୁ ବସିଲା । ତାଙ୍କୁ ବୃଦ୍ଧ ବନାଇବାକୁ ଲାଗିଲା । ସେ ହସି ହସି ଏମନ୍ତ ବ୍ୟଙ୍ଗବଚନ କହିଲା ଯେ, ଯାହାକୁ କି କୌଣସି ସ୍ୱାଭିମାନୀ ବ୍ୟକ୍ତି ସହ୍ୟ କରି ପାରିବ ନାହିଁ । ସେ ବଳରାମଙ୍କୁ ଚଡ଼ାଇ ଚଡ଼ାଇ କହିବାକୁ ଲାଗିଲା—"ଦେଖନ୍ତୁ ! ଯିଏ ଯେଉଁ କାର୍ଯ୍ୟରେ ଦକ୍ଷ ତାକୁ ସେହି କାର୍ଯ୍ୟ ଶୋଭା ପାଏ । ଯେଉଁମାନେ ଗୋପାଳ ସେମାନେ ଗୋରୁ ଚରାନ୍ତି, ଖେଳ ଖେଳନ୍ତି । ଖେଳ କସରତ, ଅସ୍ତ୍ର ଚାଳନା ଓ ଯୁଦ୍ଧ ଆଦି କେବଳ କ୍ଷତ୍ରିୟମାନେ କରିପାରନ୍ତି । ଆପଣ ତ ଜୀବନ ସାରା ବଣରେ ଗୋରୁ ଚରାଉ ଥିଲେ, ଜୁଆ ଖେଳିବା ଓ ଯୁଦ୍ଧ କରିବା ଆଦିର ମହତ୍ତ୍ୱ ବୁଝିବେ କାହୁଁ ? ହଁ ବଳଦଙ୍କ ନାକଦଉଡ଼ି, ଦେହଜଗା ଆଦି କାମ ଆପଣଙ୍କୁ ଭଲ ଆସିବ ଜଣା । ଆପଣ ଏ ରାଜାମାନଙ୍କ ଗହଣରେ ଅଯଥା ଜୁଆ ଖେଳିବାକୁ ବସୁଥିଲେ କାହିଁକି ?"

ରୁକ୍ମୀଙ୍କର ଏପରି ମର୍ମଭେଦୀ ବ୍ୟଙ୍ଗ ବଚନ ଶୁଣି ଅନ୍ୟ ସମସ୍ତ ଦୁଷ୍ଟ ରାଜା ତାଙ୍କୁ ସମର୍ଥନ ଜଣାଇ ଠୋ ଠୋ ହୋଇ ହସି ବଳଦେବଙ୍କୁ ହସରେ ଉଡ଼ାଇ ଦେବାକୁ ଲାଗିଲେ । କେହି କେହି କହିଲେ "ଜିଏ ଏଇଥି ପାଇଁ କାନ୍ଧରେ ଲଙ୍ଗଳ କାନ୍ଧେଇ ବୁଲୁଥାଏ । ହଳ କରିବା ତ ମୂଲିଆ ମଜୁରିଆଙ୍କ କାମ । ଏ ବୃଦ୍ଧ ଚଷାଟା ପୁଣି ଆମ ସଙ୍ଗେ ପଶାଖେଳ ଜିତିବି ବୋଲି ଭାବିଥିଲା । ସୂର୍ଯ୍ୟ ଯଦି ପଶ୍ଚିମରେ ଉଦୟ ହୁଏ, ତାହା ହେଲେ ସେ କଦାପି ସଫଳତା ହାସଲ କରି ନପାରେ ।"

ସମସ୍ତେ ବଳରାମଙ୍କୁ ଏହିପରି ଚଡ଼ାଇବାରୁ ବଳରାମଙ୍କର କ୍ରୋଧର ସୀମା ରହିଲା ନାହିଁ । ସେଠାରେ ଏକ ଲୌହ ମୁଦ୍‌ଗର ପଡ଼ିଥିଲା । ବଳରାମ ଆଗ ପଛ ବିଚାର ନ କରି ତାକୁ ଉଠାଇ ରୁକ୍ମୀର ଶିରଦେଶକୁ ଏକ ପ୍ରହାର କରି ଦେଲେ । ଏକା ପାହାରକେ ରୁକ୍ମୀର ଶିର ଛିନ୍ନ ହୋଇଗଲା । ସେହି ମାଙ୍ଗଳିକ ସଭାରେ ପ୍ରାଣହୀନ ହୋଇ ତଳେ ପଡ଼ି ରୁକ୍ମୀ ମୃତ୍ୟୁବରଣ କଲା । ସତେ ଯେପରି ରୋଚନାର ବିବାହ ଯଜ୍ଞରେ ଏକ ବଳି ଦିଆଗଲା ।

ରୁକ୍ମୀଙ୍କୁ ମାରିସାରିବା ପରେ ମଧ୍ୟ ବଳରାମଙ୍କର କ୍ରୋଧ ଶାନ୍ତ ହେଲାନାହିଁ । ପାଖରେ ବସିଥିବା କଳିଙ୍ଗ ରାଜାଙ୍କୁ ମଧ୍ୟ ସେ ଯାଇ ଧରିନେଲେ । କଳିଙ୍ଗରାଜ ଭୟରେ ଥରିବାକୁ ଲାଗିଲେ । ବଳରାମ ଲୌହ ମୁଦ୍‌ଗରକୁ ଫିଙ୍ଗି ଦେଇଥିଲେ । ଏବେ ତାଙ୍କ ଗାଲରେ ଖୁବ୍ ଜୋରରେ ଏକ ଚାପୁଡ଼ା କଷିଦେଲେ । ଏକା ଚାପୁଡ଼ାକେ କଳିଙ୍ଗ ରାଜାଙ୍କ ପାଟିରୁ ସବୁ ଦାନ୍ତ ଝଡ଼ିଗଲା । ସୁନ୍ଦର ଧବଳ ଦାନ୍ତଗୁଡ଼ିକ ବିଚରା ଏଥିପୂର୍ବରୁ କଳିଙ୍ଗରାଜ ହସିବା ବେଳେ କେତେ ଶୋଭା ପାଉ ନଥିଲା ? ଏହାପରେ ବଳରାମ ଲୌହ ମୁଦ୍‌ଗରକୁ ଉଠାଇ କଳିଙ୍ଗ ରାଜାଙ୍କ ଉପରେ ପ୍ରହାର ବୃଷ୍ଟି କରିବାକୁ ଲାଗିଲେ । ଅନ୍ୟ ରାଜାମାନେ ବଳରାମଙ୍କ କ୍ରୋଧକୁ ଦେଖି ଏପରି ଦୌଡ଼ି ପଳାଇଗଲେ ଯେ, ସତେ ଯେପରି ମେଣ୍ଢା-ପଲରେ ସିଂହ ପଶିଲେ ମେଣ୍ଢାମାନେ ଜୀବନ ବିକଳରେ ଦୌଡ଼ି ପଳାନ୍ତି । ଏହିପରି

ଦୌଡ଼ି ଦୌଡ଼ି କେତେକ ରାଜା ଝୁଣ୍ଟି ପଡ଼ି ସେମାନଙ୍କର ଗୋଡ଼ ହାତ ହରାଇଲେ । କେତେକଙ୍କର ମୁଣ୍ଡ ଫାଟିଗଲା, କାହାର ନାକ ଛେଚି ହୋଇଗଲା ଓ କାହାର କାହାର ଆଖି ମଧ୍ୟ ଫୁଟିଗଲା । ଏହିପରି ସମସ୍ତେ କ୍ଷତ ବିକ୍ଷତ ହୋଇ ନିଜ ନିଜର ପ୍ରାଣଘେନି ପଳାଇଲେ । ରୁକ୍ମିଣୀ ସେଠାକୁ ଆସି କାନ୍ଦିବାକୁ ଲାଗିଲେ । ଭଗବାନ୍ ଶ୍ରୀକୃଷ୍ଣ ମଧ୍ୟ ସେଠାକୁ ଆସିଗଲେ । ସେ ଆସି ଦେଖିଲେ, ବଳରାମ ସାଙ୍ଘାତିକ ରାଗିଛନ୍ତି । ଏହା ଦେଖି ସେ ଚୁପ୍ ହୋଇଗଲେ । ହସ୍ତିନାପୁରରେ ରୁକ୍ମିଣୀ କାନ୍ଦୁଥାଆନ୍ତି, ଭଗବାନ ବଳରାମଙ୍କୁ କିଛି କହିପାରୁ ନ ଥାନ୍ତି କି ରୁକ୍ମିଣୀଙ୍କୁ କିଛି କହି ପାରୁ ନଥାନ୍ତି । ସେ ଜାଣିଥିଲେ ଯେ, ଯଦି ବଳରାମଙ୍କୁ କିଛି କହିବେ, ତାହାହେଲେ ସେ ସଙ୍ଗେ ସଙ୍ଗେ ଉତ୍ତର ଦେବେ—"ଏ କି କଳିଯୁଗ ଆସିଲା, ଲୋକେ ନିଜର ସ୍ତ୍ରୀକୁ ହିଁ ସବୁକିଛି ବୋଲି ମନେ କଲେ, ବଡ଼ ଭାଇ ପ୍ରତି ତାଙ୍କର କୌଣସି ଶିଷ୍ଟାଚାର ପ୍ରଦର୍ଶନ ବା ସଙ୍କୋଚ ରହିଲା ନାହିଁ । ନିଜର ଶଳା ଶାଳୀ ସମସ୍ତଙ୍କଠାରୁ ଅତି ପ୍ରିୟ ହେଲେ । ଏହାର ଶଳା ମୋତେ କେତେ ଅଭଦ୍ର କଥା କହି ଅପମାନିତ କଲା, ସେ ତ ସେତେବେଳେ ତାକୁ କିଛି କହିଲା ନାହିଁ, ଏବେ ମୁଁ ତାକୁ ମାରଦେଲି ବୋଲି ସେ ତା ସ୍ତ୍ରୀ ପକ୍ଷ ହୋଇଯାଉଛି । ଯଦି ରୁକ୍ମିଣୀକୁ କିଛି କୁହେ, ସେ କହିବ—"ଏ ଯାଦବ କପଟ ନିର୍ଦ୍ଦୟ । ଏମାନେ ମୋ ଭାଇକୁ ମାରି ଏବେ ମୋତେ ଓଲଟି ଉପଦେଶ ଦେଉଛନ୍ତି ।" ତେଣୁ ଭଗବାନ୍ ଚିନ୍ତା କଲେ—"ମୌନ ରହିବା ସବୁଠାରୁ ଭଲ । ଏହା ଫଳରେ ବଳରାମଙ୍କର କ୍ରୋଧ ଶାନ୍ତ ହୋଇଯିବ ଓ ମୁଁ ଦ୍ୱାରକା ଯାଇ ରୁକ୍ମିଣୀଙ୍କୁ ବୁଝାଇ ଯାହା କରିବାର କହିବ !"

ସୂତ କହିଲେ—"ମୁନିଗଣ ! ଶୁଭ କାର୍ଯ୍ୟରେ ଅଶୁଭ ଘଟଣା ଘଟିଗଲା । ବିବାହର ଆନନ୍ଦ ଉତ୍ସବ ମଧ୍ୟରେ ନରହତ୍ୟା ହୋଇଗଲା । କିଛି ସମୟ ପରେ ବଳରାମଙ୍କର କ୍ରୋଧ ଶାନ୍ତ ହୋଇଗଲା । ସେ ସଙ୍ଗେ ସଙ୍ଗେ ନିଜ ରଥରେ ବସି ଦ୍ୱାରକା ଯାତ୍ରା କଲେ ।

ଭଗବାନ ସେଠାରେ ମିଛଟାରେ ଅଶ୍ରୁ ଗଡ଼ାଇ ରୁକ୍ମିଣୀ ଓ ତାଙ୍କ ପିଲାମାନଙ୍କୁ ସହାନୁଭୂତି ଦେଖାଇ ନିଜର ନାତି ଓ ନାତୁଣୀ ବୋହୂଙ୍କ ସଙ୍ଗରେ ନେଇ ସମସ୍ତ ବରଯାତ୍ରୀଙ୍କ ସହିତ ଭୋଜକଟରୁ ଦ୍ୱାରକା ଫେରି ଆସିଲେ । ପଥ ମଧ୍ୟରେ ଲୋକମାନେ କହୁଥିଲେ, "ବଳରାମ ଆବଶ୍ୟକତା ଠାରୁ ଅଧିକ କ୍ରୋଧ କଲେ, ତେଣୁ ଶୁଭ ବିବାହ ଉତ୍ସବଟାରେ ହତ୍ୟାକାଣ୍ଡ ଘଟିଗଲା ।'

ଭଗବାନ୍ କହିଲେ—"ଶଳା ମରିଛି ଠିକ୍ ହୋଇଛି । ସେ ମୋଠାରେ ଦ୍ୱେଷ ରଖିଥିଲା । ତେଣୁ ସେ ତା କର୍ମଫଳ ଭୋଗ କଲା ।"

ଏହା ଶୁଣି ଶୌନକ ପଚାରିଲେ—"ହେ ସୂତ ! ଏହା କ'ଣ ରୁକ୍ମୀ ପ୍ରତି ଅନ୍ୟାୟ ହୋଇ ନାହିଁ ? ସେ ନିଜର ଭଉଣୀକୁ, କନ୍ୟାକୁ ଓ ନାତୁଣୀକୁ ଯାଦବଙ୍କୁ ଦେଇ;

କଲୁ ତା ବଦଳରେ ସାଦର ତା ପ୍ରାଣ ନେଲେ ! ମହାରାଜ ! ଯଦି ବଳଦେବଙ୍କୁ ଜୁଆଖେଳ ଆସୁନଥିଲା, ତାହା ହେଲେ ସେ ଖେଳ ନଥାନ୍ତେ ! ଜୁଆଖେଳରେ ତ ଏହିପରି ପାଟିଗୁଣ୍ଡ ହେବା ସ୍ୱାଭାବିକ । ଏଥିରେ ଏତେ କୁପିତ ହୋଇ ଜଣେ ରଜାଙ୍କୁ ମାରିଦେବା କଣ ଠିକ୍ ହେଲା ?"

ସୂତ କହିଲେ—"ମହାରାଜ ! ବଡ଼ ଲୋକଙ୍କର ବଡ଼ ବଡ଼ କଥା । ବଡ଼ ଲୋକଙ୍କ କୃତ୍ୟ ସମାଲୋଚନୀୟ ହୁଏ ନାହିଁ । ପଣ୍ଡିତ ପୁଅ ମାଙ୍କଡ଼ ମାରିଲେ ବି ଦୋଷ ନାହିଁ । ଅନ୍ୟମାନେ ଯାହା କରନ୍ତି ତାହା ଦୋଷ ବୋଲି ଧରାଯାଏ । ଯାହାତ ହେବାର ଥିଲା ହୋଇଗଲା । ଭଗବାନଙ୍କ ଇଚ୍ଛାରେ ଯାହା ହୁଏ, ତାହା ପ୍ରାଣୀଙ୍କ ମଙ୍ଗଳ ପାଇଁ । ସେ ସମ୍ବନ୍ଧରେ ଆପଣମାନେ ଆଉ ମୁଣ୍ଡ ଖେଳାନ୍ତୁ ନାହିଁ ।"

ଶୌନକ କହିଲେ—"ହେ ସୂତ । ତାହା ହେଲେ ଠିକ୍ ଅଛୁ । ଏବେ କୁହନ୍ତୁ, ଭଗବାନ ରୁକ୍ମିଣୀଙ୍କୁ ଏହାପରେ କେବେ କି ପ୍ରକାର ସାନ୍ତ୍ୱନା ଦେଇଥିଲେ ?

ସୂତ କହିଲେ—"ହଁ, ମହାରାଜ ! ସାନ୍ତ୍ୱନା ଆଉ କଣ ଦିଅନ୍ତେ, ଦିନେ ହସ ଖୁସିରେ ଏହିକଥା କହିବାକୁ ବସିଲେ । ରୁକ୍ମିଣୀ ତ ଗମ୍ଭୀର ସ୍ୱଭାବର ଥିଲେ । ସେ ସତ୍ୟଭାମାଙ୍କ ଭଳି ଏତେ ଅଭିମାନିନୀ ନଥିଲେ । ଭଗବାନ ଦିନେ ତାଙ୍କୁ ସାନ୍ତ୍ୱନା ଦେଇ ଖୁସି କରାଇ ଦେଲେ । କୌଣସି ପ୍ରକାରେ ତାଙ୍କୁ ପ୍ରଶଂସା କରି ସବୁକଥା ବୁଝାଇ ଦେଲେ । ସମସ୍ତେ ଏହି ଘଟଣାର ମଧ୍ୟ ଉଲ୍ଲେଖ କଲେ । ଏବେ ମୁଁ ଆପଣମାନଙ୍କୁ ରୁକ୍ମିଣୀ ଓ ଭଗବାନଙ୍କର ବିନୋଦ ବିଷୟରେ କହିବି; ତାହା ଆପଣମାନେ ଶୁଣନ୍ତୁ ।"

## ଛପ୍‌ପୟ

ଲାଲ ଲାଲକରି ଆଁଖି ସର୍ପ ସମ ବଳ ଫୁଙ୍କାରେ ।
ରୁକ୍ମୀ ସିର ମହଁ ପରଘ ଜମାୟୋ ପ୍ରାନ ନକାରେ ॥
ପୁନ କଲିଙ୍ଗ ନୃପ ପକରି ତୁରତ ବତୀସୋ ଝାରୀ ॥
ଜୋ ଖଲ ଭୂପତି ହଁସେ ସବକୀ ଦଶା ବିଗାରୀ ॥
ଭଲେ ବସେ ନହିଂ ହରି କହ୍ୟୋ, ଶୀଲ ବନ୍ଧୁ, ସଙ୍କୋ କରେଁଯୋ ।
ପଶୁପତି ହୋଁବତ ଜାତ ମଗ, ଭଲେ ଭୟୋ ସାରେ ମରେଁଯୋ ॥

# ରୁକ୍ମିଣୀଙ୍କ ସହିତ ବିନୋଦ

ତାଂ ରୂପିଣୀଂ ଶ୍ରିୟମନନ୍ୟଗତିଂ ନିରୀକ୍ଷ୍ୟ,
ଯା ଲୀଲୟା ଧୃତତନୋରନୁରୂପରୂପା ।
ପ୍ରୀତଃ ସ୍ମୟନ୍ନଲକକୁଣ୍ଡଳନିଷ୍କକଣ୍ଠ—
ବକ୍ତ୍ରୋଲ୍ଲସତ୍ସ୍ମିତସୁଧାଂ ହରିରାବଭାଷେ ॥ *

(ଶ୍ରୀ: ଭା: ୧୦ସ୍କ: ୬୦ ଅ: ୯ ଶ୍ଳୋକ)

## ଛପ୍ପୟ

ସେହୁଂ ଅନିରୁଦ୍ଧ ବିବାହ ଭୟେହୁ ଆୟେହୁ ନିଜ ପୁର ସବ ।
ହରି ବିନୋଦ କେୟାଂ କରେୟା ରୁକ୍ମିନୀ ସଙ୍ଗେ କହୁଁ ଅବ ॥
ଇକ ଦିନ ନିରଖୀ ପ୍ରିୟା ହଁସତ ହରିତନେ ଢ଼ିଗ ଆବତ ।
ପଗ ପଗ ପୈ ଜନୁ ସୁଖଦ ମଧୁର ରସ ସୌ ବରସାବତ ॥
ଅଲକ, ପଲକ, ସ୍ମିତ ନାସିକା, ଗଣ୍ଡ, ଜଙ୍ଘନ, କଟି ବର ହୃଦୟ ।
ଚୁମ୍ବିତ ସୁବନଚିତେଂ ମଧୁର ରସ, ମୁଖ ମନହର ମୁସକାନ ମୟ ॥

ଏହି ନିରସ ଗୃହସ୍ଥାଶ୍ରମରେ ସରସତାର ସଞ୍ଚାର କେବଳ ଦାମଧୁର୍ଯ୍ୟ କାମିନୀହିଁ କରିଥାଆନ୍ତି । ସଂସାରରେ ଦୁଇଟି ଆନନ୍ଦୋତ୍ପାଦକ ବସ୍ତୁ ରହିଛି । ଗୋଟିଏ ହେଲା

---

* ସ୍ୱଧର୍ମ ପାଳିବାର ଆଶେ । ଯାହାର ଜନ୍ମ ଯଦୁବଂଶେ ॥
ତାର ନିକଟେ ସ୍ତବ ଘେନ । ମିଳିଲେ ଭୀଷ୍ମକ ନନ୍ଦନୀ ॥
କୃଷ୍ଣଙ୍କୁ ନ ଜାଣଇ ଆନ । ମନ ବଚନ ସାବଧାନ ॥
ଲୀଳା ମନୁଷ୍ୟ ରୂପ ଧରି । ସେ ରୂପେ ରୂପ ଅନୁସରି ॥
କର୍ଣ୍ଣେ କୁଣ୍ଡଳ ରତ୍ନ ଭାସ । ସଲ୍ଲଜ ମୁଖେ ଅଳ୍ପହାସ ॥
କଣ୍ଠେ ଅମୂଲ୍ୟ ହାର ଶୋହେ । ନୀଳକୁନ୍ତଳ ମନ ମୋହେ ॥
ଏମନ୍ତ ଦେଖି ତା ବଦନ । ବୋଲନ୍ତି ଦେବକୀ ନନ୍ଦନ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ: ୬୫ ଅ.)

ସୁନ୍ଦରୀ ଓ ଅନ୍ୟଟି ଦଣ୍ଡ (ଝୁମ୍ପା) । ଯେଉଁ ଘରେ ଅନୁକୂଳ ପତିପରାୟଣା ପତ୍ନୀ ନାହିଁ, ସେହି ଗୃହସ୍ଥର ଘରେ ରହିବା ବ୍ୟର୍ଥ । ସେ ଝୁମ୍ପାର ଆଶ୍ରୟ ନେବା ଉଚିତ । ଘର ତ ମାଟିରେ ନିର୍ମିତ ଓ ଜଡ଼ । କିନ୍ତୁ ସେହି ଘରକୁ ପତ୍ନୀ ହିଁ ଚୈତନ୍ୟତା ପ୍ରଦାନ କରିଥାଏ । ଘରେ ନାନା ପ୍ରକାର ଚିନ୍ତା ଉତ୍ପନ୍ନ ହୋଇ ତାହା ମନୁଷ୍ୟକୁ କଠୋର କରିଦିଏ । ସେହି କଠୋରତାକୁ ଲଘବ କରି ଗୃହିଣୀ ଗୃହସ୍ଥକୁ ମଧୁରତା ପ୍ରଦାନ କରେ ଓ ତାହାର ଜୀବନକୁ ସରସ ସୁନ୍ଦର କରେ । ସ୍ତ୍ରୀ ଲୋକମାନଙ୍କ ମଧ୍ୟରୁ ଯିଏ ଯେପରି ସ୍ୱଭାବର ହୋଇଥିଲେ ହେଁ ସେମାନେ ପୁରୁଷଙ୍କୁ ଗୃହସ୍ଥାଶ୍ରମରେ ଆବଦ୍ଧ କରି ରଖନ୍ତି । ଯଦି ଏପରି ହେଉ ନଥାନ୍ତା ଓ ସମସ୍ତେ ପ୍ରତିକୂଳାଚରଣ କରୁଥାଆନ୍ତେ, ତାହାହେଲେ ପ୍ରତିକୂଳାଚରଣକାରୀ ପତ୍ନୀଙ୍କୁ ପରିତ୍ୟାଗ କରି ପତି ପରିବ୍ରାଜକ ଜୀବନ ବିତାନ୍ତେ । ଦିନସାରା ପରିଶ୍ରମକ୍ଳାନ୍ତ ପୁରୁଷ ପତ୍ନୀକୁ ଦେଖି, ତାହାର ସାନ୍ନିଧ୍ୟ ଗ୍ରହଣ କରି ନବ ଜୀବନ ଲାଭ କରେ । ଦୈନନ୍ଦିନ ଚିନ୍ତାରେ ବ୍ୟଥିତ ପୁରୁଷ ପତ୍ନୀର ମଧୁର ବଚନ ଓ ହସ ହସ ମୁଖକୁ ଦେଖି ତା'ସହିତ ମଧୁର ଆଳାପକରି ଆଶ୍ୱସ୍ତ ହୋଇଥାଆନ୍ତି । କେତେକଲୋକ ସୁରାପାନ କରି କିଛିକାଳ ପାଇଁ ନିଜ ନିଜର ଚିନ୍ତାରୁ ମୁକ୍ତିଲାଭ କରନ୍ତି, କିନ୍ତୁ ସେଥିରେ ଏକ ଦୋଷ ରହିଛି, ତାହା ମନୁଷ୍ୟକୁ ଚେତାଶୂନ୍ୟ କରିଦେଇ ନିଷ୍କ୍ରିୟ କରିଦିଏ ଓ ଆୟୁ କ୍ଷୟ କରିଦିଏ । ଧର୍ମପତ୍ନୀ ତାହା ନକରି ପୁରୁଷ ମନରେ ଆନନ୍ଦ ଆଣି ଚିନ୍ତା ଦୂର କରାଇଥାଏ । ପୁତ୍ର କନ୍ୟା ଜନ୍ମଦେଇ ଗୃହସ୍ଥାଶ୍ରମକୁ ଆନନ୍ଦ ମୁଖରିତ କରାଇଥାଏ ଓ ସେମାନଙ୍କୁ ଚଳାଇ ଥାଏ । ଏହାଦ୍ୱାରା ଗୃହସ୍ଥାଶ୍ରମ ରୂପୀ ଗାଡ଼ି ନିର୍ବିଘ୍ନରେ ଚଳିଥାଏ । ପୁରୁଷ ଯେତେ ଶ୍ରମ କରୁଥିଲେ ମଧ୍ୟ ସେ ଏହି ଆନନ୍ଦପ୍ରାପ୍ତି କାରଣରୁ ସମସ୍ତ କ୍ଳେଶ ଭୁଲିଯାଏ । ଏ ପ୍ରକାର ସୁଗୃହିଣୀ ପ୍ରତ୍ୟେକ ଅବସ୍ଥାରେ ତୃପ୍ତି ପ୍ରଦାନକାରୀ ଓ ଉତ୍ସାହ ପ୍ରଦାନକାରୀ ହୋଇଥାଆନ୍ତି ।

ସୂତ କହିଲେ—"ମୁନିଗଣ ! ଅନିରୁଦ୍ଧଙ୍କର ବିବାହ କାର୍ଯ୍ୟ ସମାପନ କରି ଭଗବାନ ଦ୍ୱାରକା ଆସି ନିଜର ଷୋଳ ସହସ୍ର ଏକଶହ ଆଠ ପତ୍ନୀଙ୍କ ସହିତ ସୁଖ-ପୂର୍ବକ ସମୟ କାଟିବାକୁ ଲାଗିଲେ । ଯେପରି ଶ୍ରୀକୃଷ୍ଣଙ୍କୁ କେବେହେଲେ ଜରାବ୍ୟାଧି ସ୍ପର୍ଶ ନ କରେ ଓ ସେ ଚିରଦିନ ଯୁବାବସ୍ଥାରେ ରହନ୍ତି, ସେହି ପ୍ରକାର ସେହି ସ୍ତ୍ରୀମାନେ ସର୍ବଦା ଯତ୍ନ ନେଉଥିଲେ । ସେମାନେ ନିଜ ନିଜକୁ ମଧ୍ୟ ଯୁବତୀ ଭଳି ସର୍ବଦା ରହିବା ପାଇଁ ଓ ନିରୋଗ ହେବା ପାଇଁ ପ୍ରୟତ୍ନ କରୁଥିଲେ । ସେମାନଙ୍କର ଆଦୌ ବାଳ ପାଚି ନଥିଲା, ଚର୍ମ ଲୋଳିତ ହେଉ ନଥିଲା ଅଙ୍ଗ ପ୍ରତ୍ୟଙ୍ଗ ଶିଥିଳ ହେଉ ନଥିଲା ଓ କେବେହେଲେ ବ୍ୟାଧି ହେଉ ନଥିଲା । ସେମାନେ ସର୍ବଦା ଷୋଡ଼ଶୀଙ୍କ ଭଳି ଶୋଭା ପାଉଥିଲେ ।

ଭଗବାନଙ୍କ ପତ୍ନୀମାନଙ୍କ ମଧ୍ୟରେ ସତ୍ୟଭାମା ଅଧିକ ମାନିନୀ ଥିଲେ । ଯେତେ-ବେଳେ ସେ ରୁଷ୍ଟା ହେଉଥିଲେ, ସେତେବେଳେ ଭଗବାନ ତାଙ୍କୁ ଶାନ୍ତ କରିବା ପାଇଁ

ବହୁତ ସମୟ ଲାଗି ଯାଉଥିଲା । ରୁକ୍ମିଣୀ ଅତ୍ୟନ୍ତ ସରଳ ଥିଲେ । ଭଗବାନ ଯାହା କହୁଥିଲେ, ସେ ତାହା କରୁଥିଲେ । ଯଦି କେତେବେଳେ କୌଣସି କଥା ଥଟ୍ଟା ମଜ୍ଜାରେ କହୁଥିଲେ, ସେତେବେଳେ ସେ ସଙ୍କୋଚ ଅନୁଭବ କରୁଥିଲେ । କେବଳ ହସି ଦେଇ ରହି ଯାଉଥିଲେ । ସେ କେବେହେଲେ ଓଲଟି ଯାଇ ଉତ୍ତର ଦେଉ ନଥିଲେ । ଏହି ବିନୋଦ ସେତିକିବେଳେ ବନ୍ଦ ଯାଉଥିଲା, ଯେତେବେଳେ କି ଉଭୟ ଉଭୟଙ୍କ କଥା ଶୁଣି ଖୁସି ହେଉଥିଲେ । ଜଣେ କହୁଥିଲା ବେଳେ ଯଦି ଅନ୍ୟ ଜଣେ ଲଜ୍ଜାରେ ଚୁପ୍ ହୋଇଯାଏ, ତାହା ହେଲେ ବିନୋଦ ସେହିଠାରେ ସମାପ୍ତ ହୋଇଯାଏ । ରୁକ୍ମିଣୀଙ୍କର ଦାସ୍ୟଭାବ ଥିଲା । ସେ ସ୍ୱାଧୀନ ଭର୍ତ୍ତୃକାଙ୍କ ଭଳି ଚଗଲାମି କରୁ ନଥିଲେ । ସେ ଭଗବାନଙ୍କର ସେବା କରିବାରେହିଁ ଅଧିକ ଆନନ୍ଦ ଲାଭ କରୁଥିଲେ, ହାସ ବିନୋଦକୁ ସେ ଆଦୌ ପସନ୍ଦ କରୁ ନଥିଲେ । ଭଗବାନ ସେତେବେଳେ ବ୍ରଜ ଲୀଳା କଥା ଆଲୋଚନା କରୁଥିଲେ । ସେଠାରେ କିପରି ଗୋପିକାଗଣ ତାଙ୍କୁ ଗାଳି ଗୁଲଜ କରୁଥିଲେ, ତାଙ୍କପ୍ରତି ରୁଷ୍ଟା ହେଉଥିଲେ ଓ ଅଭିମାନ କରୁଥିଲେ ସେହି କଥା କହୁଥିଲେ । ପରେ ନିଜେ କିପରି ସେମାନଙ୍କ ନିକଟରେ ଅନୁନୟ ବିନୟ ସହକାରେ ଦୁଃଖ ପ୍ରକାଶ କରୁଥିଲେ ଓ ସେମାନଙ୍କ ପାଦ ଛୁଇଁ ଯେପରି ହାତ ଓଠ ଧରି ଅପରାଧୀଙ୍କ ଭଳି ହାତଯୋଡ଼ି ଠିଆ ହେଉଥିଲେ ତାହା ଆଲୋଚନା କରୁଥିଲେ । ସେ କହୁଥିଲେ ଏ ଦ୍ୱାରକାରେ ମୁଁ ଆଉ ସେ ରସ ପାଇ ପାରୁ ନାହିଁ, କେବଳ ସର୍ବଦା ସେବା ଗ୍ରହଣ କରୁଛି ।

ପ୍ରେମରେ ମାନ କରିବା, ରୁଷ୍ଟ ହେବା, କୋପ କରିବା, ଅଳି କରିବା ଓ ଜିଦ କରିବା ଏକାନ୍ତ ଆବଶ୍ୟକ । ଏହାଦ୍ୱାରା ପ୍ରେମର ସୌନ୍ଦର୍ଯ୍ୟ ବଢ଼େ ଓ ନବ ଜୀବନ ଲାଭ କରେ । ମଧୁର ମନ୍ଦ ହାସ ହସି ମୁଖ ଦର୍ଶନରେ ଯେତିକି ସୁଖ ମିଳେ, ତଦପେକ୍ଷା ଅଧିକ ସୁଖ ମିଳେ ପ୍ରିୟାର ପ୍ରେମକୋପରୁ, ପ୍ରିୟାର ମୁହଁ ଫୁଲାଇ କଥା କହିବାରୁ ।

ଭଗବାନ ମନେ ଚିନ୍ତା କଲେ—"ମୁଁ ତ ସର୍ବଦା ରୁକ୍ମିଣୀଙ୍କ ମୁଖକୁ ମନ୍ଦ ମନ୍ଦ ହାସଯୁକ୍ତ ଦେଖୁଛି, କ୍ରୋଧରେ ହୋଇଥିବା ଲାଲ ମୁଖ କିପରି ଶୋଭାପାଏ, ତାହା ମୁଁ ଦେଖି ନାହିଁ କିମ୍ବା ଅନୁଭବ ମଧ୍ୟ କରିନାହିଁ । ତାହା ଯେପରି ହୋଇଥାଉ ନା କାହିଁକି, ରୁକ୍ମିଣୀତ କେବେହେଲେ ହସ ଖୁସି ମଧ୍ୟରେ ମୋ ଉପରେ କ୍ରୋଧ କରି ନାହିଁ । ମୁଁ ସମୟ ସମୟରେ ତ କ୍ରୋଧ ଜାତ ହେଲାଭଳି କଥା କହିଥାଏ; କିନ୍ତୁ ସେ ତାହା ଶୁଣି ହସିଦିଏ । ତେଣୁ ମୁଁ ତାଙ୍କୁ ଅଧିକ କିଛି କହିବାକୁ ସାହାସ କରେ ନାହିଁ । ତାଙ୍କୁ ଯଦି କେବେ ଚିଡ଼େଇଲାଭଳି ଥଟ୍ଟା ମଜ୍ଜାରେ ହସି ହସି କଥା କୁହେଁ, ତାହା ହେଲେ ସେ ତା ହୃଦୟରେ ଭାର ହୋଇଯାଏ, ତାଙ୍କୁ ଅବଶ୍ୟ କ୍ରୋଧ ଆସେ, କିନ୍ତୁ ସେ ତାହା ପ୍ରକାଶ କରେ ନାହିଁ । ସେହି ସମୟରେ ସେ ବାହାରକୁ ଗାଳି ଦିବାକୁ ବସେ ଓ ମୁଁ ହସିଦିଏ ।" ଏହି ସବୁ କଥା ଚିନ୍ତା କରି ଶ୍ୟାମସୁନ୍ଦର କୌଣସି ସୁଖଦ ପରିବେଶ ଓ ସମୟକୁ ଅପେକ୍ଷା କରିବାକୁ ଲାଗିଲେ ।

ତନକର ଘଟଣା, ସୁଖଦ ବସନ୍ତ ଋତୁ ଆସିଥାଏ । ବାହାରେ ଜ୍ୟୋତ୍ସ୍ନା ବଧୌତ ରଜନୀର ଶୋଭା ପରିବେଶକୁ ଅତି ମନୋରମ କରିଥାଏ । ଘରେ ସାମାନ୍ୟ ଗରମ ଅନୁଭୂତ ହେଉଥିବାରୁ ପଙ୍ଖାର ବାୟୁ ଭଲ ଲାଗୁଥାଏ । ଶ୍ୟାମ ସୁନ୍ଦର ନିଜ ସୁଖଦ ଶଯ୍ୟାରେ ସୁଖରେ ଶୟନ କରିଥାଆନ୍ତି । ହାତୀଦାନ୍ତ ଗୋଡ଼ ବିଶିଷ୍ଟ ପଲଙ୍କ ଉପରେ ରେଶମ ଗଦି ବିଛା ହୋଇଥାଏ ଓ ତା ଉପରେ ଦୁଗ୍ଧ ଫେନ ନିଭ ଶୁଭ୍ର ଚଦର ପଡ଼ିଥାଏ । ଶ୍ୟାମ-ସୁନ୍ଦର ବାହାଣ କଡ଼ ମାଡ଼ି ତକିଆ ଉପରେ ହାତ ରଖି ଶୋଇ ଥାଆନ୍ତି । କୌଣସି ଦାସୀ ପିକଦାନୀ ଆଣି ରଖୁଥାଏ ତ କେହି ଚନ୍ଦନ ଆଣି ରଖୁଥାଏ, ଅନ୍ୟ କେହି ତାମ୍ବୁଲ ସଜାଡ଼ିବାରେ ଲାଗିଥାଏ । ଶ୍ରୀ ରୁକ୍ମିଣୀ ହାତରେ ଏକ ଚମର ପଙ୍ଖା ଧରି ବନମାଳୀଙ୍କୁ ପଙ୍ଖା କରୁଥାଆନ୍ତି । ଭଗବାନ ତ ଭକ୍ତଙ୍କୁ ସୁଖ ଦେବା ପାଇଁ ଓ ଧର୍ମର ମର୍ଯ୍ୟାଦା ରକ୍ଷା କରିବା ପାଇଁ ଅବତୀର୍ଣ୍ଣ ହୋଇ ଥାଆନ୍ତି, ତାଙ୍କର ତ ନିଜର କୌଣସି ଇଚ୍ଛା ନ ଥାଏ । କାରଣ ସେ ସ୍ୱୟଂ ଆପ୍ତକାମ ।

ଭଗବାନଙ୍କର ଭବ୍ୟ ଭବନରେ ଭୋଗର ସମସ୍ତ ସାମଗ୍ରୀ ସର୍ବଦା ସୁସଜ୍ଜିତ ହୋଇ ରହିଥାଏ । ସେଥିରେ ସ୍ୱଚ୍ଛ ଶୁଭ୍ର ବିତାନ (ଚନ୍ଦୁଆ) ଟଣା ହୋଇଥାଏ ଓ ସେଥିରେ ମୋତିର ଝାଲେଇ ଖଣ୍ଡା ହୋଇ ଝୁଲୁଥାଏ । ସେହି ଗୃହରେ ଘୃତ କିମ୍ବା ତେଲର ଦୀପ ଜଳେ ନାହିଁ; ମାତ୍ର କାନ୍ତିମତୀ ମଣିର ଆଲୋକରେ ସେହି ଗୃହ ଆଲୋକିତ ହୋଇଥାଏ । ଭବ୍ୟ ମଲ୍ଲୀକାର ମାଳା ସ୍ଥାନେ ସ୍ଥାନେ ଟଙ୍ଗା ହୋଇଥାଏ । ସେହି ଫୁଲଗନ୍ଧ ଲୋଭରେ ଭ୍ରମରଗଣ ଗୁଞ୍ଜନ କରି ଘର ମଧ୍ୟରେ ଉଡ଼ି ବୁଲୁ ଥାଆନ୍ତି । ଯେଉଁ ଯେପରି ସେମାନେ ମାଧବଙ୍କୁ ମଧୁମୟ ସଙ୍ଗୀତ ଶୁଣାଇବାରେ ବ୍ୟସ୍ତ । ପୂର୍ଣ୍ଣିମାର ପୂର୍ଣ୍ଣଚନ୍ଦ୍ର ଉଦିତ ହୋଇ ପ୍ରଭୁଙ୍କ ଦର୍ଶନର ବ୍ୟଗ୍ରତା ପ୍ରକାଶ କରୁଥାଆନ୍ତି । ଯେତେବେଳେ ସେ ଜାଣିଲେ ଯେ ପ୍ରଭୁ ଅନ୍ତଃପୁରରେ ନିଜ ପ୍ରିୟାଙ୍କ ସହିତ ଅଛନ୍ତି ଓ ନିଜେ ସୁଖ ପୂର୍ବକ ପଲଙ୍କ ଉପରେ ଶୟନ କରିଛନ୍ତି, ସେତେବେଳେ ତାଙ୍କର ଅଧୀରତା ଆହୁରି ବଢ଼ିଗଲା । ସେ ନିଜେ ତ ଅନ୍ତଃ ପୁରକୁ ଯାଇପାରିଲେ ନାହିଁ, ତେଣୁ ନିଜର କିରଣକୁ ସେଠାକୁ ପଠାଇଲେ । କିରଣର ଶୁଭ୍ର ହାସ୍ୟରେ ସେହି ଭବନ ପରମ ସୁଶୋଭିତ ହୋଇ ଉଠୁଥିଲା । ଚନ୍ଦ୍ର ଦୂର ଆକାଶରୁ ଝରକା ପାଖରେ ଉଙ୍କି ମାରି ଭଗବାନଙ୍କୁ ଦର୍ଶନ କରିବାକୁ ଚେଷ୍ଟା କରୁଥିଲେ । ଭବନ ଭିତରେ ଥିବା ପାତ୍ରରେ ପ୍ରଜ୍ୱଳିତ ହୋଇ ଉଠୁଥିବା ଅଗୁରୁ ଧୂପର ଧୂଆଁ ଚନ୍ଦ୍ରଦେବଙ୍କର ଏ ପ୍ରକାର ଅଶିଷ୍ଟ ବ୍ୟବହାରରେ କୁପିତ ହୋଇ ଝରକାର ଛିଦ୍ର ଦେଇ ବାହାରକୁ ଆସି ନିଶାନାଥଙ୍କ ନୟନରେ ଭରିସିବାକୁ ଚେଷ୍ଟା କଲା । ପାରିଜାତ ଉପବନର ସୁଗନ୍ଧରେ ସୁବାସିତ ବାୟୁ ବନମାଳୀଙ୍କ ବସ୍ତ୍ରରେ ଓ ରୁକ୍ମିଣୀଙ୍କ ଶାଢ଼ୀରେ କ୍ରୀଡ଼ା କରିବାକୁ ଲାଗିଲା ।

ନିଜର ପତିଙ୍କୁ ପରିଚର୍ଯ୍ୟା କରୁଥିବା ବିଦର୍ଭ ନନ୍ଦିନୀଙ୍କର ଶୋଭା ଅପୂର୍ବ ଥିଲା । ଏପର୍ଯ୍ୟନ୍ତ କଣେ ସୁନ୍ଦର ସଖୀ ରତ୍ନଦଣ୍ଡଯୁକ୍ତ ଚାମର ଧରି ଶ୍ୟାମସୁନ୍ଦରଙ୍କୁ ବିଞ୍ଚି

ଦେଉଥିଲା । ଏବେ ସେହି ଚାମରଟି ଧରି ନିଜେ ରୁକ୍ମିଣୀ ପଙ୍ଖା କରିବାକୁ ଲାଗିଲେ । ଚାମର ହଲାଇବାରୁ ତାଙ୍କ କରସ୍ଥ ରତ୍ନଖଚିତ କଙ୍କଣ ଚୁଡ଼ି ସହିତ ମିଶି ମଧୁର ଝଙ୍କାର ସୃଷ୍ଟି କରୁଥିଲା । ପଦ୍ମ ପାଖୁଡ଼ାଠାରୁ ଅଧିକ କୋମଳ ତାଙ୍କର ପତଳା ପତଳା ଅଙ୍ଗୁଳିରେ ମଣିମୟ ମୁଦ୍ରିକା ସୁଶୋଭିତ ହେଉଥିଲା । ତହିଁରେ ଖଚିତ ଚାମର ପଙ୍ଖା କରୁଥିବା ସମୟରେ ଝଟକ ଉଠୁଥିଲା । ପରିଶ୍ରମରେ ଲୁପ୍ତ ତଥା କଞ୍ଚୁଳି (କବଚ) ଦ୍ୱାରା ଆବୃତ ତାଙ୍କର ଉନ୍ନତ ବକ୍ଷସ୍ଥଳ ଶ୍ରମ ଯୋଗୁଁ ଦୋଳାୟମାନ ହୋଇ କେଶର କସ୍ତୁରୀର ସୁଗନ୍ଧକୁ ଚତୁର୍ଦ୍ଦିଗରେ ବିତରଣ କରୁଥିଲା । ନିଜର ମଣିମୟ ନୂପୁରର ସୁମଧୁର ଧ୍ୱନିରେ ମଦନମୋହନଙ୍କର ଚିତ୍ତ ଉତ୍କଣ୍ଠିତ ହୋଇ ଉଠୁଥିଲା । କୁଙ୍କୁମ ରଙ୍ଗରେ ଅରୁଣବର୍ଣ୍ଣ ଦିଶୁଥିବା ନିଜ କଣ୍ଠର ମୋତି ହାର ଦୋଳାୟମାନ ହୋଇ ଅତ୍ୟନ୍ତ ଶୋଭା ପାଉଥିଲା । ସୁନ୍ଦର ଶାଢ଼ୀରେ ଆବୃତ କଟିଦେଶର ମହାମୂଲ୍ୟମୟୀ ଅଣ୍ଟାସୂତା ରୁଣୁଝୁଣୁ ଶବ୍ଦ କରୁଥିଲା । କୁଟିଳ ଅଳକାବଳି ଦ୍ୱାରା ଆବୃତ ମୁଖାରବିନ୍ଦକୁ ତଳକୁ କରି ସେ ବସିଥିଲେ । ଅତ୍ୟନ୍ତ ଅପଲକ ଭାବରେ ତାଙ୍କର ଅନୁପମ ଆନନକୁ ନିରୀକ୍ଷଣ କରୁଥିଲେ । ମଝେ ମଝେ କନକ କୁଣ୍ଡଳର କାନ୍ତିରେ ସୁଶୋଭିତ ତଥା ପଦକ ବିଭୂଷିତ କଣ୍ଠକୁ ଉଠାଇ ନିଜର ପ୍ରାଣନାଥଙ୍କ ଆଡ଼କୁ ସେ ଚାହୁଁଥିଲେ । କେବେ ଯଦି ଦୁହିଁଙ୍କର ନୟନ ଏକାଠି ହୋଇ ଯାଉଥିଲା, ତେବେ ମଧୁର ହାସ୍ୟଯୁକ୍ତ ଦୃଷ୍ଟିକୁ ଫେରାଇ ନେଇ ସେ ପୁନଶ୍ଚ ଭୂମି ଉପରେ ଦୃଷ୍ଟି ପକାଉଥିଲେ ।

ଏହି ପ୍ରକାର ଭଗବାନଙ୍କ ସଙ୍ଗରେ ଗୃହସ୍ଥପରି ରହୁଥିବା ଲକ୍ଷ୍ମୀଙ୍କ ଅବତାର ସ୍ୱରୂପା ରୁକ୍ମିଣୀଙ୍କୁ ଦେଖି ଆଜି ତାଙ୍କ ସଙ୍ଗେ ଭଗବାନ ହାସ କୌତୁକ କରିବାକୁ ଇଚ୍ଛା କଲେ । ସେ କହିଲେ—"ପ୍ରିୟେ ! ମୁଁ ତୁମକୁ ଗୋଟିଏ କଥା ପଚାରିବି, ତୁମେ ମୋତେ ଖରାପ ତ ଭାବିବ ନାହିଁ ?"

ଅତ୍ୟନ୍ତ ସ୍ନେହଭରା ବୀଣା ବିନିନ୍ଦିତ ସ୍ୱରରେ ରୁକ୍ମିଣୀ କହିଲେ—"ପଚାରନ୍ତୁ, ପ୍ରାଣନାଥ ! ମୁଁ କାହିଁକି ବା ଆପଣଙ୍କ କଥାକୁ ଖରାପ ଭାବିବି ? ପତ୍ନୀ କ'ଣ କେବେ ନିଜ ପତିଙ୍କ କଥାକୁ ଖରାପ ବୋଲି ମନେ କରିପାରେ ?"

ଭଗବାନ ପଚାରିଲେ—"ଆଚ୍ଛା, କହିଲ ଦେଖି, ତୁମେ ମୋର କେଉଁ ଗୁଣକୁ ଦେଖି ମୋତେ ବରଣ କରିଛ ?"

ରୁକ୍ମିଣୀ ବୁଝିପାରିଲେ ଯେ, ଭଗବାନ ତାଙ୍କ ସହିତ ହାସ କୌତୁକ ଖେଳ ଖେଳିବାକୁ ଚାହୁଁଛନ୍ତି, ତେଣୁ ସେ କିଛି ନ କହି ହସିଦେଇ ନୀରବ ରହିଲେ । କିନ୍ତୁ ଭଗବାନ ତ ଆଜି ତାଙ୍କୁ ରଗାଇବା ପାଇଁ ଆଗ୍ରହୀ । ସେ ଆଜି ତାଙ୍କର କୌଣସି କଥା ନ ଶୁଣି କହିଲେ—"ଦେଖ, ମୋର ଶଙ୍କା ଉପୁଜୁଛି ଯେ, ତୁମର ବିବାହ

ନ ହେଉଥାନ୍ତା ବୋଲି ମୁଁ ଭାବୁ ନାହିଁ । ବଡ଼ ବଡ଼ ନୃପତି ତୁମକୁ ବିବାହ କରିବା ପାଇଁ ଲାଳାୟିତ ଥିଲେ । ସେମାନେ ମୋଠାରୁ ଅଧିକ ଐଶ୍ୱର୍ଯ୍ୟଶାଳୀ ଲୋକପାଳ ଥିଲେ ଓ ଉଦାରତା, ସୁକୁମାରତା, ସୁନ୍ଦରତା ଓ ବୀରତ୍ୱରେ ବିଶ୍ୱ ପ୍ରସିଦ୍ଧ ଥିଲେ । ଏହା ମଧ୍ୟ ନୁହେଁ ଯେ, ତୁମେ ସଙ୍କୋଚ ବଶତଃ ତାହା ସହିତ କଥା କହିବାକୁ ଅସମର୍ଥ ଥିଲ । ତୁମର ବଡ଼ଭାଇ ଓ ପିତା ତୁମକୁ ସେହି ଶକ୍ତିଶାଳୀ ରାଜାଙ୍କ ସହିତ ବିବାହ ଦେବାକୁ ଚାହୁଁଥିଲେ । ସେମାନେ ବରଯାତ୍ରୀ ଧରି ତୁମକୁ ବିବାହ କରିବା ପାଇଁ ମଧ୍ୟ ତୁମ ନଗର ମଧ୍ୟକୁ ଆସିଥିଲେ । ସେସବୁ ସର୍ବସମର୍ଥ ରାଜାମାନଙ୍କୁ ଛାଡ଼ି ତୁମେ ମୋତେ କାହିଁକି ବରଣ କଲ ? ସେମାନେ ତ ତୁମ ଅନୁରୂପ ଥିଲେ । ମୁଁ କୌଣସି ପ୍ରକାର ତ ତୁମ ଯୋଗ୍ୟ ନୁହେଁ । ତେବେ ତୁମେ ଏପରି ଭୁଲ କାହିଁକି କଲ ?”

ରୁକ୍ମିଣୀ ଜାଣି ପାରୁଥିଲେ ଯେ ଶ୍ରୀକୃଷ୍ଣ ତାଙ୍କୁ ଚିଡ଼ାଇବାକୁ ଚାହିଁଛନ୍ତି । ତେଣୁ ବିବାହ ସମ୍ବନ୍ଧରେ ତାଙ୍କୁ ସ୍ମରଣ କରାଇ ଦେଇ ହସି ଉଡ଼ାଇଦେବାକୁ ବସିଛନ୍ତି । ଏହି କାରଣରୁ ସେ କିଛି କହିଲେ ନାହିଁ । ସେ ଭଗବାନଙ୍କ ଶ୍ରୀମୁଖକୁ ଚାହିଁ ଲଜ୍ଜା ପ୍ରକାଶ କଲେ । ଭଗବାନ ଆଜି ଆଉ ଚୁପହୋଇ ନ ରହି ତାଙ୍କ ଉତ୍ତରକୁ ଅପେକ୍ଷା ନକରି କହିବାକୁ ଲାଗିଲେ—“ଦେଖ ! ମୋତେ ନିଜର ପତି ରୂପେ ବରଣ କରି ତୁମେ ବଡ଼ ଭୁଲ କରିଛ । ସେମାନଙ୍କ ମଧ୍ୟରେ ଜଣେ ବୋଲି ମୋତେ ଗଣନା କରିଛ ।

୧ । ତୁମେ ରାଜକନ୍ୟା । ରାଜକନ୍ୟା କେବଳ ରାଜପୁତ୍ରଙ୍କୁ ବିବାହ କରିବା ଉଚିତ । ମୁଁ ତ ରାଜା ନୁହେଁ. ପଳାତକ ରାଜାଙ୍କ ଭୟରେ ନିଜର ପ୍ରାଣରକ୍ଷା କରି ମୁଁ ପଳାଇ ଆସି ଏ ସମୁଦ୍ର ମଝିରେ ରହୁଛି । ମୁଁ ରାଜସିଂହାସନରେ ବସିବା ପାଇଁ ଅଧିକାରୀ ନୁହେଁ । ବଡ଼ ବଡ଼ ରାଜା ମୋତେ ଶତ୍ରୁ ବୋଲି ମନେକରନ୍ତି । ଏଥିପାଇଁ ତୁମର ମୋର ସମ୍ପର୍କ ସ୍ଥାପନ ଉଚିତ ହୋଇ ନାହିଁ ।

୨ । ଦ୍ୱିତୀୟ କଥା ହେଲା—ପୁରୁଷପଦ ପ୍ରତିଷ୍ଠାରେ ନିଜର ଅନୁରୂପ ନହୋଇ ମଧ୍ୟ ଅତ୍ୟନ୍ତ ପ୍ରେମୀ ଅନୁରାଗଯୁକ୍ତ ହୋଇଥାନ୍ତି, ସ୍ତ୍ରୀ ଲୋକମାନଙ୍କୁ ନିଜ ନିଜର ପ୍ରେମମୟ ବ୍ୟବହାରରେ ତାଙ୍କ ଅନୁରୂପ କାର୍ଯ୍ୟ କରି ସେମାନଙ୍କ ଅଧୀନରେ ରହି ସେମାନଙ୍କୁ ପ୍ରସନ୍ନ କରାଇ ପାରନ୍ତି । ତଥାପି ଅକୁଳୀନ ପୁରୁଷକୁ ମଧ୍ୟ ସ୍ତ୍ରୀମାନେ ବରଣ କରି ନଥାନ୍ତି । ମୁଁ କିନ୍ତୁ ସେପରି ନୁହେଁ । ସ୍ତ୍ରୀମାନଙ୍କ ପ୍ରତି ମୋର କୌଣସି ଆସକ୍ତି ନାହିଁ । ସେମାନଙ୍କ ପ୍ରତି ମୋର କୌଣସି ବିଶେଷ ଆକର୍ଷଣ ନାହିଁ । ମୁଁ ଅସ୍ପଷ୍ଟ ଓ ଅଲୌକିକ ମାର୍ଗର ଅନୁସରଣକାରୀ । ଏପରି ନୀରସ ଓ ଜଡ଼ ପୁରୁଷର ପାଲରେ ପଡ଼ି ପତ୍ନୀମାନେ ଦୁଃଖଭୋଗ କରନ୍ତି । ସେମାନଙ୍କର କୌଣସି ଆନ୍ତରିକ ପ୍ରସନ୍ନତା ଲାଭ ହୁଏ ନାହିଁ ।

୩ । ତୃତୀୟ କଥା ହେଲା—କୁଳୀନ ନ ହୋଇ, ପଦ ପ୍ରତିଷ୍ଠା ନଥାଇ, ତାମ୍‌ଜନିତ ଗୌରବ ନ ହୋଇ ଯଦି କେହି ଧନୀ ହୋଇଥାଏ, ତାହାହେଲେ ସେହି ଧନ ଲୋଭରେ ମଧ୍ୟ ସ୍ତ୍ରୀଲୋକମାନେ ପୁରୁଷକୁ ପ୍ରେମ କରିବାରେ ଲାଗନ୍ତି । ମୋର ତ ଧନ ନାହିଁ, ମୁଁ ନିର୍ଦ୍ଧନ ଓ ଫକଡ଼ଗ୍ରାମ ଗିରିଧାରୀ । ମୋର ସାଥୀମାନେ ଅକିଞ୍ଚନ, ନିର୍ଦ୍ଧନ ଓ ଦୀନ ଅଟନ୍ତି । ମୁଁ ଯେପରି ମୋର ପ୍ରଶଂସାକାରୀମାନେ ମଧ୍ୟ ସେହିପରି । ସେହି ଅକିଞ୍ଚନ ନିର୍ଦ୍ଧନ ଭକ୍ତଗଣ ହିଁ ମୋର ପ୍ରଶଂସା କରି କରି ମୋତେ ଏତେ ପ୍ରସିଦ୍ଧ କରିଅଛନ୍ତି । ମୁଁ ସମସ୍ତ ଜୀବଙ୍କର ନାଥ ହୋଇଥିବାରୁ ସମ୍ପତ୍ତିଶାଳୀ ଲୋକମାନେ ମୋ ସମ୍ମୁଖକୁ ଆସିବାକୁ ଭୟ କରନ୍ତି ! ଧନୀ ଲୋକମାନେ ମୋତେ ପ୍ରେମ କରନ୍ତି ନାହିଁ । ତେଣୁ ମୋର ଧନ ନାହିଁ କି ଧନବାନଙ୍କ ସହିତ ମୋର ମିତ୍ରତା ନାହିଁ ।

୪ । ଚତୁର୍ଥ କଥା ଏହି ଯେ—ସମ ସମ୍ବନ୍ଧ ଓ ସମମୈତ୍ରୀ ଥିବା ବ୍ୟକ୍ତିଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟ ଶୋଭା ପାଏ । ସବୁ ବିଷୟରେ ସମାନତା ନଥିଲେ ସୁଦ୍ଧା କେତେକ ବିଷୟରେ ତ କିଞ୍ଚିତ ସ୍ତରରେ ସମାନତା ଥିବ । ତୁମ ମୋ ମଧ୍ୟରେ କୌଣସି ବିଷୟରେ ମଧ୍ୟ ସମାନତା ନାହିଁ । ତୁମେ ଧନବାନ୍ ରାଜାଙ୍କର କନ୍ୟା, ଆମେ ଛଠା ଚୁଲିବାଲା ଯାଯାବର । ଆଜି ଏଠାରେ ତ କାଲି ସେଠାରେ । ମୋର ନିଜର କୌଣସି ଘର ନାହିଁ କି ଦ୍ୱାର ନାହିଁ । ତୁମ କୁଳ ଆମ କୁଳ ତ ସମାନ ନୁହେଁ । ତୁମେ ରାଜକନ୍ୟା; କିନ୍ତୁ ମୁଁ ସାଧାରଣ ଗୋଟିଏ ରାଜ୍ୟଭ୍ରଷ୍ଟ ଥାଟ ପାଟ ବହିଷ୍କୃତ ନାମ ମାତ୍ର କ୍ଷତ୍ରୀୟ । ତୁମେ ଐଶ୍ୱର୍ଯ୍ୟଶାଳୀ ରାଜକନ୍ୟା, ମୁଁ ଐଶ୍ୱର୍ଯ୍ୟହୀନ ହୋଇ ବନ କାଟୁଥିବା ବ୍ୟକ୍ତି । ତୁମେ ଗୋରୀ କିନ୍ତୁ ମୁଁ କାଳିଆଟାଏ । ତୁମେ ଗମ୍ଭୀର ପ୍ରକୃତିର କିନ୍ତୁ ମୁଁ ଚଞ୍ଚଳ ଚପଳ । ତୁମେ ଗୁଣବତୀ, ମୁଁ ନିର୍ଗୁଣ । ଏହିସବୁ କାରଣରୁ ତୁମର ମୋର ଏକାନ୍ତ ହେବାର ଅନୁରୂପ ନୁହେଁ । ତୁମେ ଆଗତ ଭବିଷ୍ୟତ ଚିନ୍ତା ନ କରି, ନ ବୁଝି ସୁଝି ମୋ ସହିତ ସମ୍ବନ୍ଧ ସ୍ଥାପନ କରି ଅତ୍ୟନ୍ତ ଅଦୂରଦର୍ଶିତାର କାର୍ଯ୍ୟ କରିଅଛ । ଯାହା ହେବାର ତ ହୋଇଯାଇଛି ସେଥି ନେଇ କୌଣସି ଚିନ୍ତା କରିବାର ନାହିଁ । ଏବେ ମଧ୍ୟ କିଛି ବିଗିଡ଼ି ଯାଇ ନାହିଁ । ପ୍ରାତଃ କାଳର ବିସ୍ମରଣ ପୁନଶ୍ଚ ସାୟଂକାଳରେ ସ୍ମରଣ ହୁଏ । ତେବେ ସେପରି ଭୁଲକୁ ଭୁଲ୍ ବୋଲି ଧରାଯାଏ ନାହିଁ । ଏବେ ମଧ୍ୟ ଭୁଲ ସୁଧାର ହୋଇପାରିବ, ତ୍ରୁଟିକୁ ପରିମାର୍ଜିତ କରାଯାଇ ପାରିବ । ତେଣୁ ଏବେ ତୁମେ ଗୋଟିଏ କାମ କର, ମୋତେ ଛାଡ଼ି ଅନ୍ୟ କୌଣସି ସୁନ୍ଦର ପ୍ରଭାବଶାଳୀ ଯୁବ ରାଜକୁମାରଙ୍କୁ ବରଣ କର । ଐଶ୍ୱର୍ଯ୍ୟଶାଳୀ ରାଜପୁତ୍ର ବହୁତ ଅଛନ୍ତି ଓ ତୁମେ ମଧ୍ୟ ଅତି ସୁନ୍ଦରୀ । ବଡ଼ ବଡ଼ ରାଜା ତୁମକୁ ପ୍ରସନ୍ନତା ପୂର୍ବକ ଅତି ଆଦର ସହକାରେ ଗ୍ରହଣ କରିବେ । ତୁମେ ଯଦି ଚାହିଁ, ତେବେ ତୁମର ପ୍ରଥମ ପତି ଶିଶୁପାଳଙ୍କୁ ପତିରୂପେ ପୁନଶ୍ଚ ବରଣ କରିପାର । ତାଙ୍କଠାରେ ଯଦି କୌଣସି ତ୍ରୁଟି ଦେଖିବ, ତାହାହେଲେ ସେ ଯେଉଁ ସମ୍ରାଟ ଜରାସନ୍ଧଙ୍କୁ ଆଶ୍ରୟ କରିଛନ୍ତି ଓ ଅଧୀନତା ସ୍ୱୀକାର କରିଛନ୍ତି, ତାଙ୍କ ହାତ ଧରିନେବ । ମହାରାଜ ଶାଲ୍ୱ ମଧ୍ୟ ବଡ଼

ବଳଶାଳୀ ରାଜା । ତାଙ୍କ ସହିତ ମଧ୍ୟ ନୂତନ ସମ୍ବନ୍ଧ ଯୋଡ଼ି ପାର ! ମୋ ମାଉସୀ ପୁଅ ଦନ୍ତବକ୍ର ମଧ୍ୟ ଅତ୍ୟନ୍ତ ବଳବାନ, ତୁମେ ତାଙ୍କ ପାଖକୁ ଯାଇ ତାଙ୍କର ମଧ୍ୟ ସ୍ତ୍ରୀ ହୋଇପାର । କିମ୍ବା ତୁମେ ଅନ୍ୟ ଯାହାଙ୍କୁ ଚାହଁ ତାଙ୍କୁ ଯାଇ ବିବାହ କରିପାର । ତୁମ ଯିବାର ସମସ୍ତ ସୁବ୍ୟବସ୍ଥା ମୁଁ କରିଦେବି ।

ତୁମେ କହିପାର ଯେ, "ଯଦି ମୁଁ ତୁମକୁ ଛାଡ଼ି ଦେବାର ଥିଲା, ତାହାହେଲେ ତୁମକୁ କାହିଁକି ତୁମର ପିତାଙ୍କ ରାଜଧାନୀ କୁଣ୍ଡିନ-ପୁରରୁ ରଥରେ ବସାଇ ନେଇ ଆସିଲି, ସେତେବେଳେ ମୁଁ ତୁମ ରାଜଧାନୀକୁ ନ ଯାଇଥିଲେ ତୁମ ଭାଗ୍ୟରେ ଯାହାଙ୍କ ସହିତ ବିବାହ କରିବାର ଯୋଗ ଥାଆନ୍ତା, ତୁମେ ତାଙ୍କ ସହିତ ବିବାହ କରି ଚାଲି ଯାଇଥାଆନ୍ତ ।" ମୁଁ ଏହି ପ୍ରଶ୍ନ ଉପରେ ଏତିକି କହିପାରେ ଯେ, ଏହାର ଏକ କାରଣ ଥିଲା । ମୁଁ ତୁମକୁ ପ୍ରେମବଶତଃ ସେଠାକୁ ଆଣିବାକୁ ଯାଇ ନଥିଲି । ମୁଁ ମୋର ପ୍ରତିଷ୍ଠା ବଢ଼ାଇବା ନିମିତ୍ତ ସେଠାକୁ ଯାଇଥିଲି । ତୁମର ବଡ଼ଭାଇ ରୁକ୍ମି ମୋ ସହିତ ଦ୍ୱେଷ କରୁଥିଲେ । ତୁମର ପିତାଙ୍କର ଇଚ୍ଛାଥିଲା, ତୁମକୁ ମୋ ସହିତ ବିବାହ ଦେବା ପାଇଁ । କିନ୍ତୁ ରୁକ୍ମି ଦ୍ୱେଷ ବଶତଃ ସେଥିରେ ବାଧା ସୃଷ୍ଟି କଲେ । ସେ ମୋତେ ଅପମାନିତ କଲେ । ତାହା ମୁଁ ସହ୍ୟ କରିପାରିଲି ନାହିଁ । ତେଣୁ ସେହି ଗର୍ବୀ ମଦୋନ୍ମତ୍ତ ରାଜାମାନଙ୍କ ମାନ ମର୍ଦ୍ଦନ କରିବା ନିମନ୍ତେ ମୁଁ ତୁମକୁ ସେଠାରୁ ହରଣ କରି ନେଇ ଆସିଲି । କାରଣ ମୁଁ ହେଉଛି ଦୁଷ୍ଟଦଳନକାରୀ । ତେଣୁ ମୁଁ ଏପରି ସାହସ କରିଥିଲି । ତୁମେ ଭାବୁଥିବ ଯେ, ମୁଁ ତୁମ ରୂପରେ ଆକୃଷ୍ଟ ହୋଇ ତୁମକୁ ଏଠାକୁ ନେଇ ଆସିଲି ବୋଲି । ମୁଁ ତ ଆତ୍ମାରାମ, ମୁଁ ମୋ ନିଜଠାରେ ସର୍ବଦା ସନ୍ତୁଷ୍ଟ ହୋଇ ରହିଥାଏ । ସ୍ତ୍ରୀ ପୁତ୍ରଙ୍କ ସହିତ ମୋର କି ସମ୍ପର୍କ ? ମୋ ଦୃଷ୍ଟିରେ ମାଟି, କାଠ, ପଥର ଯାହା, ହାଡ଼ ମାଂସରେ ସୃଷ୍ଟି ସ୍ତ୍ରୀ ମଧ୍ୟ ତାହା । ମୁଁ ତ ଉଦାସୀନ । ଯେପରି କୌଣସି ଭବନରେ ଦୀପ ଜଳୁଥାଏ ଓ ସେହି ଦୀପ ଆଲୋକରେ ଏକ ଲୋକ ଖେଳ କରୁଥାଏ, ଅନ୍ୟ ଜଣେ କାହାରିକୁ ବଧ କରୁଥାଏ, ତୃତୀୟ ଜଣେ ମଦ୍ୟପାନ କରୁଥାଏ, ଚତୁର୍ଥ ଜଣେ ନିନ୍ଦିତ କାର୍ଯ୍ୟ କରୁଥାଏ, ପଞ୍ଚମ ବ୍ୟକ୍ତି କୌଣସି ପୁସ୍ତକ ଲେଖୁଥାଏ, ଷଷ୍ଠ ବ୍ୟକ୍ତି ଅନ୍ୟ କୌଣସି ପରୋପକାର କାର୍ଯ୍ୟ କରୁଥାଏ । ତାତ୍ପର୍ଯ୍ୟ ଏହି ଯେ ଦୀପ ସମସ୍ତଙ୍କୁ ଆଲୋକ ପ୍ରଦାନ କରି ଚୁପ ଚାପ ରହିଥାଏ । ସେ ମନ୍ଦ କାର୍ଯ୍ୟ କରୁଥିବା ଲୋକଙ୍କୁ ନିନ୍ଦା କରେ ନାହିଁ କିମ୍ବା ଭଲ କାର୍ଯ୍ୟ କରୁଥିବା ଲୋକଙ୍କୁ ପ୍ରଶଂସା କରେ ନାହିଁ । ସେ ଯେମିତି ସମସ୍ତଙ୍କୁ ସମାନ ଭାବରେ ଆଲୋକ ପ୍ରଦାନ କରେ, ମୁଁ ସେହିପରି ଦେହ, ଗୃହ ଆଦିଠାରୁ ଉଦାସୀନ ହୋଇ ନିଷ୍କ୍ରିୟ ଏବଂ କେବଳ ସାକ୍ଷୀ ମାତ୍ର ହୋଇ ରହିଥାଏ । ଏ ପ୍ରକାର ଲୋକଠାରେ ତୁମର କି ପ୍ରୟୋଜନ ? ତୁମେ ତୁମ ପୁଡ଼ା ପୁଟୁଳା ବାନ୍ଧି ଯିବାକୁ ପ୍ରସ୍ତୁତ ହୋଇଯାଅ, ମୁଁ ରଥ ସଜାଇବାର ବ୍ୟବସ୍ଥା କରୁଛି ।"

ସୂତ କହିଲେ—"ମୁନିଗଣ ! ଭଗବାନ୍ ଏହି ପ୍ରକାର କଥା କହି ମୌନ ହୋଇଗଲେ । ରୁକ୍ମିଣୀ ତ ସବୁ କଥା ଶୁଣି ସହି ଯାଉଥିଲେ, କିନ୍ତୁ ଯେତେବେଳେ ଭଗବାନ ବାରମ୍ବାର ଗମ୍ଭୀର ହୋଇ କହିଲେ ଯେ, 'ଉତ୍ତମର ଯାହା ସଙ୍ଗରେ ଯିବାକୁ ଇଚ୍ଛା ଚାଲି ଯାଅ, ଅନ୍ୟ ପତି ବରଣ କରି ନିଅ', ଏ କଥାରେ ତାଙ୍କ ମନରେ ଅତ୍ୟନ୍ତ କ୍ଷୋଭ ଜାତ ହେଲା । ଭୟ ଏବଂ ଆଶଙ୍କାରେ ତାଙ୍କ ହୃଦ ଥରିବାକୁ ଲାଗିଲା । ନେତ୍ରରୁ ନିରନ୍ତର ଅଶ୍ରୁ ବିସର୍ଜନ ହେଲା । ସେ ଇଚ୍ଛାପୂର୍ଣ୍ଣ ପଦେହେଲେ କଥା ଉଚ୍ଚାରଣ କଲେ ନାହିଁ । ଚିନ୍ତାରେ ନିମଗ୍ନ ହୋଇ ସେ ସବୁଦା ତଳକୁ ଚାହିଁ ରହିଲେ । ସେ ନିଜର ଅରୁଣବର୍ଣ୍ଣ ବିଶିଷ୍ଟ ନଖର ଦ୍ୟୁତିରେ ଭୂପୃଷ୍ଠକୁ ଆଲୋକିତ କରି ବିଦାରଣ କରୁଥିଲେ । ତାଙ୍କର ଅଞ୍ଜନ ରଞ୍ଜିତ ଅଶ୍ରୁ ବିନ୍ଦୁ ଝରି ଆସି କୁଚକୁଙ୍କୁମର ବୋଳକୁ ଧୋଇ ଦେଉଥିଲା । ମାନସିକ ଦୁଃଖ, ପତି ତ୍ୟାଗର ଭୟ ଓ ଅତ୍ୟନ୍ତ ଶୋକ କାରଣରୁ ତାଙ୍କର ବୁଦ୍ଧି ଲୋପ ହେଲାଭଳି ଜଣା ପଡୁଥିଲା । ଦୁଃଖରେ ସେ ଏତେ ଶୀଘ୍ର ଏପରି ଦୁର୍ବଳ ହୋଇ ପଡିଲେ ଯେ, ତାଙ୍କର କଙ୍କଣ ସ୍ଥାନଚ୍ୟୁତ ହୋଇ ଖସି ପଡ଼ିଲା । ସେ ଯେଉଁ ଚାମରରେ ବିଞ୍ଚି ଦେଉଥିଲେ, ତାହା ସ୍ୱତଃ ତାଙ୍କ କୋମଳ କରରୁ ଖସି ପଡ଼ିଲା । ବୁଦ୍ଧି ବିଭ୍ରମ ହୋଇ ଯିବାରୁ ସେ ମୂର୍ଚ୍ଛିତା ପ୍ରାପ୍ତ ହୋଇଗଲେ । ତାଙ୍କର ଚରଣ ମୃଣାଳ ନିଜ ଶରୀରର ବୋଝକୁ ସମ୍ଭାଳିବାରେ ସମର୍ଥ ହୋଇ ପାରିଲେ ନାହିଁ । ସେ ନଇଁ ଥରିବାକୁ ଲାଗିଲେ । ଅଧିକ ସମୟ ଠିଆହୋଇ ପାରିଲେ ନାହିଁ । ପ୍ରବଳ ବାୟୁ ଝାଙ୍କରେ ଯେପରି କଦଳୀ ଗଛ ପଡ଼ିଯାଏ, ସେ ସେହିପରି ଭୂମି ଉପରେ ଲମ୍ବିତ ହୋଇ ପଡ଼ିଲେ । ତାଙ୍କର ବସ୍ତ୍ର ପରିଚ୍ଛଦର ଠିକଣା ରହିଲା ନାହିଁ । ଅଳଙ୍କାରମାନ ଛିଣ୍ଡି ଏଣେତେଣେ ବିଛୁଡ଼ି ହୋଇ ପଡ଼ିଲା । ଅବଗୁଣ୍ଠନ ଖୋଲିଗଲା । ତାଙ୍କର କଳା କଳା କେଶଗୁଚ୍ଛ ଆଲୁଳାୟିତ ହୋଇ ପଡିଲା । ବେଣୀବନ୍ଧନ ଖୋଲିଯାଇ ଢିଲା ହୋଇଗଲା । ତହିଁରେ ବନ୍ଧା ହୋଇଥିବା ମାଳତୀ ମଲ୍ଲିକା ପୁଷ୍ପ ଓ ମାଳା ଛିଣ୍ଡି ଯାଇ ଏଣେ ତେଣେ ବିଞ୍ଚିହୋଇ ପଡ଼ିଲା । ଭଗବାନ ପୂର୍ବରୁ କେବେ ଯଦି ଏ ପ୍ରକାର ବିନୋଦ ହୋଇଥାନ୍ତେ, ତେବେ ସେ ଜାଣି-ଥାଆନ୍ତେ; କିନ୍ତୁ ତାଙ୍କ ପାଇଁ ଏହା ନୂତନ ବିନୋଦ ଥିଲା । ଏଥିପାଇଁ ସେ ଏତେ ଅଧିକ ମାନସିକ କ୍ଲେଶ ଭୋଗ କଲେ ।

ଭଗବାନ ଚିନ୍ତା କଲେ—"ଆରେ ! ଇଏ ତ ପରିହାସଙ୍କରୁ ନିଜକୁ ସାମ୍ଭି ପଡ଼ିଲେଣି ! ହାସ୍ୟ ବିନୋଦର ଗାମ୍ଭୀର୍ଯ୍ୟରେ ଅନଭିଜ୍ଞ ବୈଦର୍ଭୀ ଅତ୍ୟନ୍ତ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଲେଣି । ଦେଖାଯାଉ ମୋ ଉପରେ ତାଙ୍କର କେତେ ଅନୁରାଗ, ପ୍ରତ୍ୟକ୍ଷ ତ୍ୟାଗର କଳ୍ପନା ତ ବହୁ ଦୂରର କଥା, ହାସ ବିନୋଦରେ କେବଳ ବାଣୀଦ୍ୱାରା ଇଏ ମୋର ବିୟୋଗକୁ ସହ୍ୟ କରି ପାରୁ ନାହାନ୍ତି ।" ତାଙ୍କର ପ୍ରେମାନୁବନ୍ଧ ବିଷୟରେ ଏହି ପ୍ରକାର ଚିନ୍ତା କରି କରୁଣାମୟ କୃପାଳୁ କୃଷ୍ଣ ତାଙ୍କ ଉପରେ କୃପା କଲେ । ସେ ସଙ୍ଗେ ସଙ୍ଗେ ନିଜ ପଲଙ୍କ ଉପରୁ ଓହ୍ଲାଇ ଆସିଲେ । ତାହାପରେ ତାଙ୍କର ଚତୁର୍ଭୁଜ

ପ୍ରସାରି କରି ଦୁଇ ହାତରେ ନିଜର ପ୍ରିୟାଙ୍କୁ ଆଲିଙ୍ଗନ କଲେ ଓ ଅନ୍ୟ ଗୋଟିଏ ହାତରେ ତାଙ୍କ କେଶ ସାଉଁଳାଇଲେ । ଚତୁର୍ଥ ହାତରେ ତାଙ୍କ ମୁଖରେ ଲାଗିଥିବା ସ୍ୱେଦବିନ୍ଦୁ ପୋଛିଦେଲେ ଏବଂ ବାରମ୍ବାର ତାଙ୍କର ଓଠକୁ ହାତରେ ଉଠାଇ ନେତ୍ର-ନିର୍ଗତ ଅଶ୍ରୁକୁ ନିଜର ପୀତାମ୍ବରରେ ପୋଛିଦେଲେ । ଶୋକାଶ୍ରୁ ସିକ୍ତ, କୁଙ୍କୁମ ରଞ୍ଜିତ ହୃଦୟକୁ ସେ ବାରମ୍ବାର ପୋଛିବାକୁ ଲାଗିଲେ ଓ ସ୍ନେହ ପୂର୍ବକ ହାତରେ ଆଉଁସି ଦେଇ ତାଙ୍କୁ ନିଜ ପାଖରେ ବସାଇ ବୋଧ ଶୋଧ କରାଇବାକୁ ଲାଗିଲେ । ସେ ତ ଏହି ବିଦ୍ୟାରେ ପାରଙ୍ଗମ ଥିଲେ । ବ୍ରଜର ବୃନ୍ଦାବନଳୀରେ ସେ ମାନିନୀ ଗୋପୀମାନଙ୍କୁ ମନାଇବାରେ ଧୁରନ୍ଧର ଥିଲେ, ମାନ କରିଥିବା ସମୟରେ ସ୍ତ୍ରୀ ଲୋକ-ମାନଙ୍କୁ କପଟ ମନାଉଁବାକୁ ହୁଏ, କପଟ ମୁକ୍ତ କରିବାକୁ ହୁଏ, ସେ ସବୁ ବିଦ୍ୟାରେ ଏ ପଣ୍ଡିତ ଥିଲେ । ତେଣୁ ଯେଉଁ ରୁକ୍ମିଣୀଙ୍କୁ ହସ ବିନୋଦରେ ଭ୍ରାନ୍ତ ଚକ୍ରରେ ଚକିତ କରାଇ ପରିତ୍ୟାଗ କରିବାର ଭୟ ଦେଖାଇ ଅତ୍ୟନ୍ତ ଦୟନୀୟ ଅବସ୍ଥାରେ ପକାଇ ଦେଇଥିଲେ । ତାଙ୍କୁ ସେହି ଜଗନ୍ନାଥ ଭଗବାନ୍ ଦାମୋଦର ମନ୍ଦ ମନ୍ଦ ହସି ସାନ୍ତ୍ୱନା ପ୍ରଦାନ କଲେ ।"

ସୂତ କହିଲେ—"ମୁନିଗଣ ! ଭଗବାନ ଯେପରି ଭାବରେ ରୁକ୍ମିଣୀଙ୍କୁ ସାନ୍ତ୍ୱନା ଦେଇଥିଲେ ଓ ତାଙ୍କ ସାନ୍ତ୍ୱନାରେ ସଚେତ ହୋଇ ସେ ଯେପରି ତାଙ୍କ ହସର ଏକ ଏକ କଥା ଗମ୍ଭୀରଭାବ ସହିତ ଉତ୍ତର ଦେଇଥିଲେ, ତାହା ମୁଁ ପରବର୍ତ୍ତୀ ପ୍ରସଙ୍ଗରେ ଆପଣମାନଙ୍କୁ କହିବି । ରୁକ୍ମିଣୀ ଏପରି ଉତ୍ତର ଦେଇଥିଲେ ଯେ, ଭଗବାନଙ୍କ ମୁଖରୁ ଆଉ କୌଣସି ଉତ୍ତର ବାହାରି ନଥିଲା । ସେ କେବଳ ହଁ ହଁ କହି ଶେଷକୁ ହାରି ଯାଇଥିଲେ ।"

## ଛପ୍ପୟ

ଦେଖି ପ୍ରିୟାକୋ ରୂପ ହଁସୀ କୀ ହରି କୂ ସୂଝୀ ।
ମନ୍ଦ ମନ୍ଦ ମୁସକାୟ ପହେଲୀ ପିଛଲୀ ବୂଝୀ ॥
କହେ ପ୍ରିୟେ ! କୈଁଯୌଁ ଛାଡ଼ି ନୃପତିଗଣ ମମ ସଙ୍ଗ ଆଇ ।
ଶୂର ବୀର ଶିଶୁପାଲ ସଙ୍ଗ ତବ ଭଈ ସଗାଈ ॥
ହମ ନିରଗୁନ ନିସ୍ପୃହ ପରମ, ନିଷ୍କିଞ୍ଚନ ନିର୍ଧନ କପଟୀ ।
ତା ତୈଂ ତଜି ହମକୂଁ ଅବହୁଁ, ଜାଉ ଅପର ନୃପତିକେ ନିକଟୀ ॥

# ରୁକ୍ମିଣୀଙ୍କ ବିନୋଦପୂର୍ଣ୍ଣ ଉତ୍ତର

ନନ୍ୱେବମେତଦରବିନ୍ଦ ବିଲୋଚନାହ,
ଯଦ୍ ବୈ ଭବାନ୍ ଭଗବତୋଽସଦୃଶୀ ବିଭୂମ୍ନଃ ।
କ୍ୱ ସ୍ୱେ ମହିମ୍ନ୍ୟଭିରତୋ ଭଗବାଂସ୍ତ୍ର୍ୟଧୀଶଃ,
କ୍ୱାହଂ ଗୁଣପ୍ରକୃତିରଜ୍ଞଗୃହୀତପାଦା ।। *

(ଶ୍ରୀ ଭାଃ ୧୦ ସ୍କଃ ୬୦ ଅଃ ୩୪ ଶ୍ଳୋକ)

## ଛପ୍‌ପୟ

ସୁନି ପତି ବଚନ କଠୋର ରୁକ୍‌ମିନୀ ଅତି ଘବରାୟୀଁ ।
ମୂର୍ଚ୍ଛିତ ହ୍ୱୈ ମହି ଗିରୀ ତୁରତ ଉଠି ଶ୍ୟାମ ଉଠାୟୀ ।।
ପ୍ରେମାଲିଙ୍ଗନ କରେୟା ପୋଂଛି ମୁଖ କେଶ ସମ୍ହାରେ ।
ପଲଁଗ ପାସ ବୈଠାଇ ମଧୁର ସ୍ୱର ବଚନ ଉଚ୍ଚରେ ।।
ଅରେ, ପ୍ରିୟେ ! ରୁଠୀ ବୃଥା, ହଁସୀ ହଁସୀ ମୈଂ ହୌଂ କହୀ ।
ନରକ ରୂପ ଘର ମହଁ ସରସ, ହୈଂ ପ୍ରସଙ୍ଗ ସୁଖକର କହୀ ।।

ସୂତ କହିଲେ—"ମୁନିଗଣ ! ଭଗବାନ ଯେତେବେଳେ ରୁକ୍ମିଣୀଙ୍କ ସହିତ ହସ ଖୁସି ହେଉଥିଲେ ଓ ସେ ଦୁଃଖିତ ହୋଇ ମୂର୍ଚ୍ଛିତ ହୋଇଗଲେ, ସେତେବେଳେ

---

* ଦେଖି ରୁକ୍ମିଣୀ କୃଷ୍ଣ ଭାବ । ବ୍ରୀଡ଼ିତ ଚିନ୍ତା ପରାଭବ ।।
ପୁରୁଷୋତ୍ତମ ଆଗେ ରହି । କହେ କମଳ ମୁଖୀ ଚାହିଁ ।।
ଅମଳ-କମଳ ଲୋଚନ । ତୋହର ସତ୍ୟ ଏ ବଚନ ।।
ଅନାଦି ପ୍ରଭୁ ନିରଞ୍ଜନ । ମୁଁ ତୋର ନୁହଁଇ ସ୍ୱଜନ ।।
ନିଜ ମହିମା ରୂପ ବହି । ତ୍ରିଗୁଣ ଅତୀତ ବୋଲାଇ ।।
ଗୁଣ ପ୍ରକୃତି ବନ୍ଧେ ମୁହିଁ । ତୋ'ର ଚରଣ ତଳେ ଥାଇ ।।
(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ : ୬୫ ଅ.)

ଭଗବାନ ତାଙ୍କୁ ପ୍ରେମପୂର୍ବକ ବୁଝାଇବାକୁ ଲାଗିଲେ—'ଆରେ ବୈଦର୍ଭି ! ତୁମେ କାହିଁକି ରାଗିଯାଉଛ ? ହସ ବିନୋଦ କରିବାରେ କ'ଣ କେହି କେବେ ରୁଷ୍ଟ ହୁଏ ?'

ରୁକ୍ମିଣୀ ଶ୍ୟାମସୁନ୍ଦରଙ୍କ ମୁଖକୁ ଚାହିଁ ସ୍ନେହସିକ୍ତ ପ୍ରେମ ବାଣୀରେ କହିଲେ—"ଏ ପ୍ରକାର ହସ କୌତୁକ ହେବା ମୁଁ ତ କୌଣସିଲୋକଠାରୁ ଶୁଣି ନାହିଁ । ହସ ଖୁସିର ଗୋଟିଏ ସୀମା ଅଛି । ମୋତେ ଆପଣ କୁଳଟା ସ୍ତ୍ରୀଙ୍କ ମଧ୍ୟରେ ଗଣନା କରୁଛନ୍ତି । ଏପରି କଥା ଆପଣଙ୍କ ମନକୁ କିପରି ଆସିଲା ?"

ଅତ୍ୟନ୍ତ ସ୍ନେହରେ ରୁକ୍ମିଣୀଙ୍କ ପିଠି ଆଉଁସି ଭଗବାନ ସଙ୍ଗେ ସଙ୍ଗେ କହିଲେ—"ନା, ତାହା ନୁହେଁ, ମୋର ଟିକିଏ ହେଲେ ସେପରି ଅଭିପ୍ରାୟ ନଥିଲା । ମୁଁ କ'ଣ ତୁମକୁ ଜାଣି ନାହିଁ ? ମୁଁ ଭଲ ଭାବରେ ଜାଣେ ଯେ, ତୁମେ ଏକମାତ୍ର ସ୍ତ୍ରୀ ଯାହାର କି ମୋ ପ୍ରତି ଅତ୍ୟନ୍ତ ଅନୁରାଗ । ତୁମେ ସ୍ୱପ୍ନରେ ସୁଦ୍ଧା ଅନ୍ୟ ପୁରୁଷର କଳ୍ପନା କରି ନପାର ।"

ଏହାପରେ ନିଜ ଆଖିରୁ ଲୁହ ପୋଛିଦେଇ ଶାଢ଼ୀର ଅଞ୍ଚଳରେ ନାକ ପୋଛି ପକାଇ ରୁକ୍ମିଣୀ କହିଲେ—"ଯଦି ଆପଣ ଏ କଥା ଜାଣିଥିଲେ, ତାହାହେଲେ ଏପରି ଖରାପ କଥା ଆପଣଙ୍କ ମୁଖରୁ କିପରି ବାହାରିଲା ? ଏହା ପୂର୍ବରୁ ତ ଆପଣ କେବେହେଲେ ଏପରି କଠୋର ବଚନ କହି ନଥିଲେ ।"

ଭଗବାନ ପ୍ରେମରେ କହିଲେ—"ମୁଁ ଏବେ ସତ କଥା କହୁଛି, ମୁଁ ତୁମର ଚନ୍ଦ୍ରମୁଖରେ ସଦା ମନ୍ଦ ମନ୍ଦ ହସ ଫୁଟି ଉଠୁଥିବାର ଦେଖୁଥିଲି । କ୍ରୋଧରେ ତୁମ ଆକୃତି କିପରି ହୋଇପାରେ, ତାହା ଦେଖିବା ପାଇଁ ମୋ ମନରେ ବହୁଦିନ ହେବ କୌତୂହଳ ଜାତ ହୋଇଥିଲା । କେତେଥର ମୁଁ ଚେଷ୍ଟା ମଧ୍ୟ କରିଥିଲି; କିନ୍ତୁ ତୁମେ କଥା ବଢ଼ାଇବାକୁ ଦେଇ ନଥିଲ । ତୁମେ ଲଜ୍ଜାରେ ରହି ଯାଉଥିଲ । ଲଜ୍ଜା କରୁଥିବା ସମୟରେ ତୁମର ଅବନତ ମୁଖାରବିନ୍ଦରେ ଏତେ ଅଧିକ ଆକର୍ଷଣ ରହୁଛି ଯେ, ମୁଁ ଆଉ କଥା ବଢ଼ାଇବାକୁ ଆଗ୍ରହ ପ୍ରକାଶ କରିପାରି ନଥିଲି । ତେଣୁ ମୋର କୁତୂହଳ ପରାକାଷ୍ଠାରେ ପହଞ୍ଚିଗଲା । ମୋର ଭାରି ଇଚ୍ଛା ଥିଲା, ତୁମେ ପ୍ରଣୟ କୋପରେ ଚିଡ଼ିଗଲେ ତୁମର ଏହି ବିମ୍ବଫଳ ସଦୃଶ ଅରୁଣ ଅଧରକୁ ମୁଁ ଦେଖିବି । କଟାକ୍ଷପାତ ହେବାରୁ କୁଟିଳ ହୋଇଥିବା ତୁମର ଅରୁଣ ବର୍ଣ୍ଣର ବଡ଼ ବଡ଼ ବିଶାଳ ଯୁଗଳ ନୟନ କିପରି ହୋଇଯାଏ । କୋପରେ କୁଞ୍ଚିତ ହୋଇଥିବା ତୁମର ଏହି ସୁନ୍ଦର ଭ୍ରୂକୁଟି କିପରି କଠିନ ହୋଇଯାଏ ଓ ତୁମର ପୂର୍ଣ୍ଣଚନ୍ଦ୍ର ସଦୃଶ ମୁଖାରବିନ୍ଦ କୋପରେ କି ଆକୃତି ଧାରଣ କରେ ଏହିସବୁ କଥାକୁ ଦେଖିବା ପାଇଁ ମୁଁ ଏ ପ୍ରକାର କଥା ହସଖୁସିରେ କହୁଥିଲି । କିନ୍ତୁ ତୁମେ ଏହାକୁ ସତ ବୋଲି ଭାବିଲ । ଏଥିପାଇଁ କୁହାଯାଇଛି, ସାଧାରଣ ନିରୀହ ଲୋକଙ୍କ ସଙ୍ଗେ ବହୁତ ହାସ୍ୟ ପରିହାସ କରିବ ନାହିଁ ।"

ରୁକ୍ମିଣୀ କୋପରେ କଟାକ୍ଷପାତ କରି କହିଲେ—"ମୋ ଆଗରୁ ଶୀଘ୍ର ଚାଲିଯାଆନ୍ତୁ । ଆପଣଙ୍କୁ ଭଲଭାବେ ଅନ୍ୟର ଦୋଷ ଦେଇ ଆସେ । ଏପରି କ'ଣ ହସ ବିନୋଦ କରାଯାଏ ? ଏପରି ହସଖୁସି ହେବାରେ କି ଲାଭ ?"

ଭଗବାନ ହସି ହସି କହିଲେ—"ଦେଖ, ହସ ବିନୋଦରେ ଏପରି ସେପରି କଥାର ବିଚାର କରାଯାଏ ନାହିଁ । ନିର୍ମୁକ୍ତ ହୃଦୟରେ ତ ହସ ହୁଏ । ଯେଉଁଠାରେ କଳି ଉଦ୍ଭବ ଥାଏ, ଶୀଳ ସଂକୋଚ ରକ୍ଷା କରିବାକୁ ହୁଏ, ସେ କ୍ଷେତ୍ରରେ ଖୋଲା ହୃଦୟରେ ହସଖୁସି ହେବା ସମ୍ଭବ ହୁଏ ନାହିଁ । ତୁମେ ପଚାରିଲ ଯେ ଏଥିରୁ ଲାଭ କ'ଣ ମିଳିବ ? ମୁଁ କହିପାରେ ଗୃହସ୍ଥମାନଙ୍କ ପାଇଁ ଏହା ସବୁଠାରୁ ଅଧିକ ଲାଭ । ଗୃହସ୍ଥାଶ୍ରମରେ ନିତ୍ୟ ନୂତନ ଝିଂଝଟ ଲାଗି ରହିଥାଏ । ଏହା ଏ ପ୍ରକାର ଯେ ବିନା ଜଳରେ ଅନ୍ଧକୂପ ସଦୃଶ । ଏହା କେବେହେଲେ ପୂର୍ଣ୍ଣ ହୁଏ ନାହିଁ । ଚିନ୍ତା, ବ୍ୟାଧି, ଶୋକ, ଧନାଭାବ, ପୁତ୍ରକନ୍ୟାଙ୍କ ବିବାହ, ବ୍ୟବସାୟ ଚିନ୍ତା, ଦୁର୍ଭିକ୍ଷ, ବୈର, ରାଜା, ପ୍ରଜା, ଜାତି, କୁଳ ଆଦିର ଭୟରେ ଏହା ସର୍ବଦା ଚିନ୍ତାପୂର୍ଣ୍ଣ । ଗୃହସ୍ଥର ଦୁଃଖ ବ୍ୟତୀତ ସୁଖ ନାହିଁ । ଏହି ହସ ବିନୋଦ ହିଁ ଗୃହସ୍ଥୀମାନଙ୍କପାଇଁ ବିଶେଷ ଲାଭ ଓ ସୁଖଶାନ୍ତିର ଉପାୟ । କାରଣ କିଛି ସମୟ ଏଠାରେ ପ୍ରାଣପ୍ରିୟା ସହିତ ପ୍ରେମପୂର୍ବକ ହସ ବିନୋଦରେ କଟାଇଲେ ବିଭିନ୍ନ ଚିନ୍ତାରୁ ନିବୃତ୍ତି ମିଳେ । ଏହି ହସବିନୋଦ ପାଇଁ ହିଁ ଗୃହସ୍ଥୀ କୋଟି କୋଟି ଦୁଃଖଯାତନାକୁ ହର୍ଷର ସହିତ ସହ୍ୟ କରିଯାଏ । ଏହି ସୁଖ ଟିକିକ ପାଇଁ ସେ ବିପତ୍ତି ପାହାଡ଼କୁ ଶିର ଉପରେ ବହନ କରିନିଏ । ମୋର ଏହିସବୁ କଥାରେ ସତ୍ୟର ରତିଏ ହେଲେବି ଅଂଶ ନଥିଲା । ମୁଁ ଏସବୁ ମିଛଟାରେ କହିଗଲି । ତୁମ ମନରେ ଦୁଃଖଦେବା ମୋର ପ୍ରକୃତରେ ଅଭିପ୍ରାୟ ନଥିଲା । ଏପରି ହସବିନୋଦ ଛଳରେ ମଜ୍ଜାରେ କହିଦେଲି ।"

ସୂତ କହିଲେ—"ମୁନିଗଣ ! ଯେତେବେଳେ ରୁକ୍ମିଣୀଙ୍କର ବିଶ୍ୱାସ ହୋଇଗଲା ଯେ ଭଗବାନ ତାଙ୍କୁ ପ୍ରକୃତରେ ତ୍ୟାଗ କରିବାକୁ ଚାହୁଁନାହାନ୍ତି, କେବଳ ହସବିନୋଦରେ ଏପରି କହୁଛନ୍ତି, ସେତେବେଳେ ସେ ସନ୍ତୋଷ ହେଲେ । ତାଙ୍କ ମନ ମଧ୍ୟରେ ଯେଉଁ ପ୍ରିୟତମବିୟୋଗ ଭୟ ଜାତ ହୋଇଥିଲା, ତାହା ଦୂର ହୋଇଗଲା ।"

ଶୌନକ ପଚାରିଲେ—"ହେ ସୂତ ! ହସଖୁସି କେବଳ ହସଖୁସି ଢଙ୍ଗରେ ହେବା କଥା । ଏପରି କାଇଦାରେ ଖୁବ୍ କମ୍ ମନଖୁସି କଥା କହିବା ଉଚିତ୍ ଯେଉଁଥିରେ କି ହସ ଆପେ ଆପେ ଫୁଟିଉଠିବ । ଅଧିକ ହସଖୁସି ବା ଥଟ୍ଟାମଜ୍ଜା ହେଲେ ହସ ପରିବର୍ତ୍ତେ କ୍ରୋଧ ଉପୁଜିବା ସ୍ୱାଭାବିକ । ଭଗବାନ ଯେଉଁ ପରିତ୍ୟାଗ କରିବା କଥା ଓ ଅନ୍ୟତ୍ର ଚାଲିଯିବା କଥା ରୁକ୍ମିଣୀଙ୍କୁ କହିଦେଲେ, ତାହା ଅତିରିକ୍ତ ହୋଇଗଲା । ସେ ଏପରି ତାଙ୍କୁ କାହିଁକି କହୁଥିଲେ ?"

ସୂତ କହିଲେ—"ଭଗବାନ ! ଯେଉଁ ନଟନାଗରଙ୍କ କଥା କେଉଁ କେବେ-ହେଲେ କର୍ଣ୍ଣିତ ଭାବରେ କହିପାରିବ ନାହିଁ । ତାଙ୍କର ଯେ କୌଣସି କାର୍ଯ୍ୟରେ ଅନେକ ଗୁଢ଼ ରହସ୍ୟ ନିହିତ ଥାଏ । ଗୋଟିଏ କାରଣ ତ ଭଗବାନ ନିଜେ କହିଲେ ଯେ, 'ମୁଁ କ୍ରୋଧଯୁକ୍ତ ମୁଖର ଶୋଭା ଦର୍ଶନ କରିବାକୁ ଇଚ୍ଛା କରି ଏପରି କହିଲି ।' ଦ୍ୱିତୀୟ କଥା ହେଲା, ପ୍ରେମରେ ଏହି କଥା ବାରମ୍ବାର ଶୁଣିବାକୁ ଇଚ୍ଛା ହୁଏ ଯେ, ମୁଁ କେବଳ ତୁମକୁ ହିଁ ଚାହୁଁଛି, ତୁମ ବ୍ୟତୀତ ମୋର ଆଉ ଅନ୍ୟ କେହି ନାହିଁ । ଏହି କଥା ଯେତେ ଥର ଶୁଣାଯାଏ, ସେତେ ଅଧିକ ସୁଖ ମିଳେ । ଏଥିପାଇଁ ଭଗବାନ ସ୍ୱଭାବ ବଶତଃ ଏହା ଶୁଣିବା ଉଦ୍ଦେଶ୍ୟରେ ହିଁ କହିଥିଲେ । ତୃତୀୟ କଥା ହେଲା—କ୍ରୋଧରେ, ପ୍ରେମସଂଗ୍ରାମରେ ରୁଷ୍ଟ ହେବାଦ୍ୱାରା ମନରୁ ପ୍ରେମ ଦୂର ହୋଇଯାଏ । ଯେପରି କି ମିଠା ଖାଇ ଖାଇ ଶେଷକୁ ଅରୁଚି ହୋଇଯାଏ, ସେତେବେଳେ ଖଟା ବା ଚଟଣୀରୁ ଟିକିଏ ଚାଖି ଦେଲେ ସ୍ୱାଦ ବଦଳି ଯାଏ । ଯେପରି ବହୁଦିନ ତମ୍ବାପାତ୍ର ବ୍ୟବହାର ନକରି ରଖିଦେଲେ ଏହିରେ ମଇଳା ଜମିଯାଏ, ଖଟାଦ୍ୱାରା ତାକୁ ମାଜିଦେଲେ ତାହା ପୁନଶ୍ଚ ଉଜ୍ଜ୍ୱଳ ଦେଖାଯାଏ, ସେହିପରି ଅତ୍ୟନ୍ତ କୋପ ପରେ ଯେଉଁ ପ୍ରେମ ଲାଭ ହୁଏ, ତାହା ଅଦ୍ଭୁତ ପ୍ରକାର ନୂତନ ରୂପ ଧାରଣ କରେ । ସେହିପରି ନୂତନତା ଆଣିବା ପାଇଁ ଭଗବାନ ଏହିଭଳି କଥା କହିଥିଲେ । ଚତୁର୍ଥ କାରଣ ଏହା ବି ହୋଇପାରେ ଯେ, ଏପରି କରି ଭଗବାନ ରୁକ୍ମିଣୀଙ୍କ ମୁଖରୁ ପତିବ୍ରତାମାନଙ୍କର ଧର୍ମ ସମ୍ବନ୍ଧରେ ଶୁଣିବାକୁ ଇଚ୍ଛା କରିଥାଇ ପାରନ୍ତି, ଯେଉଁଥିରୁ କି ଅନ୍ୟ ସ୍ତ୍ରୀମାନେ ଶିକ୍ଷା ଲାଭ କରିପାରିବେ ଓ ଜନକଲ୍ୟାଣ ହୋଇ ପାରିବ । କାରଣ ଭଗବାନଙ୍କର ଛୋଟିଆରୁ ଛୋଟିଆ କଥା ଓ ବଡ଼ରୁ ବଡ଼ କଥା ପ୍ରତ୍ୟେକର ଚେଷ୍ଟା ହିଁ ଜଗତର କଲ୍ୟାଣ ପାଇଁ ଉଦ୍ଦିଷ୍ଟ । ଏହି ହାସବିନୋଦରେ, କ୍ରୋଧରେ ତଥା ଅନ୍ୟାନ୍ୟ ଭାବଭଙ୍ଗୀ ପ୍ରଦର୍ଶନ କରିବାରେ ପ୍ରବୃତ୍ତ ହୋଇ ସେ ଯେକୌଣସି ଲୀଳା କରନ୍ତୁ ପଛକେ ସେଥିରେ ଲୋକହିତ ସନ୍ନିହିତ ଥାଏ । ପଞ୍ଚମ କାରଣ ହେଲା—ଭଗବାନ୍ କେବେହେଲେ ରୁକ୍ମିଣୀଙ୍କଠାରୁ ପୃଥକ୍ ହେଉ ନଥିଲେ, ଏଥିପାଇଁ ତାଙ୍କର ଅଭିମାନ ହୋଇଯାଇଥିଲା ଯେ, 'ମୁଁ ଅତ୍ୟନ୍ତ ସୁନ୍ଦରୀ, ଭଗବାନ୍ ମୋ ହାତମୁଠାରେ । ତାଙ୍କୁ ମୁଁ ଏପରି ବଶ କରି ପାରିଛି ଯେ. ମୁହୂର୍ତ୍ତକ ପାଇଁ ସେ ମୋ ବିନା ରହି ନ ପାରନ୍ତି ।' ତେଣୁ ତାଙ୍କର ଏହି ଅଭିମାନକୁ ଦୂର କରିବାପାଇଁ ଭଗବାନ ଏପରି ହୃଦୟକୁ କଷ୍ଟଦେଲା ଭଳି କଥା କହିଯାଉ ଥାଆନ୍ତି । ସେ ଯେତେବେଳେ ଦେଖିଲେ ରୁକ୍ମିଣୀ ଅଧିକ ବ୍ୟାକୁଳ ହୋଇ ପଡ଼ିଛନ୍ତି, ସେତେବେଳେ ସେ କହିଥିଲେ— 'ଏ ସବୁ କଥା ମିଛରେ ମୁଁ ତୁମକୁ କହିଦେଲି, ଏଥିରେ ଟଳେହେଲେ ସତ୍ୟତା ନାହିଁ ।' କିନ୍ତୁ ରୁକ୍ମିଣୀଙ୍କର ତ ଅଭିମାନ ଦୂର ହୋଇଯାଇଥିଲା, ତେଣୁ ସେ କହିଥିଲେ—"ମହାରାଜ ! ଆପଣ ଗୋଟିଏ ଗୁଢ଼ ସବୁ କଥା ସତ କହିଥିଲେ । ଏଥିରେ ମିଥ୍ୟାର ପ୍ରଶ୍ନ ନଥିଲା ।"

ଭଗବାନ୍ ଉପେକ୍ଷା ସ୍ୱରରେ କହିଲେ—"ହସ ବିନୋଦରେ କ'ଣ କେବେ-ହେଲେ ସତ୍ୟତା ଥାଏ ? ତାହା ସାଧାରଣତଃ ବିନୋଦ ତଥା ମନୋରଞ୍ଜନ ପାଇଁ କୁହାଯାଇଥାଏ ।"

ରୁକ୍ମିଣୀ କହିଲେ—"ଏହି କଥା ସଂସାରୀ ବିଷୟୀ, ବ୍ୟକ୍ତିମାନଙ୍କ ବିଷୟରେ ସତ୍ୟ ହୋଇପାରେ; କିନ୍ତୁ ଆପଣ ତ ନିଜେ ସତ୍ୟସ୍ୱରୂପ, ସତ୍ୟସଂକଳ୍ପ ଅଟନ୍ତି । ଆପଣ ଯାହା ବି ହସି ହସି କହନ୍ତି, ତାହା ସତ୍ୟ ବୋଲି ଧରାଯାଏ । ଏବେ ଆପଣ ଯେଉଁ କଥା ସବୁ କହିଲେ, ମୁଁ ତାହାର ଉତ୍ତର ଦେଉଛି ଶୁଣନ୍ତୁ ।"

ଭଗବାନ୍ ତ ଏହା ଚାହୁଁଥିଲେ ଯେ, ମୋ ପ୍ରିୟା ମୋତେ ହୃଦୟ ଖୋଲି ସବୁ କଥା କହୁ । ନିଜର ପ୍ରେମୀର କଥାଗୁଡ଼ିକ ଯେପରି ହୋଇଥାଉ ପଛେ, ସେ ତାହା ଯେତେଥର କହୁ ପଛେ, ତାହା ମୁଖରୁ ଶୁଣିବାକୁ ଖୁବ୍ ଆନନ୍ଦ ଲାଭ ହୁଏ । ଚାହିଁ ସ୍ୱହେଁ ତା ପାଖରେ ବସି, ତା ମୁଖକୁ ଦେଖି ସର୍ବଦା ତା'ଠାରୁ କିଛି ଶୁଣିବା ପାଇଁ । ଏଥିପାଇଁ ଭଗବାନ୍ କହିଥିଲେ—"ତାହାହେଲେ ଠିକ୍ ଅଛି, ଶୁଣାଅ ।"

ରୁକ୍ମିଣୀ କହିଲେ—"ପ୍ରଥମେ ତ ଆପଣ କହିଲେ ଯେ, ତୁମ ମୋ ଭିତରେ ସମତା ନାହିଁ । ମୁଁ ତୁମ ପାଇଁ ଉପଯୁକ୍ତ ନୁହେଁ, ଏ କଥା ସର୍ବଦା ସତ୍ୟ । ଐଶ୍ୱର୍ଯ୍ୟାଦି ଗୁଣରେ ଯୁକ୍ତ ସର୍ବବ୍ୟାପକ ସର୍ବେଶ୍ୱର, ସର୍ବସମର୍ଥ ସଚ୍ଚିଦାନନ୍ଦସ୍ୱରୂପ ଆପଣ କେଉଁଠି ଓ ବିକୃତ ତ୍ରିଗୁଣଯୁକ୍ତ ଅଜ୍ଞଜନଙ୍କ ଦ୍ୱାରା ଉପାସିତା ଉଲ୍ଲୁକବାହିନୀ ମୁଁ କେଉଁଠି ? ମୋର କେବେହେଲେ ଆପଣଙ୍କ ସହିତ ସମତା ହୋଇପାରେ ? ମୁଁ ଆପଣଙ୍କ ପତ୍ନୀ ହେବା ପାଇଁ ସର୍ବଥା ଅଯୋଗ୍ୟା, କିନ୍ତୁ ଆପଣ କୃପାକରି ମୋତେ ନିଜର କରି ନେଇଛନ୍ତି । ଏଥିରେ ମୋର କୌଣସି ବିଶେଷତ୍ୱ ନାହିଁ । ଆପଣଙ୍କର ଏହା କୃପା । ଦ୍ୱିତୀୟରେ ଆପଣ କହିଥିଲେ ଯେ, 'ମୁଁ ରାଜାମାନଙ୍କ ଭୟରେ ପଳାଇ ଆସି ସମୁଦ୍ର ମଝିରେ ରହିଛି ।' ଏହା ମଧ୍ୟ ସତ କଥା । କାରଣ ଏହି ଯେଉଁ ତ୍ରିଗୁଣମୟ ପ୍ରପଞ୍ଚ, ଏଥିରେ ସର୍ବଦା କଳହ ଲାଗି ରହିଥାଏ । ସେହି କଳହ ଭୟରେ ଆପଣ ଚୈତନ୍ୟଘନ ଆତ୍ମ ରୂପରେ ଅନ୍ତଃକରଣରୂପୀ ଅଗାଧ ସମୁଦ୍ର ମଧ୍ୟକୁ ଆସି ସୁଖରେ ଶୟନ କରିଅଛନ୍ତି । ସମସ୍ତ ଦେହରୂପୀ ପୁରୀରେ ଶୟନ କରିଥିବା କାରଣରୁ ଆପଣଙ୍କୁ ପୁରୁଷ ବୋଲି କୁହାଯାଏ । ଆଉ ତୃତୀୟରେ ଆପଣ କହିଥିଲେ ଯେ, 'ସମସ୍ତ ବଳବାନ ରାଜାଙ୍କ ସହିତ ଆପଣଙ୍କର ବୈରତା ବଢ଼ି ଯାଇଛି', ଏହା ମଧ୍ୟ ସତ କଥା । କାରଣ କୁତ୍ସିତ ଇନ୍ଦ୍ରିୟଗଣ ସଦୃଶ ଏ ଯେଉଁ ରାଜାମାନେ ରହିଛନ୍ତି, ଏମାନଙ୍କ ସହିତ ଆପଣଙ୍କର ବୈରତା ଓ କଳହ ହେବା ସ୍ୱାଭାବିକ । ଜିହ୍ୱା ନିଜ ଆଡ଼କୁ ଆକୃଷ୍ଟ କରେ, କର୍ଣ୍ଣ ତା ଆଡ଼କୁ ଆକର୍ଷଣ କରେ, ଏହିପରି ସମସ୍ତ ଇନ୍ଦ୍ରିୟ ନିଜ ନିଜ ବିଷୟର ଇଚ୍ଛା କରନ୍ତି, ବିଷୟ ପ୍ରାପ୍ତ ନ ହେଲେ ସେମାନେ ବିଦ୍ରୋହ କରନ୍ତି । ଆପଣ ଏ ସମସ୍ତଙ୍କୁ ଜୟ

କରୁଛନ୍ତି । ତେଣୁ ଆପଣଙ୍କର ନାମ ହୃଷୀକେଶ । ଚତୁର୍ଥରେ ଆପଣ କହୁଥିଲେ 'ମୁଁ ରାଜ୍ୟ ସିଂହାସନକୁ ଛାଡ଼ି ଦେଇଛି ।' ଏ କଥା ମଧ୍ୟ ଅସତ୍ୟ ନୁହେଁ । ଘୋର ତମୋପୂର୍ଣ୍ଣହିଁ ରାଜ୍ୟ-ସିଂହାସନ, ଏହାକୁ ତ ଆପଣଙ୍କର ଚରଣାଶ୍ରିତ ଭକ୍ତଗଣ ତ୍ୟାଗ କରି ବନକୁ ଚାଲି ଯାଆନ୍ତି । ଆପଣଙ୍କ ଭକ୍ତମାନଙ୍କ ଦୃଷ୍ଟିରେ ଯେଉଁ ବସ୍ତୁ ହେୟ ଓ ତ୍ୟାଜ୍ୟ, ତାହା ଆପଣ କିପରି ଗ୍ରହଣ କରିପାରନ୍ତେ ? ପଞ୍ଚମରେ ଆପଣ କହୁଥିଲେ—'ଆପଣଙ୍କ ମାର୍ଗ ଅସ୍ପଷ୍ଟ ଓ ଆପଣ ସର୍ବଦା ବିରୁଦ୍ଧ ମାର୍ଗରେ ଚାଲନ୍ତି ।' ଏହା ମଧ୍ୟ ଠିକ୍ କଥା । କାରଣ ଆପଣଙ୍କ ଚରଣ କମଳର ରେଣୁକୁ ଆଶ୍ରୟ କରିଥିବା ଭକ୍ତଗଣ ଓ ଯୋଗୀଗଣ ସମସ୍ତ ପ୍ରକାର ବିଧି ନିଷେଧ ରୂପକ ବନ୍ଧନରୁ ମୁକ୍ତ ହୋଇ ସ୍ୱଚ୍ଛନ୍ଦରେ ବିହାର କରନ୍ତି । ସେମାନେ ଲୌକିକ, ବୈଦିକ ଆଦି କୌଣସି କାର୍ଯ୍ୟରେ ଲିପ୍ତ ହୁଅନ୍ତି ନାହିଁ, ଏଥିରେ ଲୋକ ବିରୁଦ୍ଧ ହେବା ଦେଖାଯାଏ । ଯେତେବେଳେ ଆପଣଙ୍କ ଚରଣାଶ୍ରିତ ସେବକଗଣ ବିଧିନିଷେଧ ବନ୍ଧନରେ ପଡ଼ନ୍ତି ନାହିଁ, ଆପଣଙ୍କୁ ଏ ପ୍ରକାର ଲୌକିକ ବନ୍ଧନ କିପରି ବାନ୍ଧିରଖି ପାରନ୍ତା ? ଆପଣଙ୍କ ମାର୍ଗ କିଏ ବା ଜାଣିବାକୁ କ୍ଷମସମ୍ପନ୍ନ ହେବ ? ଷଷ୍ଠରେ ଆପଣ କହୁଥିଲେ ଯେ, 'ଆପଣ ନିଷ୍କିଞ୍ଚନ' । ଏହା ମଧ୍ୟ ଅସତ୍ୟ ନୁହେଁ । ଆପଣ ଦରିଦ୍ରତା କାରଣରୁ ନିଷ୍କିଞ୍ଚନ ନୁହନ୍ତି । ଦରିଦ୍ରତା ତ ଆପଣଙ୍କର ବଡ଼ଶାଳୀ (ଦେଢ଼ଶାଶୁ) । ତାକୁ କେହି ଆଶ୍ରୟ ଦିଅନ୍ତି ନାହିଁ । କିନ୍ତୁ ଆପଣ ତାକୁ ଆଶ୍ରୟ ଦେଇଛନ୍ତି । ତାକୁ ଆଶ୍ରୟ ଦେଇ ଭିଣୋଇର ଯଥାର୍ଥ କାର୍ଯ୍ୟ କରିଛନ୍ତି । ଅସୁରଗଣ ମଧ୍ୟ ଆପଣଙ୍କ ଶରଣ ପଶି ସୁଖୀ ହୁଅନ୍ତି । ପଶୁ, ପକ୍ଷୀ, କୀଟ ପତଙ୍ଗ ଓ ପ୍ରତ୍ୟେକଙ୍କର ଆଶ୍ରୟସ୍ଥଳ ଆପଣ ଅଟନ୍ତି । କାରଣ ଆପଣଙ୍କ ଅଗ୍ରାବିନା ଆଉ କିଛି ଏ ଜଗତରେ ନାହିଁ । ନିଷ୍କିଞ୍ଚନତା ଏହି ଆପଣଙ୍କଠାରେ ବିଦ୍ୟମାନ । ଆପଣ ଇନ୍ଦ୍ର, ବରୁଣ, କୁବେର ଓ ଅନ୍ୟ ବିଶ୍ୱବନ୍ଦ୍ୟ ସମସ୍ତ ଦେବତାଙ୍କ ଦ୍ୱାରା ପୂଜିତ । ସେହି ଜଗତ ପୂଜ୍ୟ ଦେବଗଣ ନିରନ୍ତର ଆପଣଙ୍କୁ ପୂଜା କରୁଅଛନ୍ତି । ସେମାନେ ଆପଣଙ୍କଠାରେ ଅନନ୍ୟ ଭକ୍ତି ରଖିଅଛନ୍ତି । ଆପଣ ମଧ୍ୟ ସେମାନଙ୍କୁ ନିଜର ଆତ୍ମୀୟ ଭାବରେ କୃପା କରନ୍ତି । ସେମାନେ ଆପଣଙ୍କର ଅଂଶ । ଯେଉଁ ବ୍ୟକ୍ତି ଧନ ସମ୍ପତ୍ତି ଆଦି ମଦରେ ଅନ୍ଧ ହୋଇ ଯାଇଛନ୍ତି, ସେମାନେ ଆପଣଙ୍କୁ ଭୁଲି ଯାଆନ୍ତି । ସେମାନେ ଜାଣନ୍ତି ନାହିଁ ଯେ, ଆପଣ କାଳ ରୂପରେ ହିଁ ସେମାନଙ୍କ ଆୟୁକୁ ନାଶ କରୁଅଛନ୍ତି । ସେମାନେ ନିରନ୍ତର ପ୍ରାଣର ପୋଷଣକୁ ହିଁ ଶ୍ରେଷ୍ଠ ବିବେଚନା କରି ନିଜ ନିଜର ପ୍ରାଣ ପୋଷଣରେ ମଗ୍ନ ରହନ୍ତି । ଆପଣଙ୍କଠାରୁ ଶ୍ରେଷ୍ଠ କେହି ନାହିଁ । ଆପଣଙ୍କ ବ୍ୟତୀତ ଅନ୍ୟ କେହି ବଡ଼ ନୁହନ୍ତି । ଏଥିପାଇଁ ଆପଣ ନିଷ୍କିଞ୍ଚନ ଅଟନ୍ତି । ସପ୍ତମରେ ଆପଣ କହୁଥିଲେ ଯେ, ସମାନ ହୋଇଥିଲେ ହିଁ ସମ୍ବନ୍ଧ ହୋଇପାରେ । ଏକଥା ମଧ୍ୟ ସମ୍ପୂର୍ଣ୍ଣ ରୂପେ ସତ୍ୟ । ଯେଉଁ ସ୍ତ୍ରୀ ପୁରୁଷ ବିଷୟରେ ହିଁ ଆସକ୍ତ, କାମ ସମ୍ବନ୍ଧକୁ ହିଁ ସର୍ବଶ୍ରେଷ୍ଠ ସୁଖ ବୋଲି ମନେ କରନ୍ତି, ସେହି ସୁଖ ଦୁଃଖ ଆଦି ଦ୍ୱନ୍ଦ୍ୱରେ ପଡ଼ିଥିବା ବିଷୟୀ ବ୍ୟକ୍ତିଙ୍କ ସହିତ ଆପଣଙ୍କର ସମ୍ବନ୍ଧ କିପରି ହେବା

ହୋଇ ପାରିବ ? ଆପଣ ତ ପରମପୁରୁଷାର୍ଥ ସ୍ୱରୂପ ଅଟନ୍ତି । ଧର୍ମ, ଅର୍ଥ, କାମ ଓ ମୋକ୍ଷ ଆଦିର ସ୍ୱାମୀ ହିଁ ଆପଣ । ଏ ସବୁର ଉଦ୍‌ଗମ ଆପଣ । ଯେଉଁ ବ୍ୟକ୍ତି କେବଳ ତ୍ରିବର୍ଗରେ ଜଡ଼ିତ, ସେମାନେ ଜନ୍ମ ମୃତ୍ୟୁ ଚକ୍ରରେ ପଡ଼ିଯାଆନ୍ତି । ସେମାନଙ୍କ ସହିତ ଆପଣଙ୍କର ନିତ୍ୟ ସମ୍ବନ୍ଧ ହୁଏ ନାହିଁ । ଯେଉଁ ବ୍ୟକ୍ତି ସମସ୍ତ ପ୍ରକାର କାମନା ପରିତ୍ୟାଗ କରି କେବଳ ଆପଣଙ୍କ ଠାରେ ଶରଣାଗତ ହୁଏ, ଏପରି ଅନନ୍ୟ ଭକ୍ତ ସର୍ବସ୍ୱ ତ୍ୟାଗୀ ବିବେକ ବୈରାଗ୍ୟବାନ ପୁରୁଷଙ୍କ ସହିତ ହିଁ ଆପଣମାନଙ୍କର ସେବ୍ୟ-ସେବକ ସମ୍ବନ୍ଧ ହୋଇ-ପାରେ । ଯେହେତୁ ମୋ ଠାରେ ଏହିସବୁ ଗୁଣ ନାହିଁ, ମୁଁ କଦାପି ଆପଣଙ୍କ ସହିତ ସମାନ ହୋଇ ନପାରେ । ତଥାପି ଆପଣ ନିଜର କୃପାରେ ମୋତେ ଆପଣାର କରି ନେଇଛନ୍ତି । ଅଷ୍ଟମରେ ଆପଣ ପଚାରିଥିଲେ ଯେ—"ତୁମେ ଏତେବଡ଼ ରାଜାଙ୍କୁ ଛାଡ଼ି ମୋତେ କାହିଁକି ବରଣ କଲ ?" ତାହାର ଉତ୍ତର ମୁଁ ଦେଉଛି ଶୁଣନ୍ତୁ । ଦେଖନ୍ତୁ, ମୁଁ ତ ଅଜ୍ଞ, ଆପଣଙ୍କ ମହିମାକୁ ଜାଣିବାରେ ଅକ୍ଷମ । କିନ୍ତୁ ଯେ ନ୍ୟସ୍ତଦଣ୍ଡ ସନ୍ୟାସୀ, ଯେ ପ୍ରାଣୀମାନଙ୍କୁ ଅଭୟ ପ୍ରଦାନ କରନ୍ତି । ସେହି ବଡ଼ ବଡ଼ ବିବେକବାନ ବୈରାଗୀମାନେ ଆପଣଙ୍କ ପ୍ରଭାବ ବର୍ଣ୍ଣନା କରିଅଛନ୍ତି । ଆପଣ ସମଗ୍ର ଜଗତର ଆତ୍ମସ୍ୱରୂପ ଅଟନ୍ତି । ଆପଣ ଭକ୍ତମାନଙ୍କୁ ଆପେ ଆପେ ସମ୍ମାନ କରିଅଛନ୍ତି । କେବଳ ସେତିକି ନୁହେଁ ଆପଣ ସେମାନଙ୍କୁ ମଧ୍ୟ ଅତ୍ୟଧିକ ଆଦର କରନ୍ତି । ଏଥିପାଇଁ ମୁଁ ଆପଙ୍କୁ ବରଣ କରିଅଛି । ଏ ଯେଉଁ ଶିଶୁପାଳ, ଦନ୍ତବକ୍ର ଓ ଜରାସନ୍ଧ ଆଦି ତୁଚ୍ଛ ରାଜାଙ୍କ କଥା ଛାଡ଼ନ୍ତୁ, ଇନ୍ଦ୍ର ଦି ଲୋକପାଳ, ଅଜଶଙ୍କର ଓ ଅନ୍ୟ ଯେଉଁମାନେ ଆପଣଙ୍କୁ ଶ୍ରେଷ୍ଠ ବୋଲି ମାନନ୍ତି, ସେହି ବଡ଼ ବଡ଼ ଭୁବନପତିଗଣଙ୍କର ସମସ୍ତ ଭୋଗ ଆପଣଙ୍କ ଭ୍ରୁକୁଟି ବିଳାସରୁ ଉତ୍ପନ୍ନ କାଳ-ବେଗରେ ନଷ୍ଟ ହୋଇ ଯାଆନ୍ତି । ଯେତେବେଳେ ଏହି ଈଶ୍ୱରଙ୍କର ବିଭୂତି ମଧ୍ୟ ସ୍ଥାୟୀ ନୁହେଁ, ସେତେବେଳେ ଏହି ନଗଣ୍ୟ ନରପତି-ଗଣଙ୍କର ଧନ ବୈଭବ ସମ୍ବନ୍ଧରେ ମୁଁ ଆପଣଙ୍କୁ କ'ଣ ଅବା କହିବି ?

ହଁ, ଗୋଟିଏ କଥାରେ ମୁଁ ଆପଣଙ୍କ ସହିତ ଏକମତ ନୁହେଁ, ତାହା ଆପଣ ମୋତେ ଚିଡ଼େଇବା ପାଇଁ କହି ଦେଇଛନ୍ତି । ମୁଁ ତାହାର ବିରୋଧ କରୁଛି, ତାହା ସମସ୍ତଙ୍କ ଆଗରେ ମୁଁ ବିରୋଧ କରିବି । ଆପଣ କହିଥିଲେ ଯେ, ରାଜାମାନଙ୍କ ଭୟରେ ଆପଣ ସମୁଦ୍ର ମଝିରେ ଆସି ରହିଛନ୍ତି, ଆପଣ ବଳହୀନ । ଏପରି କହିବା ଆପଣଙ୍କର ଭୁଲ । ଦେଖନ୍ତୁ, ଆପଣ ଯଦି ବଳହୀନ ହୋଇ ଥାଆନ୍ତେ, ତାହାହେଲେ ଏପରି ସାହସ କେବେହେଲେ କରିପାରି ନଥାନ୍ତେ । ଯେଉଁ ଜରାସନ୍ଧ ଭୟରେ ଭୟଭୀତ ହୋଇ ଆପଣ ନିଜକୁ ପଳାତକ ବୋଲି କହୁଛନ୍ତି, ମୋ ବିବାହ ସମୟରେ ସେହି ଜରାସନ୍ଧ ତ ସେଠାରେ ଥିଲେ, ତାହାର ସମସ୍ତ ସାଥୀ ନରପତିମାନେ ମଧ୍ୟ ସେଠାରେ ସମୁପସ୍ଥିତ ଥିଲେ । ପୃଥିବୀର ସମସ୍ତ ଶୂର, ମାନୀ ନୃପଗଣ ସେହି ଅବସରରେ ମଧ୍ୟ ସେଠାକୁ ଆସିଥିଲେ । କିନ୍ତୁ ଆପଣ ସେତେବେଳେ ଏକୁଟିଆ ରଥରେ ବସି ସେଠାରେ ଯାଇ

ମହାତ୍ମାଲେ ଓ ସମସ୍ତଙ୍କ ସମ୍ମୁଖରେ ସମସ୍ତଙ୍କ ଆଖିରେ ଧୂଳି ଦେଇ ମୋତେ ଆପଣାର କରି ନେଇ ପଳାଇ ଆସିଲେ । ଆପଣ ନିଜର ଶାର୍ଙ୍ଗଧନୁର ଟଙ୍କାର ଶୁଣି ସେତେବେଳେ ଶତ୍ରୁମାନଙ୍କର ହୃଦୟ ବିଦୀର୍ଣ୍ଣ ହୋଇଗଲା । ଜରାସନ୍ଧ ଆଦି ଭୟରେ ପଳାଇଗଲେ ।"

ଆପଣ କହିଥିଲେ—"ତୁମେ ମୋ ସଙ୍ଗେ ରହିଲେ ସୁଖୀ ହେବ ନାହିଁ ।" ଏ କଥା କହିବା ମଧ୍ୟ ଯଥାର୍ଥ ହୋଇନାହିଁ । ଯଦି ରାଜ୍ୟ, ପାଟ, ଧନ ବୈଭବରେ ହିଁ ସୁଖ ଥାଆନ୍ତା, ତାହାହେଲେ ଏତେବଡ଼ ପ୍ରତାପୀ ମହାରାଜା ଅଙ୍ଗ, ସହସ୍ର ଅଶ୍ୱମେଧ ଯଜ୍ଞ କରିଥିବା ମହାରାଜ ପୃଥୁ, ଯାହାଙ୍କ ନାମ ଅନୁସାରେ ଏହି ସମସ୍ତ ଦେଶ ଭାରତବର୍ଷ ନାମରେ ନାମିତ ସେହି ମହାରାଜ ଭରତ, ଏତେ ବଡ ବୈଭବଶାଳୀ ମହାରାଜ ଯଯାତି ଓ ମହାନ୍ ଯଶସ୍ୱୀ ରାଜର୍ଷିଗଣ ତଥା ଅନ୍ୟାନ୍ୟ ବହୁ ସମ୍ରାଟଗଣ ନିଜ ନିଜର ଏକଛତ୍ର ଶାସିତ ରାଜ୍ୟମାନ ଛାଡ଼ି, ଧନ, ବୈଭବ ଓ ବିଷୟ ସାମଗ୍ରୀ ଆଦି ଛାଡ଼ି ଆପଣଙ୍କୁ ଲାଭ କରିବା ପାଇଁ ବନକୁ କାହିଁକି ଯାଇଥାଆନ୍ତେ । ଯଦି ରାଜ୍ୟ ପରିତ୍ୟାଗ କରିବାରେ ତାଙ୍କୁ କଷ୍ଟ ହୋଇ ଥାଆନ୍ତା, ତାହାହେଲେ ଅନ୍ୟମାନେ କାହିଁକି ତାଙ୍କ ପଥ ଅନୁସରଣ କରୁ-ଥାଆନ୍ତେ ? ଏପରି କରିବାରେ କାହାରିକୁ କ୍ଳେଶ ବି ହୋଇ ନାହିଁ । ତାହାହେଲେ ମୁଁ ଆପଣଙ୍କ ଚରଣରେ ଶରଣ ନେଉଥିବାରୁ ମୋତେ ଦୁଃଖ କାହିଁକି ହେବ ? ଆପଣ ତ ସୁଖସ୍ୱରୂପ ଅଟନ୍ତି । ସୁଖସ୍ୱରୂପଙ୍କ ନିକଟକୁ ଗଲେ ସୁଖ ହିଁ ମିଳେ ।

ଶେଷରେ ଆପଣ କହିଥିଲେ ଯେ, "ତୁମେ ଯଦି ଚାହିଁ, ତାହାହେଲେ ଏବେ ମଧ୍ୟ ଅନ୍ୟ ଯେ କୌଣସି ରାଜପୁତ୍ରଙ୍କୁ ବରଣ କରିନିଅ । କୌଣସି ବୈଭବଶାଳୀଙ୍କର ଘରକୁ ଆଦର ନିଅ ।" ତାହାହେଲେ ଆପଣ ବୁଝନ୍ତୁ ତ ରସଗୋଲା ଖାଇ କେହି ହେଲେ କାଟପକାଇ ପଡି ସଢ଼ିଥିବା ଗୁଡ଼ ଖାଇବାକୁ ଇଚ୍ଛା କରେ ? କେହି କେବେ ବିମାନରେ ଚଢ଼ିଲା ପରେ ଗଧ ଉପରେ ଚଢ଼ିବାକୁ ଇଚ୍ଛା କରିବ ? କେହି କପିଳା ଗାଈର ଦୁଗ୍ଧ ପାନ କଲାପରେ ଅଙ୍କରସ ପିଇବାକୁ ଇଚ୍ଛା କରିବ ? କେହି ଅମୃତ ପାନ କଲାପରେ କେବେ ବିଷପାନ କରିବାକୁ ଚାହିଁବ ? କେହି କେବେ ରାଜ ସିଂହାସନକୁ ତ୍ୟାଗ କରି କଣ୍ଟାବୁଦାରେ ବସିବାକୁ ଚାହିଁବ ? ଏହିପରି ସତ୍ପୁରୁଷଙ୍କ ଦ୍ୱାରା ସ୍ତୁତି, ମୋକ୍ଷର ଧାମ ସ୍ୱରୂପ ଲକ୍ଷ୍ମୀଙ୍କର ଆଶ୍ରୟସ୍ଥଳ ଆପଣଙ୍କ ଚରଣାରବିନ୍ଦର ଗନ୍ଧକୁ ଆଘ୍ରାଣ କରି ପୁନଶ୍ଚ ଏହି ମରଣଧର୍ମୀ ନର ପଶୁମାନଙ୍କର ପତ୍ନୀ ହେବାକୁ କେଉଁ ସ୍ତ୍ରୀଲୋକ ବା ଇଚ୍ଛା କରିବ, କିଏ ବା ଏପରି ଅଜ୍ଞ ପୁରୁଷଙ୍କର ଆଶ୍ରୟ ଗ୍ରହଣ କରିବାକୁ ଚାହିଁବ ? ଯେଉଁମାନଙ୍କର କି ନିରନ୍ତର କାଳକୁ ଅଧିକାଧିକ ଭୟ ରହିଛି ।"

ଆପଣ ପଚାରିଥିଲେ "ତୁମେ ମୋ'ଠାରେ କି ବିଶେଷତ୍ୱ ଦେଖି, କେଉଁ ଗୁଣରେ ଆକୃଷ୍ଟ ହୋଇ ମୋତେ ନିଜର ପତି ରୂପେ ବରଣ କଲ ? ତେବେ ଏହାର ଉତ୍ତର ମଁ

ମୁଁ ଦେଉଛି । "ଆପଣ ଏହି ଚରାଚର ବିଶ୍ୱର ଏକମାତ୍ର ଅଧୀଶ୍ୱର ଅଟନ୍ତି, ସମସ୍ତଙ୍କର ଆତ୍ମସ୍ୱରୂପ ଅଟନ୍ତି । ଆପଣ ସମସ୍ତ ଲୋକ, ପରଲୋକ ସମ୍ବନ୍ଧୀୟ କାମନାଗୁଡ଼ିକୁ ପୂର୍ଣ୍ଣ କରନ୍ତି । ଆପଣ ସୁଖ ସ୍ୱରୂପ ହୋଇଥିବାରୁ ପରମ ପ୍ରେମାସ୍ପଦ ଅଟନ୍ତି । ଆନନ୍ଦସ୍ୱରୂପ ହୋଇଥିବାରୁ ଆନନ୍ଦଦାତା ଅଟନ୍ତି । ଏହି ସମସ୍ତ କାରଣରୁ ମୁଁ ସମସ୍ତ ବିଷୟଲୋଲୁପୀ ଝାଟ ରାଜାମାନଙ୍କୁ ଛାଡ଼ି ଆପଣଙ୍କୁ ବରଣ କରିଅଛି । ତେଣୁ ହେ ଅଚ୍ୟୁତ ! ହେ ଜଗଦୀଶ ! ହେ କମଳଲୋଚନ ! ହେ ଭୂମନ ! ହେ ପ୍ରଭୋ ! ହେ ବିଭୋ ! ହେ ଭକ୍ତ-ବତ୍ସଳ ! ହେ ଅଶରଣ ଶରଣ ! ହେ ଗଦାଗ୍ରଜ ! ହେ ପରମେଶ୍ୱର ! ଆପଣଙ୍କର ପୁଣ୍ୟମୟ ପାଦପଦ୍ମରେ ମୋର ଏହି ପ୍ରାର୍ଥନା ଓ ଏହି ଅଭିଳାଷ ଯେ ଭାଗ୍ୟବଶତଃ ମୁଁ ଯେଉଁ ଯୋନିରେ ଜନ୍ମ ହୁଏ ପଛକେ, କର୍ମାନୁସାରେ ମୋତେ ଶୂକର, ଶ୍ୱାନ ଆଦି ଯେ କୌଣସି ଯୋନିରେ ଜନ୍ମ ହେବାକୁ ପଡ଼ୁ ପଛକେ, ସେହିସବୁ ଯୋନିରେ ଜନ୍ମ ହୋଇ ମୁଁ ଯେପରି ସର୍ବଦା ଆପଣଙ୍କ ଚରଣରେ ହିଁ ଶରଣ ପାଉଥାଏ । ମୁକ୍ତି ପାଇଁ ଯେପରି ଆପଣଙ୍କୁ ମୁଁ ଭୁଲି ନଯାଏ । କାରଣ ଆପଣ ଭକ୍ତବାଞ୍ଛା କଳ୍ପତରୁ ଓ ଶରଣାଗତ ପ୍ରତି-ପାଳକ ଅଟନ୍ତି । ଆପଣ ନିଜ ଆଶ୍ରିତଙ୍କର ମିଥ୍ୟା ସଂସାର ଭ୍ରମକୁ ନିବୃତ୍ତି କରନ୍ତି ଓ ସେମାନଙ୍କୁ ନିଜ ସ୍ୱରୂପ ପର୍ଯ୍ୟନ୍ତ ବି ପ୍ରଦାନ କରନ୍ତି ।

ଆପଣ କହିଥିଲେ ଯେ— 'ତୁମେ ଶିଶୁପାଳଙ୍କ ନିକଟକୁ ପୁନଶ୍ଚ ଚାଲିଯାଅ ।" ତାହାହେଲେ ହେ ପ୍ରଭୋ ! ଆପଣଙ୍କୁ ପାଇ ପୁନଶ୍ଚ ମୁଁ ସ୍ୱେଚ୍ଛାରେ ନରକକୁ ଯାଇପାରେ କି ? ଏପରି ଓଲୁ, ଗଧଭଳି ଗୃହସ୍ଥୀ ବୋଝ ବହନକାରୀ, ଷଣ୍ଢଙ୍କ ଭଳି ସ୍ତ୍ରୀ ମାନଙ୍କର ସେବା କାରୀ, ବଳଦଙ୍କ ଭଳି ଗୃହସ୍ଥୀରୂପୀ ରଥର ଜୁଆଳିରେ ଯୋଗ୍ୟ ହୋଇଥିବା, ବିରାଡ଼ି ଭଳି ବିଷୟରୂପୀ ଆହାର ଅନ୍ୱେଷଣରେ ଏଣେ ତେଣେ ଧାଇଁଥିବା, ଶାଗୁଣା ପରି ସ୍ତ୍ରୀ ଲୋକମାନଙ୍କ ହାଡ଼ମାଂସ ନିର୍ମିତ ତୁଚ୍ଛ ଶରୀର ଉପରେ ଦୃଷ୍ଟି ପକାଉଥିବା ଓ କୁକୁରଙ୍କ ଭଳି ସବୁଠାରୁ ତିରସ୍କୃତ ହେଉଥିବା ଏ ସଂସାରୀ-ପତି-ହତଭାଗିନୀ ସ୍ତ୍ରୀମାନଙ୍କୁ ହିଁ ପ୍ରାପ୍ତ ହୋଇ ଥାଆନ୍ତି । ମୁଁ ତ ଏପରି ବିଷୟପ୍ରତି ଦୃଷ୍ଟିପାତ କରିବାକୁ ଚାହେଁ ନାହିଁ । ଯାହାଙ୍କ କାନରେ ଭଗବାନଙ୍କର ସୁମଧୁର ନାମ ପଡ଼େ ନାହିଁ, ଯିଏ ସର୍ବତ୍ର କୀର୍ତ୍ତନୀୟ ଆପଣଙ୍କ ନାମକୁ କୀର୍ତ୍ତନ ନ କରନ୍ତି, ଯିଏ ଶିବ ବ୍ରହ୍ମାଦି ଦେବତାଙ୍କ ସଭାରେ ଗାନ କରାଯାଉଥିବା ଆପଣଙ୍କ ଗୁଣଗାନ କରନ୍ତି ନାହିଁ, ଏପରି ହତଭାଗ୍ୟ ପୁରୁଷ ହତଭାଗିନୀ ସ୍ତ୍ରୀ ଲୋକମାନଙ୍କର ହିଁ ପତି ହୁଅନ୍ତି ।

ଯେଉଁ ସ୍ତ୍ରୀଲୋକମାନେ ଆପଣଙ୍କ ନାମ ଗାନରୂପୀ ଅମୃତର ସ୍ୱାଦ ଆସ୍ୱାଦନ କରି ନାହାନ୍ତି, ଯିଏ ଆପଣଙ୍କ ଚରଣ କମଳ ମକରନ୍ଦ ଅଘ୍ରାଣ କରି ନାହାନ୍ତି, ଯାହାଙ୍କ କାନରେ ଆପଣଙ୍କ କମନୀୟ କଥା ପଡ଼ିନାହିଁ, ଏପରି ମୂଢ଼ା ସ୍ତ୍ରୀ ସେହି ପରି ବିଷୟ ଲୋଲୁପୀ ପୁରୁଷଙ୍କୁ ନିଜର ପତି ରୂପେ ବରଣ କରିବାକୁ ଇଚ୍ଛା କରନ୍ତି । ସେମାନେ ତାଙ୍କ ବାହ୍ୟ ରୂପରେ ଆକୃଷ୍ଟ ହୋଇ ସେମାନଙ୍କୁ ନିଜର ଅଙ୍ଗ ଅର୍ପିତ କରିବାକୁ ଇଚ୍ଛା ପ୍ରକାଶ

କରନ୍ତି । ଏ ଶରୀର କ'ଣ ? ଏହା ଉପରେ କେବଳ ଚର୍ମ ଢଙ୍କା ହୋଇଛି, କିନ୍ତୁ ଭିତରୁ ନିରନ୍ତର ମଳ ନିର୍ଗତ ହେଉଛି । ଚର୍ମ ଉପରେ କେଶ, ଲୋମ ଓ ଦାଢ଼ି ଏବଂ ନଖ ରହିଛି । ଭିତରକୁ ମାଂସ, ଅସ୍ଥି, ରକ୍ତ, କୃମି, ବିଷ୍ଠା, ବାତ, ପିତ୍ତ, କଫ ଓ ଅନ୍ୟାନ୍ୟ ବିଭିନ୍ନ ପ୍ରକାରର ମଳ ପରିପୂର୍ଣ୍ଣ ହୋଇ ରହିଛି । ଏ ଶରୀର ଅପବିତ୍ର ବସ୍ତୁ ସମୂହର ଏକ ପୁଞ୍ଜିଭୂତ ବସ୍ତୁ । ଭିତରେ ଲୁକ୍କାୟିତ ଭାବରେ ଥିବା ବସ୍ତୁସମୂହ ବାହାରିଗଲେ ବା ବମନ ହୋଇଗଲେ ତା ଆଡ଼କୁ ଚାହିଁବାକୁ ଘୃଣା ଲାଗେ । ଏପରି ଅପବିତ୍ର ଦେହରେ ଯାହାଙ୍କର ଆସକ୍ତି ତାକୁ ଆଲିଙ୍ଗନ ନକରି ଯେଉଁମାନେ ସୁଖ ଅନୁଭବ କରନ୍ତି, ସେହି ସ୍ତ୍ରୀଲୋକମାନେ ତ ଆପଣଙ୍କର ସୁନ୍ଦରସ୍ୱୀ ମାୟାଦ୍ୱାରା ପ୍ରବଞ୍ଚିତ ହୋଇ ଠକି ଯାଆନ୍ତି । ସେମାନେ ତ ଦୁଃଖରେ ସୁଖ, ଅନିତ୍ୟରେ ନିତ୍ୟ ନାଶବାନ ବସ୍ତୁ ମଧ୍ୟରେ ଅବିନାଶୀର କଳ୍ପନା କରନ୍ତି । ସେହି ସ୍ତ୍ରୀ ଲୋକମାନେ ହତଭାଗିନୀ ଓ ସେପରି ପୁରୁଷମାନେ ହତଭାଗ୍ୟ ଅଟନ୍ତି, ଯେଉଁମାନେ କି ପ୍ରତ୍ୟେକଙ୍କର ବାହ୍ୟ ଅଙ୍ଗକୁ ଦେଖି ତହିଁରେ ଆସକ୍ତ ହୁଅନ୍ତି ।

ଆପଣ ତ ଆପ୍ତକାମ ଅଟନ୍ତି । ଆପଣ ମୋର ଅଧୀନ ବା ମୋ ରୂପରେ ଆସକ୍ତ ସେପରି କୌଣସି କାରଣ ନାହିଁ । ଆପଣ ଆତ୍ମାରାମ । ନିଜେ ନିଜ ଆତ୍ମାରେ ହିଁ ରମଣ କରନ୍ତି, କିନ୍ତୁ ମୋର ତ ଆପଣ ସର୍ବସ୍ୱ ଅଟନ୍ତି । ଆପଣ ମୋତେ ଏପରି ବର ପ୍ରଦାନ କରନ୍ତୁ ଯେ, ମୋର ଯେପରି ସର୍ବଦା ଆପଣଙ୍କ ଶ୍ରୀଚରଣରେ ସହଜ ଅନୁରାଗ ରହେ ।"

ଭଗବାନ୍ ଏ ପର୍ଯ୍ୟନ୍ତ ଚୁପ୍ ହୋଇ ସବୁ କଥା ଶୁଣୁ ଥିଲେ ଓ ରୁକ୍ମିଣୀ ବୃଥା ବାକ୍ୟ ବିନିମୟ କରି ଚାଲିଥିଲେ । ରୁକ୍ମିଣୀ ନିଜର ପାଣ୍ଡିତ୍ୟ ପ୍ରଦର୍ଶିତ କରୁଥିଲେ । ସେ ଯେତେବେଳେ କହିଲେ—"ଆପଣ ହିଁ ମୋର ସର୍ବସ୍ୱ, ଆପଣଙ୍କ ପ୍ରତି ମୋର ସହଜ ଅନୁରାଗ ରହିଛି ।" ଭଗବାନ ତାହା ହିଁ ଶୁଣିବାକୁ ଚାହିଁ ଥିଲେ, ତାଙ୍କର ଅଭୀଷ୍ଟ ତାହା ହିଁ ଥିଲା । ତେଣୁ ସେ କହିଲେ—"ପ୍ରିୟେ ! ତୁମେ ଏପରି କଥା କାହିଁକି କହୁଛ ? ମୁଁ ତ ଚକୋରଙ୍କ ଭଳି ତୁମ ମୁଖଚନ୍ଦ୍ରକୁ ନିରନ୍ତର ନିରୀକ୍ଷଣ କରୁଅଛି । ମୁଁ ତ ତୁମର ମୁଖକୁ ଚାହିଁ ଚାହିଁ କେବେହେଲେ ତୃପ୍ତ ହୋଇ ପାରୁନାହିଁ ।"

ଏହାଶୁଣି ରୁକ୍ମିଣୀ କହିଲେ—"ଆପଣ ତ ଗୁଣାତୀତ ଅଟନ୍ତି । ଏହି ସାଂସାରିକ ଗୁଣରେ ଆପଣଙ୍କର କି ସମ୍ବନ୍ଧ ? ତଥାପି ସାଂସାରିକ ବୁଦ୍ଧିରେ ଆପଣ ଉତ୍କଣ୍ଠ ରକୋତ୍କଣ୍ଠକୁ ସ୍ୱୀକାର କରି ନିଅନ୍ତି । ପୁନଶ୍ଚ ସେହି ଭାବରେ ଭାବିତ ଲୋକଙ୍କ ଭଳି ହୋଇ ଅତୃପ୍ତ ନୟନରେ ମୋତେ ଚାହୁଁଛନ୍ତି ଓ ବାରମ୍ବାର କହୁଛନ୍ତି—'ତୁମକୁ ଯେତେ ଦେଖୁଥିଲେ ମଧ୍ୟ ମୋ ମନ ତୃପ୍ତ ହେଉନାହିଁ ?' ଏସବୁ ଆପଣଙ୍କର ଲୀଳା ଓ ବିନୋଦ । ଆପଣ

ମାନବ ଲୀଳା କରୁ ଅଛନ୍ତି । ଏହାକୁ ମଧ୍ୟ ମୁଁ ଆପଣଙ୍କର ପରମ କୃପା ବୋଲି ଭାବୁଛି । ମୋ ଉପରେ ଅନୁଗ୍ରହ କରି ହିଁ ଆପଣ ଏପରି କୌତୁକ କରୁଅଛନ୍ତି ।"

ସୂତ କହିଲେ—"ମୁନିଗଣ ! ଭଗବାନ ଯେତେବେଳେ ଦେଖିଲେ ରୁକ୍ମିଣୀ ଶୋକ, ଭୟ ତଥା ଆଶଙ୍କା ଆଦିରୁ ନିବୃତ୍ତ ହୋଇଯାଇଛନ୍ତି, ସେତେବେଳେ ସେ ତାଙ୍କ କଥାପୁଡ଼ିକୁ ସମର୍ଥନ କରି ତାଙ୍କୁ ପ୍ରେମରେ ଆଶ୍ୱାସନା ଦେବାକୁ ଲାଗିଲେ । ସେହି ଆଶ୍ୱାସନା ସମ୍ବନ୍ଧରେ ମୁଁ ଆପଣମାନଙ୍କୁ କହୁଅଛି ଶୁଣନ୍ତୁ ।"

## ଛପ୍ପୟ

ସମୁଝି ରୁକ୍ମନୀ ହଂସୀ ଶୋକ ଦୁଖ ହୃଦୟକୋ ତ୍ୟାଗେଯା ।
ପ୍ରିୟକୋ କଠିନ ବିନୋଦ ବୁଧି ତାତେ। ସୋ ଲଗେଯା ॥
ବୋଲୀ—'ତୁମ ଅତି ଗୁନୀ ନିରଗୁନୀ ହୋଂ ହୂଁ ସ୍ୱାମୀ ।
ହୋଂ ଅବଲା ଅତି ଅଧମ ଆପ ଅଜ ଅନ୍ତର୍ଯ୍ୟାମୀ ॥
ନିତ ନିତ ନୂତନ ନାଥ ହୋଂ, ତମ ପ୍ରଭୁ ପୁରୁଷ ପୁରାନ ହୋ ।
ହୋଂ ତରିୟା ତରଗୁନମୟୀ, ଆପ ଅଜିତ ଭଗବାନ୍ ହୋ ॥



# ଭଗବାନଙ୍କ ଆଶ୍ୱାସନା

ନ ଭ୍ରାତୃଶୀଂ ପ୍ରଣୟିନୀଂ ଗୃହିଣୀଂ ଗୃହେଷୁ,
ପଶ୍ୟାମି ମାନିନ୍ ଯଯା ସ୍ୱବବାହକାଲେ ।
ପ୍ରାପ୍ତାନ୍‌ ପାନଦଗଣସ୍ୟ ରହୋ ରହୋ ମେ,
ପ୍ରସ୍ଥାପିତୋ ଦ୍ୱିଜ ଉପଶ୍ରୁତ ସତ୍‌କଥସ୍ୟ ।। *

( ଶ୍ରୀ: ଭା: ୧୦ ସ୍କ: ୬୦ ଅ: ୫୫ ଶ୍ଲୋକ)

## ଛପ୍‌ପୟ

ନାଶବାନ ନର ଛାଡ଼ି ବରେ ତୁମ ଅଜ ଅବିନାଶୀ ।
ଜନମ ଜନମ ହୋଁ ରହୁଁ ଚରନ କମଲନ କୀ ଦାସୀ ।।
ତ୍ୱଚ୍, ରୋମ, ନଖ, କେଶ ମୂତ୍ରମଲଯୁତ ନିନ୍ଦିତ ତନ ।
ତଜ ବଷୟିନ କୋ ସଂଗ ଲଗାୟୋ ପ୍ରଭୁ ଚରନନ ମନ ।।
ଅବ ଫିର କବହୁଁ ନହୀଂ, କହେଁ ବଚନ ବଜ୍ରସମ ଅତି କଠିନ ।
ପ୍ରାନ ପ୍ରିୟାକୋ ପ୍ରେମ ଲଖି, ହଁସି ବୋଲେ କରୁନାୟତନ ।

ହସଖୁସି କଥାରେ ଯେତେବେଳେ ନିଜର କୌଣସି ଆତ୍ମୀୟ ଖରାପ ମନେକରନ୍ତି, ସେତେବେଳେ ତାହାଙ୍କ ମନ ପରିବର୍ତ୍ତନ କରାଇ ତାଙ୍କୁ ପ୍ରସନ୍ନ କରାଇବା ପାଇଁ ନାନାପ୍ରକାର ପ୍ରବୋଧନା କରିବାକୁ ପଡ଼େ । ଭଲ କଥାକୁ ଖରାପ ଓ ଖରାପ

---

* ଏମନ୍ତ ପତ୍ନୀ ବାକ୍ୟ ଶୁଣି । ହସି ବୋଲନ୍ତି ପଦ୍ମପାଣି ।।
ତୋହର ପ୍ରାପ୍ତ ଗୃହେଶ୍ୱରୀ । ନ ହି ନୋହିବ ପ୍ରକାଶୀ ।।
ତୋର ବିବାହକାଳେ ଆସି । ଲକ୍ଷେ ନୃପତି ଥିଲେ ବସି ।।
ତାଙ୍କୁ ତୁଚ୍ଛ ଭାବ କରି । ବିପ୍ର ପେଷିଲୁ ମୋର ଛାଡ଼ି ।।

[ ହରିବଂଶ : ଜଗନ୍ନାଥ ଦାସ : ୧୦ମ ସ୍କ. ୬୫ ଅ ]

କଥାକୁ ଭଲ ବୋଲି ପ୍ରମାଣିତ କରିବାକୁ ପଡ଼େ । ସେ ଯେପରି ପ୍ରସନ୍ନ ହୋଇପାରିବେ, ତାଙ୍କ ସହିତ ସେହିପରି ବ୍ୟବହାର କରିବାକୁ ପଡ଼େ । ତାଙ୍କର ରୁଷ୍ଟତା ଦେଖି ତାଙ୍କୁ ସତ ମିଛ କହି ସନ୍ତୋଷ କରିବାକୁ ହୁଏ । ଯିଏ ଏହି କଳାରେ ନିପୁଣ ନୁହନ୍ତି, ସେ ସର୍ବପ୍ରିୟ ହୋଇ ନପାରନ୍ତି । ସେହି କଠୋର ସ୍ୱଭାବର ଲୋକଙ୍କ ସହିତ କାହାର ସ୍ଥାୟୀ ପ୍ରେମ ହୋଇପାରେ ନାହିଁ । ପ୍ରେମରେ କଡ଼ା କଥା କହିବା ଦୋଷାବହ । ତାହା ଯଦି ସତ୍ୟ ହୋଇଥାଏ, ତେବେ ବି ମଧୁରତାର ସହିତ ବୁଝାଇ କହିବା ଉଚିତ୍ । ମୃଦୁ ଓ ମଧୁର ବଚନରେ ତଥା ଅନୁରାଗଯୁକ୍ତ ବ୍ୟବହାର ଦ୍ୱାରା ହିଁ ପ୍ରେମବୃଦ୍ଧି ହୋଇଥାଏ ।

ସୂତ କହିଲେ—"ମୁନିଗଣ ! ରୁକ୍ମିଣୀ ଯେତେବେଳେ ଭଗବାନଙ୍କ କଥାର ଉତ୍ତର ଆଧ୍ୟାତ୍ମିକ ଭାବରେ ଦେଲେ, ସେତେବେଳେ ଉଭୟଙ୍କର କଥାରେ ସାମଞ୍ଜସ୍ୟ ହେବାରୁ ପୂର୍ବଭଳି ଉଭୟଙ୍କ ମଧ୍ୟରେ ଅନୁରାଗ ବଢ଼ିଗଲା । ଭଗବାନ କହିଲେ—'ପ୍ରିୟେ ! ମୁଁ ତୁମକୁ ଏ ଯେଉଁ କଥା କହିଦେଲି ଯେ, ତୁମେ କୌଣସି ଅନୁରୂପ ବର ବରଣ କରି ନିଅ, ଏଥିରେ ତୁମ ହୃଦୟରେ ବଡ଼ ବ୍ୟଥା ଲାଗିଥିବ । ମୁଁ ନଭାବି ନ ଚିନ୍ତି ଏପରି କଥା କହିଦେଲି । ହସି ହସି କହୁ କହୁ ମୋ ମୁଖରୁ ହଠାତ୍ ଏପରି କଥା ବାହାରି ପଡ଼ିଲା । ବାସ୍ତବରେ ସ୍ତ୍ରୀଲୋକମାନଙ୍କ ପାଇଁ ଏ ଶବ୍ଦ ବଡ଼ ଅପମାନ ଜନକ ।"

ରୁକ୍ମିଣୀ ପ୍ରେମରେ କହିଲେ—"ନା, ପ୍ରାଣନାଥ ! ଅପମାନଜନକ ନୁହେଁ, ଅନେକ ସ୍ଥଳରେ ଏପରି ହୋଇଥାଏ ଯେ, କନ୍ୟା ଅନ୍ୟ କାହାକୁ ଭଲ ପାଇଥାଏ ଓ ତାକୁ ଅନ୍ୟ ଜଣେ ବଳପୂର୍ବକ ନେଇଯାଏ । ଯେପରି କାଶୀରାଜଙ୍କ କନ୍ୟା ଅମ୍ବା··· ରାଜା ଶାଲ୍ୱଙ୍କୁ ଭଲପାଉଥିଲା, କିନ୍ତୁ ତାକୁ ନିଜର ଭାଇମାନଙ୍କ ପାଇଁ ଭୀଷ୍ମ ବଳପୂର୍ବକ ହରଣ କରି ନେଇଥିଲେ । ମୋ ବିବାହରେ କିନ୍ତୁ ଏପରି ଘଟି ନାହିଁ । ମୁଁ ତ ଆପଣଙ୍କୁ ହିଁ ଚାହିଁଥିଲି । ସେ ସମୟରେ ଆପଣ ପଦାର୍ପଣ କରି ମୋତେ ଉଦ୍ଧାର କରି ନଥିଲେ, ମୋର ଭାଇ ଓ ପିତା ମୋତେ ବଳପୂର୍ବକ ଅନ୍ୟ ସହିତ ବିବାହ କରି ଦେଇ ଥାଆନ୍ତେ । ମୋର ସେତେବେଳେ ଆତ୍ମହତ୍ୟା କରିବା ହିଁ ସାର ହୋଇଥାଆନ୍ତା । ବିବାହ ହେବାପରେ ତ ସ୍ତ୍ରୀ ତାଙ୍କର ହୋଇ ଯାଆନ୍ତି, ତାଙ୍କ ସହିତ ତାହାର ଜୀବନ ଅତିବାହିତ ହୁଏ । ହଁ, ଏପରି କେତେକ କୁଳଟା ସ୍ତ୍ରୀ ଅଛନ୍ତି, ଯାହାଙ୍କ ବିବାହ ଜଣଙ୍କ ସହିତ ହୋଇଥାଏ ଓ ବିବାହ ପରେ ସେ ପରପୁରୁଷ ସହିତ ସମ୍ବନ୍ଧ ରଖନ୍ତି । ଏପରି ନିତ୍ୟ ନୂତନ ନୂତନ ପୁରୁଷଙ୍କୁ ଭଲ ପାଇବାରେ ଲାଗନ୍ତି । ବ୍ୟଭିଚାରିଣୀ ଅସତୀ ସ୍ତ୍ରୀମାନଙ୍କୁ ବୁଦ୍ଧିମାନ ପୁରୁଷ କେବେହେଲେ ବିଶ୍ୱାସ କରିବା ଉଚିତ ନୁହେଁ । ଏପରି ପରପୁରୁଷଗାମିନୀ କାମିନୀ ନିଜ ବସ୍ତ୍ରରେ ନିଜକୁ ଲୁଚାଇଥିବା ସର୍ପିଣୀ ସମାନ ଅଟନ୍ତି । ସେମାନେ କେତେବେଳେ ଯେ ଅନର୍ଥ ନ ଘଟାଇବେ ତାହ

କହି ହେବ ନାହିଁ । ଏପରି କୁଳଟା ସ୍ତ୍ରୀଲୋକମାନଙ୍କର ଭରଣପୋଷଣ କରିବାରେ ମନୁଷ୍ୟ ଇହଲୋକ ଓ ପରଲୋକ ଉଭୟରୁ ପତିତ ହୁଏ ।

ଏହା ଶୁଣି ଭଗବାନ ଖୁବ୍ ହସିଲେ ଓ ହସି ହସି କହିଲେ—"ପ୍ରିୟେ ! ତୁମର ଏହି ମିଠା ମିଠା ଅନୁରାଗଭରା କଥା ଶୁଣିବା ପାଇଁ ହିଁ ମୁଁ ଏପରି ପ୍ରମୋଦ କରୁଥିଲି । ତୁମେ ତ ଜାଣ, ମୃଦଙ୍ଗରେ ଯେ ପର୍ଯ୍ୟନ୍ତ ହାତର ଆଘାତ ନ ବାଜିଥାଏ, ସେ ପର୍ଯ୍ୟନ୍ତ ସେଥିରୁ ମଧୁର ସ୍ୱର ବାହାରେ ନାହିଁ । ବୀଣାର ତାରକୁ ଯେ ପର୍ଯ୍ୟନ୍ତ ଅଙ୍ଗୁଳି ନଯାଇ ସେଥିରେ ଆଘାତ ନ କରାଯାଏ, ସେ ପର୍ଯ୍ୟନ୍ତ ତହିଁରୁ ଶୁଦ୍ଧ ସ୍ୱର ବାହାରେ ନାହିଁ । ସେହିପରି ଯେ ପର୍ଯ୍ୟନ୍ତ ମୁଁ ତୁମକୁ ଚିଡ଼ାଇଲା ଭଳି କଥା ନ କହି ଥାଆନ୍ତି, ସେ ପର୍ଯ୍ୟନ୍ତ ତୁମେ କିଛି ନ କହି ଲାଜରେ ତଳକୁ ମୁହଁ ପୋତି ବସି ଥାଆନ୍ତ । ମୁଁ କହିବାରୁ ତୁମେ ମୋ କଥାକୁ ନେଇ ତାହାର ଯୁକ୍ତିଯୁକ୍ତ ବ୍ୟାଖ୍ୟା କରି ପାରିଲ । ତୁମେ ଯାହାସବୁ କହିଗଲ, ତାହା ସତ୍ୟ । ମୁଁ ତୁମ ପ୍ରେମ ପ୍ରତି ଶଙ୍କିତ ନୁହେଁ କିମ୍ବା ତୁମ ସ୍ନେହ ପ୍ରତି ମୋର କୌଣସି ପ୍ରକାର ସନ୍ଦେହ ନାହିଁ । ତୁମେ ମୋର ଜଣେ ଅନନ୍ୟ ଭକ୍ତ । ସକାମ ଭାବର ନିବୃତ୍ତି ନିମିତ୍ତ ତୁମେ ମୋ ଆଗରେ ଯେଉଁସବୁ କାମନା କଲ, ସେ ସମସ୍ତ ତୁମର ନିତ୍ୟ ପ୍ରାପ୍ତ । ହେ କଲ୍ୟାଣି ! କୌତୂହଳ ବଶତଃ ମୁଁ ଏସବୁ କଥା କହିଥିଲି । ମୁଁ ତୁମକୁ ଏପରି ଚେଡ଼ାଚଡ଼ା କଥା କହି ତୁମକୁ ବିଚଳିତ କରିବାକୁ ଚାହିଁଥିଲି, କିନ୍ତୁ ତୁମେ ସେଥିରେ ଟିକେ ହେଲେ ବିଚଳିତ ହେଲ ନାହିଁ ।"

ରୁକ୍ମିଣୀ କହିଲେ—"ଏପରି କହିବାକୁ ଆପଣଙ୍କର କିପରି ଇଚ୍ଛା ହେଲା ? ହାସ ବିନୋଦ ହେବା ପାଇଁ କ'ଣ ଆପଣଙ୍କ ନିକଟରେ ଅନ୍ୟ କୌଣସି କଥା କହିବାକୁ ନଥିଲା ?"

ଭଗବାନ କହିଲେ—"ମୁଁ ତୁମ ପ୍ରେମର ପରୀକ୍ଷା କରିବାକୁ ଚାହିଁଥିଲି । ତୁମ ମୁଖରୁ ପତିପ୍ରେମ ଓ ପାତିବ୍ରତ୍ୟର ଉଜ୍ଜ୍ୱଳ ମାହାତ୍ମ୍ୟ ଶୁଣିବା ପାଇଁ ମୋର ଇଚ୍ଛା ହେବାରୁ ତାହା ଏବେ ତୁମ ମୁଖରୁ ଶୁଣି ପାରିଲି । ତୁମେ ମୋତେ ଯେଉଁ ମୋକ୍ଷର ଅଧୀଶ୍ୱର ବୋଲି କହିଲ, ତାହା ସତ୍ୟ । ସମସ୍ତେ ମୋତେ ହିଁ ଭଜନ କରନ୍ତି । ମୁଁ ସମସ୍ତଙ୍କ କର୍ମର ଫଳ ଦାତା । ଯେଉଁ ବ୍ୟକ୍ତି ଧନ, ସ୍ତ୍ରୀ, ପୁତ୍ର ଓ ଯଶ ଆଦିର କାମନାରେ ସକାମ ଭାବରେ ମୋତେ ପୂଜା କରନ୍ତି, ମୋ ଉଦ୍ଦେଶ୍ୟରେ ନାନା ପ୍ରକାରର ଜପ, ତପ, ବ୍ରତ ଓ ଉପବାସାଦି କରନ୍ତି ସେ ମୋ ମୋହିନୀ ମାୟାର ଫାନ୍ଦରେ ପଡ଼ି ମୋହିତ ହୋଇ ଯାଆନ୍ତି । ତୁମେ ଚିନ୍ତା କର, ମୋର ଭଜନର ଫଳ ତ ଏହା ହେବା ଉଚିତ୍ ଯେ, ତରିବନ ପାଇଁ ସଂସାର ଚକ୍ରରୁ ଯେପରି ଜୀବ ମୁକ୍ତ ହୁଅନ୍ତି । କିନ୍ତୁ ତାହା ଇଚ୍ଛା ନକରି ମନୁଷ୍ୟ ମୋକ୍ଷ ତଥା ଧର୍ମ, ସ୍ତ୍ରୀ ସମ୍ପଦର ଅଧିଷ୍ଠାତା ମୋଠାରୁ (ଜଗଦୀଶ୍ୱରଙ୍କ ଠାରୁ)

କେବଳ ଶାରୀରିକ ବିଷୟ ସମ୍ବନ୍ଧୀୟ ଲୌକିକ ସମ୍ପତ୍ତିକୁ ହିଁ ପ୍ରାପ୍ତ ହେବାପାଇଁ ପ୍ରାର୍ଥନା କରନ୍ତି । ପରମଭକ୍ତ ତଥା ସଂସାର ସାଗରରୁ ଉଦ୍ଧାର ହେବାକୁ ସେମାନେ ଚାହାନ୍ତି ନାହିଁ । ସେମାନେ ହତଭାଗ୍ୟ, କୃପଣ, ଦୀନ ଅଟନ୍ତି । ସେମାନେ ମୋତେ ସମ୍ପୂର୍ଣ୍ଣରୂପେ ଭୁଲି ଯାଆନ୍ତି । ଏପରି ଆହାର, ନିଦ୍ରା ଓ ମୈଥୁନ ଆଦି ସୁଖ ତ ଶୁକର, ଶ୍ୱାନ ଆଦି ଯୋନିରେ ତଥା ନରକାଦି ଲୋକରେ ମଧ୍ୟ ମିଳିଥାଏ ।"

ରୁକ୍ମିଣୀ କହିଲେ—"ପ୍ରଭୋ ! ଜୀବ ଜାଣେ ଯେ ଏହି ବିଷୟ ସୁଖରେ ଶାନ୍ତି ନାହିଁ, ତଥାପି ସେ ଏହା କାହିଁକି ବାରମ୍ବାର ଇଚ୍ଛା କରେ ? ଲୋକମାନେ କାହିଁକି ଏହି ହାଡ଼ମାଂସର ଶରୀର ସହିତ ରମଣ କରିବାକୁ ଉତ୍ତମ କାର୍ଯ୍ୟ ବୋଲି ମନେକରନ୍ତି ?"

ଭଗବାନ କହିଲେ—"ପ୍ରିୟେ ! ଅନେକ ଜନ୍ମର ବାସନା ହେତୁ ଜୀବ ଦୁଃଖକୁ ହିଁ ସୁଖ ବୋଲି ମନେ କରେ । ହତଭାଗ୍ୟ ବ୍ୟକ୍ତିର ମନ ସର୍ବଦା ବିଷୟ-ଜାତ ପଦାର୍ଥରେ ହିଁ ଆସକ୍ତ ହୁଏ । ବିଷ୍ଠାର କୀଟକୁ ବିଷ୍ଠା ହିଁ ଭଲ ଲାଗେ । ମଳ ଓ ପଚିସଢ଼ା ଦ୍ରବ୍ୟର କୀଟକୁ ତହିଁରେ ରମଣ କରିବାକୁ ସୁଖଲାଗେ । ଯେପରି ଯାହାର ମନ ସଂସାର ବିଷୟରେ ଆସକ୍ତ, ତାକୁ ନରକ ପ୍ରାପ୍ତି ହିଁ ସୁଖକର ବୋଧ ହୁଏ ।"

ରୁକ୍ମିଣୀ କହିଲେ—"ହେ ଅଶରଣ ଶରଣ ! ମୋତେ ଆପଣ ଏପରି ବରଦାନ କରନ୍ତୁ, ଯେଉଁଥିରେ କି ଆପଣଙ୍କ ଚରଣ ସେବା ବ୍ୟତୀତ ଅନ୍ୟ କିଛି ଯେପରି ସ୍ଥାନ ନ ପାଏ ।"

ଭଗବାନ କହିଲେ—"ପ୍ରିୟେ ! ସେବାଧର୍ମ ବଡ଼ କଠିନ । ପୁନଶ୍ଚ ତା ଉପରକୁ ନିଷ୍କାମ ସେବା ତ ଆହୁରି ଅଧିକ କଠିନ । ଏହା ଅତ୍ୟନ୍ତ ଆନନ୍ଦର କଥା ଯେ, ତୁମେ ସେହି ସଂସାର ବନ୍ଧନରୁ ତରିବାର ପାଇଁ ବିମୁକ୍ତକାରୀ ନିଷ୍କାମ ସେବା ଏପର୍ଯ୍ୟନ୍ତ ଅତ୍ୟନ୍ତ ଆଗ୍ରହର ସହିତ କରୁଅଛ । କାମୀ ପୁରୁଷମାନେ ଏଭଳି ସେବାର ସୁଯୋଗ ପାଇବା ଅତ୍ୟନ୍ତ ଦୁରୂହ । ପୁନଶ୍ଚ ଇନ୍ଦ୍ରିୟର ତୃପ୍ତି କରିବାରେ ପ୍ରବୃତ୍ତ ହେଉଥିବା ଦୂଷିତ ହୃଦୟ ବିଶିଷ୍ଟ ଯେଉଁ ସ୍ତ୍ରୀ ଲୋକ ରହିଛନ୍ତି, ସେମାନଙ୍କ ବିଷୟରେ ଅଧିକ କହିବା ନିଷ୍ପ୍ରୟୋଜନ । କାମ ସୁଖକୁ ହିଁ ସର୍ବଶ୍ରେଷ୍ଠ ସୁଖ ବୋଲି ମନେ କରୁଥିବା ସେହି କୁଳଟା ସ୍ତ୍ରୀଲୋକମାନେ ନାନା ପ୍ରକାର ରଙ୍ଗ ଢଙ୍ଗ ପ୍ରଦର୍ଶନ କରି ବିଭିନ୍ନ ପ୍ରକାର ଛଳନା କରୁଥାଆନ୍ତି ଏବଂ ଇନ୍ଦ୍ରିୟ ତୃପ୍ତି ନିମିତ୍ତ ଏଣେ ତେଣେ ବୁଲିଥାଆନ୍ତି । ତୁମେ ତ ସେବା ଦ୍ୱାରା ମୋତେ କିଣି ନେଇଛ ।

ରୁକ୍ମିଣୀ କହିଲେ—"ମହାରାଜ ! ଆପଣଙ୍କର ଲକ୍ଷେ ଦାସୀଙ୍କ ମଧ୍ୟରୁ ମୁଁ ଜଣେ । ମୁଁ ଆପଣଙ୍କର ଅବା କି ସେବା କରୁଛି ? ଆପଣଙ୍କ ଚରଣର ଧୂଳି ସହିତ ମୁଁ ମଧ୍ୟ ସମାନ ନୁହେଁ ।"

ଭଗବାନ କହିଲେ—"ନା ପ୍ରିୟେ ! ମୁଁ ସତ୍ୟ କଥା କହୁଛି, ମୋର ଷୋଳ ସହସ୍ର ଏକଶହ ଆଠ ଘରେ ଏତରୁ ଆଉ‌ରେକ ସୁନ୍ଦରୀ ରାଣୀ ଅଛନ୍ତି । କିନ୍ତୁ ନିଜ ବ୍ୟବହାର, ନିଷ୍ଛଳ ପ୍ରେମ, ଅନୁପମ ଅନୁରାଗ ଓ ନିଷ୍କାମ ସେବାରେ ମୁଁ ଯେପରି ତୁମର ବଶ ହୋଇଛି, ସେପରି ଅନ୍ୟ କାହାର ବଶ ହୋଇ ନାହିଁ । ତୁମ ଭଳି ପ୍ରେମସ୍ୱିନୀ ଗୃହିଣୀ ମୁଁ ଅନ୍ୟ କାହାରିକୁ ଦେଖୁ ନାହିଁ । ତୁମର ମଧ୍ୟ ମୋ ପ୍ରତି ସହଜ ଅନୁରାଗ ରହିଛି । ଯଦି ଏପରି ହୋଇ ନଥାନ୍ତା, ତାହାହେଲେ ତୁମ ବିବାହ ସମୟରେ ସେହି ବୃଦ୍ଧ ବ୍ରାହ୍ମଣଙ୍କୁ ପଠାଇ ମୋତେ ଡକାଇ ନଥାନ୍ତ; କିମ୍ବା ବଡ଼ ବଡ଼ ରାଜାଙ୍କୁ ଛାଡ଼ି ମୋତେ ଆପଣାର କରି ନେଇ ନଥାନ୍ତ । ଯେତେବେଳେ ତୁମେ ନିଜର ଦୂତ ମୋ ନିକଟକୁ ପଠାଇଥିଲ ମୁଁ ସେତେବେଳେ ବୁଝି ପାରିଥିଲି ଯେ ତୁମର ମୋ ପ୍ରତି ନିଷ୍ଛଳ ହାର୍ଦ୍ଦିକ ଗୂଢ଼ ଅନୁରାଗ ରହିଛି । ସେଥିପାଇଁ ମୁଁ ଖବର ପାଇବା ମାତ୍ରେ ତୁମ ପୁରକୁ ଧାଇଁ ଯାଇ ଥିଲି ଓ ତୁମକୁ ସମସ୍ତଙ୍କ ସାମନାରେ ନେଇ ପଳାଇ ଆସିଥିଲି ।"

ରୁକ୍ମିଣୀ କହିଲେ—"ମହାରାଜ ! ଏଥିରେ ମୋର କି ବଡ଼ପଣ ? ଆପଣଙ୍କର ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ଓ ଗୁଣରେ ମୁଁ ଆକର୍ଷିତ ହୋଇଥିଲି । ଏହା ହିଁ ତାହାର ଫଳ । କେଉଁ କନ୍ୟା ଅବା ଆପଣଙ୍କୁ ନିଜର ପତି ରୂପେ ବରଣ କରିବାକୁ ନ ଚାହିଁବ ? ଏହା ତ ହେଉଛି କେବଳ ଆପଣଙ୍କ ଆକର୍ଷଣର କାରଣ ।"

ଭଗବାନ କହିଲେ—"ଆଚ୍ଛା, ସତେ କ'ଣ ମୋର ଆକର୍ଷଣର ଏହା ଫଳ ? କିନ୍ତୁ ନିଜର ଇଚ୍ଛାକୁ ମୋ ଇଚ୍ଛା ସହିତ ମିଳାଇଦେବା ତ ସାମାନ୍ୟ କଥା ନୁହେଁ । ନିଜ ଇଷ୍ଟଙ୍କର କୌଣସି କଥାକୁ ଖରାପ ବୋଲି ନ ଭାବିବା ଅନନ୍ୟତାର ସର୍ବୋତ୍କୃଷ୍ଟ ଉଦାହରଣ । ଦେଖ, ବିବାହ ସମୟରେ ତୁମ ଭାଇ ଦ୍ୱେଷବଶତଃ ମୋ ସହିତ ଯୁଦ୍ଧ କରିବାକୁ ଆସିଥିଲେ । ମୁଁ ଯୁଦ୍ଧରେ ଜୟ ଲାଭ କଲି ଓ ତୁମ ସମ୍ମୁଖରେ ହିଁ ତାଙ୍କୁ ଅପମାନିତ କରିଦେଲି, ତୁମେ ତ ମୋର ଶୀଳ ସଙ୍କୋଚ ସମ୍ବନ୍ଧରେ କିଛି କହିଲ ନାହିଁ । ପୁନଶ୍ଚ ଅନିରୁଦ୍ଧଙ୍କ ବିବାହରେ ଦ୍ୟୂତକ୍ରୀଡ଼ା ସମୟରେ ବଡ଼ଭାଇ ବଳରାମ ତୁମ ଭାଇଙ୍କୁ ମାରିଦେଲେ. ତଥାପି ତୁମେ ନୀରବ ରହିଲ । ଏତେ ସହନଶୀଳତା ଅନ୍ୟ କୌଣସି ସ୍ତ୍ରୀଙ୍କଠାରେ କ'ଣ କେବେ ସମ୍ଭବ ହୋଇପାରେ ? ତୁମେ ଭାବିଥିଲ—'ଯଦି ମୁଁ କିଛି କହେ, ତାହାହେଲେ ଘରେ ବିରୋଧଭାବ ସୃଷ୍ଟି ହେବ', ସେହି ଭୟରେ ତୁମେ ସେହି ଅସହ୍ୟ ଦୁଃଖକୁ ଚୁପଚାପ ସହ୍ୟ କରି ନେଲ । ଏହାର ପ୍ରତିବାଦ ବି କଲ ନାହିଁ । ତୁମର ଏହି ଉଦାରତାପୂର୍ଣ୍ଣ କାର୍ଯ୍ୟରୁ ହିଁ ମୁଁ ତୁମ ଅଧୀନ ହୋଇଯାଇଛି । ତୁମେ ନିଜର ମୃଦୁଳ ମଧୁର ସ୍ୱଭାବରେ ହିଁ ମୋତେ କିଣିନେଇଛ ।"

ରୁକ୍ମିଣୀ ଏହାଶୁଣି ଲଜ୍ଜିତ ହେଲେ । ଭଗବାନ ମଧ୍ୟ ଅନେକ ସ୍ନେହପୂର୍ଣ୍ଣ କହି-ଚାଲିଲେ—"ତୁମର ମୋ ପ୍ରତି ଅନୁରାଗ ଅନୁକରଣୀୟ ଥିଲା । ଏକ ରାଜକନ୍ୟା ହୃଦୟରେ ଏତେ ସାହାସ ହେବା ପରମ ପ୍ରଶଂସନୀୟ ଅଟେ । ତୁମ ବରଯାତ୍ରୀ ଶିବାର ଦୁଇ ସ୍ୱର-ବନ ବାଜା ଥିଲା, ବିବାହର ସମସ୍ତ ଆୟୋଜନ ହୋଇଯାଇଥିଲା, କିନ୍ତୁ ତୁମେ ନିଜର ଦୃଢ଼ନିଶ୍ଚିତତାରୁ ବିଚଳିତ ହେଲେ ହେଲେ ବିଚଳିତ ହୋଇ ନଥିଲ । ସୁମେରୁ ସମ ନିଜର ସଂକଳ୍ପରେ ଦୃଢ଼ ଅଟଳ ରହିଥିଲ । ତୁମେ ମାତା ପିତାଙ୍କୁ ନପଚାରି ମୋ ନିକଟକୁ ପତ୍ର ଲେଖି ଦୂତ ପଠାଇଥିଲ । ଯେତେବେଳେ ମୁଁ ପହଞ୍ଚିବାରେ ଟିକିଏ ବିଳମ୍ବ ଘଟିଲା, ସେତେବେଳେ ତୁମେ ଏହି ସାରା ସଂସାରକୁ ମୋ ବିନା ଶୂନ୍ୟ ଅନୁଭବ କଲ । ତୁମେ ନିଶ୍ଚିତ ହୋଇଯାଇଥିଲ ଯେ, ଯଦି ଦେବୀପୂଜା ସମୟ ଭିତରେ ମୁଁ ନ ପହଞ୍ଚେ, ତାହାହେଲେ ତୁମେ ତୁମ ପ୍ରାଣତ୍ୟାଗ କରିଦେବ । ଏବେ ବିଚାର ଦେଖି, ତୁମର ଏ ଅଲୌକିକ ପ୍ରେମର ମୁଁ କି ପ୍ରତ୍ୟୁପକାର କରି ପାରିବି ? ତୁମର ଋଣ ମୁଁ କିପରି ପରିଶୋଧ କରିପାରିବି ? ତାହା ନକରି ପାରି ମୁଁ ଚିରଦିନ ତୁମର ଋଣୀ ହୋଇ ରହିବାରେ ମୋର ଆନନ୍ଦ । ଋଣୀ ହୋଇ ରହିବା ଦ୍ୱାରା ତୁମର ଏହି ଅଦ୍ଭୁତ ପ୍ରେମ ମୋର ସର୍ବଦା ସ୍ମରଣ ହେଉଥିବ ଓ ମୁଁ ତାହାର ପ୍ରଶଂସା ସର୍ବଦା କରୁଥିବି । ତୁମ ପ୍ରଗାଢ଼ ସ୍ନେହର ଅଭିନନ୍ଦନ ମୁଁ ନିରନ୍ତର କରୁଥିବି ।"

ସୂତ କହିଲେ—"ମୁନିଗଣ ! ଭଗବାନଙ୍କର ଏପରି ସ୍ନେହପୂର୍ଣ୍ଣ, ଅନୁରାଗଯୁକ୍ତ ଓ ପ୍ରେମାପ୍ଲୁତ ବଚନ ଶୁଣି ରୁକ୍ମିଣୀ ଲଜ୍ଜିତା ହେଲେ । ତାଙ୍କ ମୁଖରୁ ଆଉ କିଛି କଥା ବାହାରିଲା ନାହିଁ । ସେ ନିଜର ଶିର ଭଗବାନଙ୍କ ପାଦପଦ୍ମରେ ସ୍ଥାପନ କଲେ । ଭଗବାନ ନିଜର ପ୍ରେମପ୍ରକମ୍ପିତ କରରେ ତାଙ୍କୁ ଉଠାଇ ସ୍ନେହଭରା ହୃଦୟରେ ଆଲିଙ୍ଗନ କଲେ । ଭଗବାନ ଏହିପରି ଅନ୍ୟରାଣୀମାନଙ୍କ ସହିତ ମଧ୍ୟ ଅତି ସରସ ହାସ ବିନୋଦ କରି ଆଥାନ୍ତି ।"

ଶୌନକ କହିଲେ—"ହେ ସୂତ ! ଭଗବାନ ଅନ୍ୟରାଣୀଙ୍କ ସହିତ ଯେଉଁ ହାସ ବିନୋଦ କରିଥିଲେ ତାହା ଆମ୍ଭମାନଙ୍କୁ କୁହନ୍ତୁ ।"

ସୂତ ହସି ହସି କହିଲେ— ହଁ, ମହାରାଜ ! ହାସ ବିନୋଦର ତ କୌଣସି ଅନ୍ତ ନାହିଁ । ଷୋଳସହସ୍ର ରାଣୀଙ୍କ ସହିତ ଭଗବାନଙ୍କର ହାସ ବିନୋଦ ବିଷୟରେ ବର୍ଣ୍ଣନା କରିବା କ'ଣ କେବେ ସମ୍ଭବ ? ତେବେ ଆପଣ ଯେତେବେଳେ କହୁଛନ୍ତି; ସତ୍ୟଭାମାଙ୍କ ସହିତ ଭଗବାନଙ୍କର ଯେଉଁ ପ୍ରେମମୟ ହାସବିନୋଦ ହୋଇଥିଲା ତାହା ମୁଁ କହି ଏହିଠାରେ ତାହା ସମାପ୍ତ କରିବି ।"

### ଛପ୍ପୟ

ମାନିନ ! ଲଭ୍ୟୋ ମୋଲ ପ୍ରେମ ସେବା କରୁ ମୋହି ।
ନହିଁ ଦେବେ ସଙ୍ଗ ସ୍ୱାମି ! ବଦଲେମେ ତୋହି ॥
ପୌଣ୍ଡ୍ର ଔର ନିଜ ବ୍ୟାହ ସମୟ୍ଯ ଜୋ ଧୀରଜ ଧାରେୟା ।
ତାତେଂ ହ୍ୱୈଂ ବନି ଗୟୋ୍ ସ୍ୱମିନୀ ରନୀ ଉଦ୍ଧାରେ ॥
ପଞ୍ଚ ପତ୍ନୀ ମହଁ ପ୍ରେମକୀ, ବାତ ଭୟୀଂ ଦୋନୋଂ ମିଲେ ।
ପାଇ ପରସ୍ପର ପରସ ତନୁ, ଉଭୟ ହୃଦୟ ସରସିଜ ଖିଲେ ॥



## ଶ୍ରୀକୃଷ୍ଣ ସତ୍ୟଭାମା ସମ୍ବାଦ

ଇତ୍ଥାନ୍ୟା ମାମପି ସ୍ୱଭୁର୍ଗେହେଷୁ ଗୃହବାନିବ ।
ଆସ୍ଥିତୋ ଗୃହମେଧୀୟାନ୍ଧର୍ମାଂ ଲୋକ ଗୁରୁର୍ହରିଃ ॥*

( ଶ୍ରୀ: ଭା: ୧୦ସ୍କ, ୬୦ ଅ: ୧୫ ଶ୍ଳୋକ )

### ଛପ୍ପୟ

ଏସେ ହୀ ଇକ ଦିବସ ସତ୍ୟଭମା ସଁଗ ନଟବର ।
ଖେଲ ଖେଲ ମହଁ କହ୍ୟୋ ପୁଣ୍ୟ ଜାତକ ହରିବାସର ॥
ନାରଦଜୀ ଦେୈ ତୁଲ୍ୟଦାନ ସତ୍ୟଭମା ଆଇଂ ।
ପୁଛେଂ ନିଜ ସୌଭଗ୍ୟ ଭୟେ କସ ଶ୍ୟାମ ଗୁସାଇଂ ॥
ବୋଲେ ହରି—'ଜାତକ ସଦା, ଅଚ୍ଛୁ ବ୍ରତ ହରିବାସର କରେୟା ।
ତା ତେଂ ମମ ଅର୍ଧାଙ୍ଗିନୀ, ପ୍ରିୟା ବନୀଂ ମମ ମନ ହରେୟା ॥

---

* ଅଷ୍ଟ ଅଧିକ ଏକଶତେ । ଷୋଳସହସ୍ର ପତ୍ନୀ ଯେତେ ॥
ତାହାଙ୍କ ପୁରେ ନରହରି । ମାୟାରେ ଭିନ୍ନ ରୂପ ଧରି ॥
ଗୃହସ୍ଥ ଧର୍ମେ କ୍ରୀଡ଼ାକରି । କର୍ମ୍ମେଣ ଆପ୍ତା ନରହରି ।
( ଭାଗବତ . ଜଗନ୍ନାଥ ଦାସ ୧୦ ସ୍କ. ୬୫ ଅ. )

ଶାସ୍ତ୍ରକାରମାନେ କହୁଛନ୍ତି— ବଡ଼ଲୋକଙ୍କ ହସ ବି ନିରର୍ଥକ ହୁଏନାହିଁ ।" ସେଥିରେ ଗୂଢ଼ଜ୍ଞାନ ଛପି ରହିଥାଏ । ହସି ଖୁସିରେ ସେମାନେ ଏପରି କଥା କହନ୍ତି, ଯେଉଁଥିରେ ମନୁଷ୍ୟ ଉଦ୍ଧାର ହୋଇ ଯାଇଥାଏ । ଯେଉଁମାନଙ୍କର କହିବା ବୋଲିବା ବ୍ୟସନ ବା ଯେଉଁମାନେ ବକ୍ତୃତା ଦେଇ ନିଜର ଜୀବିକା ନିର୍ବାହ କରନ୍ତି, ସେମାନେ ଜାଣନ୍ତି ନାହିଁ ଯେ କେଉଁ କେଉଁ ସ୍ଥାନରୁ ଖୋଜି ଖୋଜି ସେହିକଥା ଗୁଡ଼ିକୁ କଣ୍ଠସ୍ଥ କରି ଆଣନ୍ତି ଓ ତାକୁ ଶୁକପକ୍ଷୀ ପରି କହି ଚାଲନ୍ତି । କିନ୍ତୁ ଯେଉଁମାନେ ଉପଦେଶ ଦେବାର ବ୍ୟବସାୟ କରନ୍ତି ନାହିଁ ସେମାନଙ୍କର ପ୍ରତ୍ୟେକ ଚେଷ୍ଟାରେ ଉପଦେଶ ସନ୍ନିହିତ ରହିଥାଏ । ସେମାନଙ୍କ ଚାଲିଚଳନ, ବସାଉଠା, ହସଖେଳ ସବୁକିଛି ଉପଦେଶମୟ । ଏଥିପାଇଁ ସର୍ବଦା ନିଜଠାରୁ ବଡ଼ଙ୍କର ସେବା କରିବା ଉଚିତ୍ । ବଡ଼ଙ୍କର ଜୀବନ ମୂର୍ତ୍ତିମାନ ସାକାର ଉପଦେଶ ସ୍ୱରୂପ ।

ସୂତ କହିଲେ—"ମୁନିଗଣ ! ଭଗବାନ ଗୃହସ୍ଥ ଧର୍ମ ପାଳନ କରି ଷୋଳ ସହସ୍ର ଏକଶହ ଆଠ ରାଣୀଙ୍କ ଘରେ ପୃଥକ୍ ପୃଥକ୍ ରୂପରେ ରହି ସେମାନଙ୍କ ସହିତ ହାସବିନୋଦ କରୁଥିଲେ । ପତ୍ନୀଙ୍କ ପାଇଁ ଏହା ସର୍ବୋତ୍କୃଷ୍ଟ ସୁଖ ଯେ, ତାଙ୍କ ପତି ତାଙ୍କୁ ହସି ହସି କଥା କହୁଛନ୍ତି ଓ ସମୟ ସମୟରେ ହାସବିନୋଦ କରୁଛନ୍ତି । ଯେଉଁ ପତି ସର୍ବଦା ହାତରେ ଠେଙ୍ଗା ଧରି ପତ୍ନୀଙ୍କର ଗୁରୁ ବୋଲାନ୍ତି, ସେମାନଙ୍କୁ ତାଗିଦ କରି ଉପଦେଶ ଦିଅନ୍ତି, ଏହାଦ୍ୱାରା ଗୃହରେ ଏକ ଭୟର ଆବରଣ ଲାଗିରହି ହୋଇ ରହିଥାଏ । ଯେଉଁଠି ପତିପତ୍ନୀ ହୃଦୟ ଖୋଲି କଥାବାର୍ତ୍ତା ହୁଅନ୍ତି ନାହିଁ, ପରସ୍ପର ମଧ୍ୟରେ କରୁଣ ହୃଦୟରେ ନର୍ମ୍ମୋକ୍ତି ହାସ୍ୟ ବିନୋଦ ହୁଅନ୍ତି ନାହିଁ, ପରସ୍ପର ମଧ୍ୟରେ ହସଖୁସିରେ ଜଣେ ଅନ୍ୟ ଜଣକୁ ଆକୃଷ୍ଟ କରି ପାରନ୍ତି ନାହିଁ, ସେମାନଙ୍କର ଦାମ୍ପତ୍ୟ ଜୀବନ ନୀରସ ହୋଇଯାଏ । ଆମ ଶ୍ୟାମସୁନ୍ଦର ଅତ୍ୟନ୍ତ କୌତୁକ ପ୍ରିୟ ଅଟନ୍ତି । ତାଙ୍କ ମୁଖମଣ୍ଡଳରେ ସର୍ବଦା ହାସ୍ୟର ଛଟା । ଶୟନ କାଳରେ ମଧ୍ୟ ତାଙ୍କୁ ଲକ୍ଷ୍ୟ କଲେ ଦେଖାଯାଏ ସତେ ଯେପରି ସେ ହସୁଛନ୍ତି । କଥା କହିଲାବେଳେ ତାଙ୍କର ହସ ହସ ମୁହଁ ଆହୁରି ଅଧିକ ସୁନ୍ଦର ଦେଖାଯାଏ । ପ୍ରସାଦ ପାଇବା ବେଳେ ସେ ହସି ହସି ତାହା ଗ୍ରହଣ କରନ୍ତି । ସେ ନିତ୍ୟ ପ୍ରସନ୍ନ । ଖାଇବା ସମୟରେ ମଧ୍ୟ ଓଠରେ ତାଙ୍କର ହାସ୍ୟ ଛପି ରହିଥାଏ । ଏଥିପାଇଁ ସେ ଷୋଳ ସହସ୍ର ରାଣୀଙ୍କର ହୃଦୟେଶ୍ୱର ହୋଇ ରହି ଆସନ୍ତି । ରାଣୀମାନେ ତାଙ୍କ ସହିତ କଥାବାର୍ତ୍ତା ହେବାପାଇଁ ସର୍ବଦା ଲାଳାୟିତ । ସେମାନେ ଏପରି ରୋଚକ କଥାମାନ କହନ୍ତି ଯେ, ଯେଉଁଥିରେ ହୃଦୟ ପ୍ରଫୁଲ୍ଲିତ ହୋଇ ଉଠେ । ସତ୍ୟଭାମା ଥିଲେ ଅତ୍ୟନ୍ତ ମାନିନୀ । ଏଥିପାଇଁ ଭଗବାନ ତାଙ୍କ ସହିତ ବହୁତ ଗୁଳୁଗୁଳିଆ କଥାବାର୍ତ୍ତା କରନ୍ତି । ତାଙ୍କ ସହିତ କଥାବାର୍ତ୍ତା ହେବାରେ, ତାଙ୍କ ମନ ନେବାରେ ଭଗବାନ ବଡ଼ ଆନନ୍ଦ ପାଆନ୍ତି । ତଥାପି ନ ଏଡ଼ି କଳ୍ପବୃକ୍ଷର ଫୁଲ ପାଇଁ ରୁଷ୍ଟ ହୋଇଥିବା ବେଳେ ଭଗବାନ ତାଙ୍କ ପାଇଁ ସ୍ୱର୍ଗରୁ କଳ୍ପବୃକ୍ଷ ଉପାଡ଼ି ଆଣିଥିଲେ ଓ ତାଙ୍କ ଅଗଣାରେ ଲଗାଇ ତାହା

ରୋପଣ କରାଇଥିଲେ । ତାହାର ସୁଗନ୍ଧରେ ସମସ୍ତ ଦ୍ୱାରକାପୁରୀ ସୁଗନ୍ଧିତ ହେଉଥିଲା । ସମସ୍ତ ରାଣୀଙ୍କର ବିଶ୍ୱାସ ହୋଇଗଲା, ଭଗବାନ ସତ୍ୟଭାମାଙ୍କୁ ସବୁଠାରୁ ଅଧିକ ଆଦର କରନ୍ତି । ସତ୍ୟଭାମାଙ୍କର ମଧ୍ୟ ନିଜର ସୌଭାଗ୍ୟ ପାଇଁ ଗର୍ବ ହୋଇଥିଲା ଯେ, ଦେଖ, ଭଗବାନ ମୋତେ ପ୍ରସନ୍ନ କରାଇବା ପାଇଁ ଦେବତାମାନଙ୍କ ସହିତ ଯୁଦ୍ଧ କରି ଓ ସେମାନଙ୍କୁ ପରାସ୍ତ କରି ସ୍ୱର୍ଗରୁ କଳ୍ପବୃକ୍ଷ ନେଇ ଆସିଲେ ଓ ତାହା ମୋର ଅଗଣାରେ ହିଁ ରୋପିତ କରାଇଲେ ।

ଯେପରି ମିଠା ପାଖରେ ପିମ୍ପୁଡ଼ି ଯାଇ ପହଞ୍ଚି ଯାଆନ୍ତି, ଫୁଲର ଆଖ-ପାଖରେ ଭଅଁର ଉଡ଼ି ବୁଲନ୍ତି, ସେହିପରି ଦ୍ୱାରକା ନିକଟରେ ନାରଦ ଯାଇ ଭ୍ରମଣ କରୁଥିଲେ । ସେ ଏଣେ ତେଣେ ବୁଲି ଯାଇ ଦ୍ୱାରକା ନଗରରେ ପହଞ୍ଚିଲେ । ସେ ଏହିପରି ସର୍ବଦା ଯିବା ଆସିବା କରନ୍ତି । ଦିନେ ସେ ସେଠାକୁ ଆସି ସିଧା ସିଧା ସତ୍ୟଭାମାଙ୍କ ପୁରରେ ଯାଇ ପହଞ୍ଚିଗଲେ । ଭଗବାନ ସେହି ସମୟରେ ରାଜସଭାରେ ଉପସ୍ଥିତ ଥିଲେ । ସତ୍ୟଭାମା ନାରଦଙ୍କର ଆଦର ସତ୍କାର କଲେ ଓ ତାଙ୍କୁ ସୁବର୍ଣ୍ଣ ସିଂହାସନରେ ବସାଇଲେ । ବିଧିବତ୍ ପୂଜାକରି ସତ୍ୟଭାମା ତାଙ୍କୁ କହିଲେ—"ବ୍ରହ୍ମନ୍ ! ଆପଣ କୃପାକରି ଦର୍ଶନ ଦେଲେ, ଆପଣଙ୍କ ଦର୍ଶନ ପ୍ରାଣୀମାନଙ୍କୁ ପ୍ରସନ୍ନତା ପ୍ରଦାନ କରେ । କିନ୍ତୁ ହେ ଭଗବାନ ! ମୋ ପାଇଁ ତ ଆପଣ ସ୍ୱୟଂ ସାକ୍ଷାତ୍ ମଙ୍ଗଳ ସ୍ୱରୂପ । ଆପଣଙ୍କ କୃପାରୁ ହିଁ ମୋ ଘର ଅଗଣାରେ କଳ୍ପବୃକ୍ଷ ରୋପଣ କରାଗଲା, ଯାହାର ଦର୍ଶନ କି ମର୍ତ୍ତ୍ୟଲୋକର ପ୍ରାଣୀମାନଙ୍କ ପକ୍ଷେ ଦୁର୍ଲଭ । ମୋଠାରୁ ବଳି ସୌଭାଗ୍ୟବତୀ ଆଉ କେହି ନଥିବେ, କାରଣ ମୋ ପତି ସ୍ୱୟଂ ସାକ୍ଷାତ୍ ଜଗଦୀଶ୍ୱର । ମର୍ତ୍ତ୍ୟଲୋକରେ ରହିଥିଲେ ମଧ୍ୟ ମୋ ଘର ଆଗରେ କଳ୍ପବୃକ୍ଷ ରହିଛି ଓ ସବୁଠାରୁ ବଡ଼ କଥା ଏହି ଯେ ଆପଣଙ୍କ ପରି ସନ୍ଥ ମହାତ୍ମା ମୋ ଉପରେ ଏତେ ଅନୁଗ୍ରହ କରନ୍ତି । ହେ ବ୍ରହ୍ମନ୍ ! ମୁଁ ଆପଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିବାକୁ ଚାହୁଁଛି, ଆଜ୍ଞା ହେଲେ ପଚାରିବି ।"

ନାରଦ କହିଲେ—"ହଁ, ମହାରାଣୀ ! ପଚାରନ୍ତୁ, ଆପଣ ଯାହା ପଚାରିବେ ମୁଁ ତାହାର ଉତ୍ତର ଦେବି ।"

ସତ୍ୟଭାମା ପଚାରିଲେ—"ବ୍ରାହ୍ମଣ ! ମୁଁ ଏହା ପଚାରିବାକୁ ଚାହେଁ ଯେ, ପୂର୍ବଜନ୍ମରେ ମୁଁ ଏପରି କେଉଁ ସୁକୃତ କରିଥିଲି ଯେ, ମୋତେ ଜଗଦୀଶ୍ୱର ପତିରୂପେ ମିଳିଲେ ଓ ଏବେ ଏପରି କେଉଁ କର୍ମ କରିବି ଯାହା କରିବା ଦ୍ୱାରା ଜନ୍ମଜନ୍ମାନ୍ତରରେ ମୋତେ ସେହି ହିଁ ପତିରୂପେ ମିଳିବେ ?

ଏହା ଶୁଣି ନାରଦ କହିଲେ—"ପୂର୍ବଜନ୍ମରେ ଆପଣ ତୁଳାପୁରୁଷ ଦାନ କରିଥିଲେ, ତାହାରି ଫଳ ସ୍ୱରୂପ ଆପଣଙ୍କୁ ଏହି ପୁରାଣପୁରୁଷ ପ୍ରଭୁ ପତିରୂପେ

ମିଳିଲେ । ଆପଣ ଏବେ ଯଦି ଏହି ପ୍ରଭୁଙ୍କୁ ତଉଲି ଏହାଙ୍କ ଓଜନର ଧନରତ୍ନ ଦାନ କରନ୍ତି, ତାହାହେଲେ ଆପଣଙ୍କୁ ସବୁ ଜନ୍ମରେ ସେହି ହିଁ ପତି ରୂପେ ମିଳୁଥିବେ । ଆପଣ ତାଙ୍କଠାରୁ କେବେହେଲେ ପୃଥକ ହୋଇପାରିବେ ନାହିଁ ।"

ଏହା ଶୁଣି ଅତ୍ୟନ୍ତ ପ୍ରସନ୍ନ ହୋଇ ସତ୍ୟଭାମା କହିଲେ—"ହେ ନାରଦ ! ଆପଣ ତ ଅତି ଉତ୍ତମ କଥା କହୁଛନ୍ତି । ମୋ ଘରେ ଧନରତ୍ନର ଅଭାବ ନାହିଁ । ମୁଁ ଆଜି ହିଁ ତୁଳାଦାନ କରିବି । କିନ୍ତୁ ଏହା ଏକ କଠିନ କଥା । ଅପାତ୍ରରେ ଦାନ ଦେଲେ ତାହା କେବଳ ଯେ ନିଷ୍ଫଳ ହୁଏ ତାହା ନୁହେଁ, ବରଂ ଦେବା ଲୋକଙ୍କୁ ବି ଦୋଷ ଲାଗେ । ପର ଜନ୍ମରେ ସେ ଧନହୀନ ହୋଇଯାଏ । ପାପ କରିବା ଦ୍ୱାରା ସେ ବାରମ୍ବାର ଦରିଦ୍ର ହୁଏ । ପୁନଃ ପୁନଃ ସେ ପାପ କରେ । ତେଣୁ ଦାନ ପାଇଁ ସତ୍ପାତ୍ରର ଅତ୍ୟନ୍ତ ଆବଶ୍ୟକ । ସୌଭାଗ୍ୟ ବଶତଃ ଆପଣ ଆଜି ପଦାର୍ପଣ କରିଛନ୍ତି । ଆପଣଙ୍କଠାରୁ ବଳି ସତ୍ପାତ୍ର ଆଉ କେଉଁଠାରେ ମିଳିବେ ? କୃପାକରି ଆପଣ ଯଦି ମୋର ତୁଳାଦାନ ଗ୍ରହଣ କରନ୍ତି, ତାହାହେଲେ ମୋର ମନୋକାମନା ପୂର୍ଣ୍ଣ ହୋଇ ଯାଆନ୍ତା ।"

ନାରଦ କହିଲେ—"ମହାରାଣୀ ! ମୁଁ ତ କେବେ କେଉଁଠାରୁ ଦାନଦକ୍ଷିଣା ନିଏ ନାହିଁ । କିନ୍ତୁ ତୁମେ ତାହା ମାନିବ ନାହିଁ । ତୁମର ଯେତେବେଳେ ଅତ୍ୟନ୍ତ ଆଗ୍ରହ, ମୁଁ ନେବି । ସାଧୁମାନଙ୍କ ଶରୀର ତ ପରୋପକାର ନିମିତ୍ତ । ତେବେ ଠିକ୍ ଅଛି, ଆୟୋଜନ କର ।"

ଏହା ଶୁଣି ସତ୍ୟଭାମା ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ଏହି ତୁଳାଦାନ ଉତ୍ସବର ଆୟୋଜନ କଲେ । ଘର ସୁସଜ୍ଜିତ କରି ନାନାଦି ବାଦ୍ୟର ବ୍ୟବସ୍ଥା କଲେ । ଏହି ସମୟରେ ଭଗବାନ ସେଠାରେ ଆସି ଉପସ୍ଥିତ ହେଲେ । ସେ ଅସି ଆଶ୍ଚର୍ଯ୍ୟ ହୋଇ ପଚାରିଲେ—'ଆଜି ଏ କି ଉତ୍ସବର ଆୟୋଜନ ହେଉଛି ? ଏତେ ଆଡ଼ମ୍ବର ସହକାରେ ସାଜସଜା ହେବାର କାରଣ କ'ଣ ?'

ସତ୍ୟଭାମା କହିଲେ—"ମହାରାଜ ! ଆଜି ମୁଁ କିଛି ଦାନଧର୍ମ କରିବାକୁ ବସିଛି ।"

ଭଗବାନ ପଚାରିଲେ—"ଆଜି ତ କୌଣସି ପର୍ବପର୍ବାଣୀ ନୁହେଁ, ଦାନଧର୍ମ କିପରି କରିବ ?" ଏହି ସମୟରେ ଲମ୍ବା ତିଳକ ଲଗାଇ, ବୀଣାର ତାରକୁ ଟାଣି ଟାଣି ନାରଦ ସେଠାରେ ଉପସ୍ଥିତ ହେଲେ । ଭଗବାନ ହସି ହସି କହିଲେ—ଅହୋ!, ନାରଦ ଆସିଲେଣି, ଆଜି କି ଉତ୍ସବ ହେବ ବୋଲି ମୁଁ ଚିନ୍ତା କରୁଥିଲି ! ବୈଦ୍ୟ ଯେଉଁଠି ଯାଇ ପହଞ୍ଚନ୍ତି, ସେଠାରେ ରୋଗୀ ନଥିଲେ ବି ଭଲଲୋକ ରୋଗୀ ହୋଇଯାଆନ୍ତି । ଚେରମୂଳି, ଜଡ଼ିବୁଟୀ ବିକାଳିବାଲା ନିଏ ସେଠାରେ ଉପସ୍ଥିତ ହୁଅନ୍ତି । ସ୍ତ୍ରୀ ଲୋକମାନଙ୍କ ସେ ବସ୍ତ୍ର

ଆବଶ୍ୟକ ନଥିଲେ ମଧ୍ୟ ସେମାନେ ତାହା କିଣି ଥାଆନ୍ତି । ଦହିବରା, ରସଗୋଲା ଓ ଅନ୍ୟାନ୍ୟ ମିଠା ଜିନିଷ ବିକ୍ରୀ ଆସିଲେ ଭୋକ ନଥିଲେ ବି ଭୋକ ଲାଗେ । ସେହିପରି ବ୍ରାହ୍ମଣଙ୍କ ଆଗମନରେ ଉତ୍ସବ ପର୍ବ ଦିନ ନ ହୋଇଥିଲେ ମଧ୍ୟ ମନୁଷ୍ୟର ଧର୍ମକର୍ମ ଦାନ ଦକ୍ଷିଣାରେ ମନ ବଳେ ।"

ନାରଦ ହସି ହସି କହିଲେ—"ମହାରାଜ ! ଆପଣଙ୍କ ଘରୁ ଯଦି ମୁଁ ଶଳ୍ପହସ୍ତରେ ଫେରିଯିବି, ତେବେ ସଂସାରରେ ମୋତେ କେହି ପଚାରିବେ ନାହିଁ । ଆମପାଇଁ ଲୋକେ ଛତ୍ର, ଲୁଣ ଆଦି ଯୋଗାଡ଼ କରି ସର୍ବଦା ଘରେ ସାଇତି ରଖିଥାଆନ୍ତି । ଆମ ପରି ଲୋକ ସର୍ବଦା ଆପଣଙ୍କୁ ଆଶ୍ରା କରି ନିଶ୍ଚିନ୍ତରେ ଏଣେତେଣେ ବୁଲୁଥାନ୍ତି । ଆପଣଙ୍କ ନାମ 'ବ୍ରହ୍ମଣ୍ୟଦେବ' ନା ? ଆପଣ ଗୋ-ବ୍ରାହ୍ମଣଙ୍କ ହିତ ନିମିତ୍ତ ହିଁ ଅବତୀର୍ଣ୍ଣ ହୋଇଅଛନ୍ତି ।"

ଏହା ଶୁଣି ଭଗବାନ ହସି ହସି କହିଲେ—"ନାରଦ ! ମୁଁ ଆପଣଙ୍କ କାର୍ଯ୍ୟରେ ବାଧା ଦେବାକୁ ଚାହେଁ ନାହିଁ । ଆପଣ ଆପଣଙ୍କ ଯଜମାନମାନଙ୍କୁ ଫୁସୁଲାଇ ଯାହା ଇଚ୍ଛା ତାହା କରନ୍ତୁ ।" ଏହା କହି ଭଗବାନ ନିଜ ବୈଠକଖାନାକୁ ଯାଇ ବସିଲେ । ସବୁକିଛି ଆୟୋଜନ କରି ସତ୍ୟଭାମା ଆସି କୃଷ୍ଣଙ୍କୁ କହିଲେ—ମହାରାଜ ! ଆପଣଙ୍କୁ ମୁଁ ସ୍ନାନ କରାଇ ଦେବି ।"

ଭଗବାନ କହିଲେ—"ତୁମେ ଦାନ ଦେବ ନାରଦଙ୍କୁ, ମୋତେ କାହିଁକି ସ୍ନାନ କରାଇବ ? ଦାନ କଲା ଲୋକ ତୁମେ, ଦାନ ନେବା ଲୋକ ନାରଦ, ମୋତେ କାହିଁକି ପୁଣି ଏଥିରେ ମଝିରେ ସ୍ନାନ କରାଇ ଶୀତରେ ଠକ ଠକ କରାଇବ ?"

ସତ୍ୟଭାମା କହିଲେ—"ସ୍ତ୍ରୀ ପୁରୁଷ ଉଭୟେ ନ ରହିଲେ ଦାନ ପୁଣ୍ୟ ହୁଏ ନାହିଁ ।"

ଭଗବାନ ହସିହସି କହିଲେ—"ନାରଦ କ'ଣ ସ୍ତ୍ରୀ ଲୋକ ? ସେ ତ ପୁରୁଷ ।"

ସତ୍ୟଭାମା ଚିଡ଼ିଯାଇ କହିଲେ—"ଆପଣ ସବୁବେଳେ ହସି ହସି ମୋ କଥା ଉଡ଼ାଇ ଦେଉଛନ୍ତି । ଯାଆନ୍ତୁ ଏଠୁ, ଅତି ହସ ବିନୋଦ ହେବା ଭଲ ନୁହେଁ ।"

ଭଗବାନ ହସି ହସି ସେଠାରୁ ଉଠିଗଲେ । ସତ୍ୟଭାମା ତାଙ୍କୁ ସ୍ନାନାଦି କରାଇ ଦେଇ ଏକ ସୁନ୍ଦର ଆସନ ଉପରେ ବସାଇଲେ ଓ ବିଧିବତ୍ ତାଙ୍କର ପୂଜାର୍ଚ୍ଚନା କଲେ । ଏହାପରେ ସେ ତାଙ୍କୁ କାନ୍ଥଡରେ ବସିବା ପାଇଁ ଅନୁରୋଧ କଲେ । ଭଗବାନ କହିଲେ—"ମୁଁ କାନ୍ଥଡରେ କାହିଁକି ବସିବି ? ଯେପରି ଓଜନ କରାଯାଉଥିବା ବସ୍ତୁକୁ

ନେଇ ନିକିତିରେ ଓଜନକାରୀ ରଖେ, ସେହିପରି ତୁମେ ମୋତେ ନେଇ ନିକିତିରେ କାହିଁକି ରଖିବ ?"

ସତ୍ୟଭାମା କହିଲେ—"ଆପଣଙ୍କୁ କିଏ କେବେ ଉଠାଇ ପାରିବ ? ଆପଣ ଏତେ ଭାରି ଯେ, ଆପଣଙ୍କୁ ଉଠାଇବା ତ ଦୂରର କଥା, ଏହା କେହି କଳ୍ପନା ମଧ୍ୟ କରିପାରିବେ ନାହିଁ।"

ଭଗବାନ କହିଲେ—"ତାହାହେଲେ ତୁମ ପିତା ଯେତେବେଳେ ମଣିଚୋରର ଅପବାଦ ମୋ ମୁଣ୍ଡରେ ଲଦି ଦେଇଥିଲେ, ତାଙ୍କ କଳ୍ପନାରେ ତ ମୁଁ ଧନଲୋଭୀ ହୋଇଯାଇଥିଲି।"

ସତ୍ୟଭାମା ଚିଡ଼ିଯାଇ କହିଲେ—"ଆପଣ ସବୁବେଳେ ସେହି ପୁରୁଣାକଥାକୁ ଖାଲି ଉଘୋଉଛନ୍ତି। ମୋ ପିତା ଯାହା କିଛି କରିଥିଲେ, ସେ ଭୁଲ୍ ବଶତଃ କରିଥିଲେ। ମନୁଷ୍ୟ ମାତ୍ରେ ହିଁ ଭୁଲ କରିଥାଆନ୍ତି।"

ଭଗବାନ କହିଲେ—"ମୁଁ ତ ତାହା ଭୁଲ ବୋଲି କହୁନାହିଁ, ସେ ତ ଠିକ୍ କରିଛନ୍ତି। ଯଦି ସେ ଏ ପ୍ରକାର କଳଙ୍କ ଲଗାଇ ନଥାନ୍ତେ, ତାହାହେଲେ ତୁମର ମୋର ମିଳନ ହୋଇ ଥାଆନ୍ତା କିପରି ? ତୁମେ ତ କୃତବର୍ମାର ପତ୍ନୀ ଅଥବା ପ୍ରସେନର ପତ୍ନୀ ହୋଇ ଥାଆନ୍ତ, କିମ୍ବା ଅନ୍ୟ ଲୋକର ପୁନଶ୍ଚ ଦର୍ଶନ ତୁମପକ୍ଷେ ଦୁର୍ଲ୍ଲଭ ହୋଇ-ଥାଆନ୍ତା। ମୋତେ ଦେଖି ତୁମେ ଓଢ଼ଣା ଟାଣୁ ଥାଆନ୍ତ।"

ସତ୍ୟଭାମା ବିରକ୍ତି ପ୍ରକାଶ କରି କହିଲେ—"ଆପଣ ତ ସବୁବେଳେ ଏଣୁତେଣୁ କଥା କହି ବୁଲୁଛନ୍ତି। ବୁଲନ୍ତୁ ଶୀଘ୍ର, ମୋର ଡେରି ହୋଇଯାଉଛି। ମୁଁ ଆପଣଙ୍କୁ ହାତଯୋଡ଼ି କହୁଛି, ନାରଦଙ୍କର ସମସ୍ତ ଅଯଥା ନଷ୍ଟ କରନ୍ତୁ ନାହିଁ।"

ଭଗବାନ୍ ହସି ହସି କହିଲେ—"ନାରଦଙ୍କର ଯଦି ବିଳମ୍ବ ହୋଇଯାଉଛି, ତାହାହେଲେ ସେ ନିଜେ ହିଁ ମୋତେ ଉଠାଇ ନିକିତିରେ ବସାନ୍ତୁ। ତାଙ୍କର ତ ଏଥିରେ ସ୍ୱାର୍ଥ ଅଛି। ତୁମେ ଦାନକାରିଣୀ, ସେ ଗ୍ରହଣକାରୀ। ମୁଁ ତ କେବଳ ତଉଲ ହେବା ବସ୍ତୁକର। ତୁମକୁ ପୁଣ୍ୟ ମିଳିବ, ନାରଦଙ୍କୁ ଧନ ମିଳିବ। ମୋତେ କ'ଣ ମିଳିବ ?"

ନାରଦ କହିଲେ—"ମହାରାଜ ! ସତ୍ୟଭାମା ବୁଝିଲେ ଆପଣଙ୍କୁ ଉଠାଇ ପାରନ୍ତି। ମୋର ତ ସେପରି ସାମର୍ଥ୍ୟ ଆଦୌ ନାହିଁ। ମୁଁ ତ କୌଣସି ବସ୍ତୁ ଉଠାଇବାକୁ ବା ଧରିବାକୁ ଆସି ନାହିଁ। ମୋତେ କିଛି ଦାନ ଦକ୍ଷିଣା ମିଳିଯିବ, ତେବେ ମୁଁ ତାହା ନେଇ ଯିବାକୁ ପ୍ରସ୍ତୁତ ଅଛି, ନ ହେଲେ ଜୟ ଜୟ ସୀତାରାମ, ଯେମିତି ମୋ ବୀଣାକୁ ବଜାଇ ବଜାଇ ଫେରିଯିବି।"

ସତ୍ୟଭାମା କହିଲେ—"ହେ ମହାରାଜ ! ଏବେ ଦେଖନ୍ତୁ କିପରି ତାମସା ହୋଇଗଲା । ତୁଳନ୍ତୁ କିଛି ତଳେ ହୋଇଯାଉଛି ।"

ଏହା ଶୁଣି ଭଗବାନ୍ ହସି ହସି ତରାଜୁର ଗୋଟିଏ ପଲାରେ ଯାଇ ବସି-ପଡ଼ିଲେ । ତରାଜୁର ଅନ୍ୟ ପଲାଟି ଉପରକୁ ଉଠିଗଲା ଓ ଭଗବାନ ଯେଉଁଥିରେ ବସିଥିଲେ ତାହା ଭୂମିକୁ ସ୍ପର୍ଶ କଲା । ସତ୍ୟଭାମା ଅନ୍ୟ ପଲାରେ ସୁବର୍ଣ୍ଣ, ରତ୍ନ, ମଣି, ମାଣିକ୍ୟ ଆଦି ଆଣି ରଖିବାକୁ ଲାଗିଲେ । କିନ୍ତୁ ଭଗବାନ୍ ଯେଉଁ ପଲାରେ ବସିଥିଲେ ତାହା ତଳେହେଲେ ଉପରକୁ ଉଠିଲା ନାହିଁ । ଏବେ ସତ୍ୟଭାମା ବଡ଼ ଚିନ୍ତାରେ ପଡ଼ିଗଲେ, ସେ ନିଜ ଅଙ୍ଗରେ ପିନ୍ଧିଥିବା ସମସ୍ତ ଅଳଙ୍କାର ଗୋଟି ଗୋଟି କରି ଓହ୍ଲାଇ ସେହି ପଲାରେ ରଖିଲେ, କିନ୍ତୁ ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା । ତାଙ୍କ ଘରେ ଆଉ ସ୍ୱର୍ଣ୍ଣ, ମଣି, ମାଣିକ୍ୟ ନଥିଲା । ଏବେ ସେ ଅତ୍ୟନ୍ତ ଦୁଃଖିତ ହେଲେ । ଭଗବାନ ଏହା ଦେଖି ହସୁଥିଲେ ଓ କହୁଥିଲେ—"ରାଣୀଙ୍କର ଅକଲ ଗୁଡ଼ୁମ ହୋଇଗଲା ।" ଏଥିରେ ସେ ଆହୁରି ଲଜ୍ଜିତ ହେଲେ ! ସେ ପୁନଶ୍ଚ ଚିନ୍ତା କଲେ—"ଏ କଳ୍ପବୃକ୍ଷ ତ ମୋର, ଏହାକୁ କାହିଁକି ମୁଁ ଉପାଡ଼ି ଅନ୍ୟ ପଲାରେ ରଖି ନ ଦେବି ?" ଏହା ଚିନ୍ତାକରି ସେ କଳ୍ପବୃକ୍ଷ ସମୀପକୁ ଗଲେ ଓ ତାଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ସେତେବେଳେ ନାରଦ ଆସି ତାଙ୍କୁ ଚୁପ୍ କରି କହିଲେ—"ମହାରାଣି ! ଆପଣ ଏପରି ଲକ୍ଷେ କଳ୍ପବୃକ୍ଷ ଉପାଡ଼ି ପଲାରେ ରଖିଲେ ମଧ୍ୟ ଅନ୍ୟ ପଲା ତଳେ ହେଲେ ଉପରକୁ ଉଠିବ ନାହିଁ । ଯାହାଙ୍କ ଉଦରରେ ଅଗଣିତ ବ୍ରହ୍ମାଣ୍ଡ, ତାଙ୍କର ସମତା କେଉଁ ବସ୍ତୁ ଅବା ହୋଇ ପାରିବ ? କୌଣସି ଭକ୍ତ କେବଳ ଏହାଙ୍କୁ ବଶ କରିପାରେ । ଆପଣ ଯଦି କହିବେ, ତାହାହେଲେ ମୁଁ ଏକ ଉପାୟ ବତାଇ ଦେବି । ସଙ୍ଗେ ସଙ୍ଗେ ପଲା ଉଠିଯିବ ।"

ସତ୍ୟଭାମା କହିଲେ—"ହାୟ ! ନାରଦ ! ଆପଣ ଏ ପର୍ଯ୍ୟନ୍ତ କାହିଁକି ସେ ଉପାୟ ବତାଇ ନାହାନ୍ତି ? ଶୀଘ୍ର ବତାନ୍ତୁ ଓ ମୋର ସଙ୍କଟ ଦୂର କରନ୍ତୁ ।"

ନାରଦ କହିଲେ—"ଆପଣ ଗୋଟିଏ କାମ କରନ୍ତୁ, ଗୋଟିଏ ତୁଳସୀପତ୍ର ଏହି ପଲାରେ ନେଇ ରଖି ଦିଅନ୍ତୁ, ଦେଖିବେ ପଲା କିପରି ସଙ୍ଗେ ସଙ୍ଗେ ଉଠିଯିବ । ଏହା କଲେ ଭଗବାନ ବସିଥିବା ପଲା ସଙ୍ଗେ ସଙ୍ଗେ ଉପରକୁ ଉଠିଯିବ ଓ ତୁଳସୀପତ୍ର ଥିବା ପଲା ତଳକୁ ଦବିଯାଇ ଭୂମିରେ ଲାଗିଯିବ । ତୁଳସୀ ଭଗବାନଙ୍କୁ ନିଜର ବଶ କରି ନେଇଛନ୍ତି । ଆପଣ ଛପନ ପ୍ରକାର ବ୍ୟଞ୍ଜନ ପ୍ରସ୍ତୁତ କରନ୍ତୁ ପଛକେ ତା ଉପରେ ତୁଳସୀ ମଞ୍ଜରୀ ସହିତ ପତ୍ର ନ ପକାଇବା ପର୍ଯ୍ୟନ୍ତ ଭଗବାନ ତାହା କେବେ ହେଲେ ଗ୍ରହଣ କରନ୍ତି ନାହିଁ ।

ଏହା ଶୁଣିବା ମାତ୍ରେ ସତ୍ୟଭାମାଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ଗୋଟିଏ ତୁଳସୀପତ୍ର ଆଣି ଅନ୍ୟ ପଲାରେ ପକାଇଲେ । ଧୀରେ ଧୀରେ ଭଗବାନ ଶ୍ରୀକୃଷ୍ଣ

ବସିଥିବା ପଲ୍ଲଟି ଉପରକୁ ଉଠିଗଲା ଓ ତୁଳସୀପତ୍ର ରଖାଯାଇଥିବା ପଲ୍ଲଟି ତଳେ ଲାଗିଗଲା । ସେତେବେଳେ ସତ୍ୟଭାମା ନିଶ୍ଚିତ ହେଲେ ଯେ, ମୁଁ ନିଜକୁ ଭଗବାନଙ୍କ ପ୍ରିୟା ବୋଲି ଯାହା ଭାବୁଥିଲି, ତାହା ମୋର ମିଥ୍ୟାଭିମାନ । ଯଥାର୍ଥରେ ତୁଳସୀ ହିଁ ହରିଙ୍କର ପ୍ରିୟା ।

ଏହା ଦେଖି ଭଗବାନ ହସି ହସି କହିଲେ—"ଯଜମାନିନୀ ଓ ପୁରୋହିତ ଉଭୟେ ମିଳି ମୋତେ ହରାଇ ଦେଲେ ।"

ନାରଦ କହିଲେ—"ଭଗବାନ୍ ! ଆପଣ ତ ଅପରାଜିତ । ଆପଣ ତ କାହାର ଦ୍ୱାରା ପରାଜିତ ନୁହଁନ୍ତି । କିନ୍ତୁ ଅନନ୍ୟାଶ୍ରିତ ଭକ୍ତଙ୍କ ନିକଟରେ ହିଁ ଆପଣ ହାରମାନି ଯାଆନ୍ତି । ଏହା ତ ଆପଣଙ୍କର ସହଜ ସନାତନ ସ୍ୱଭାବ ।" ଏହା କହି ନାରଦ ସଙ୍ଗେ ଅନ୍ୟ ପଲ୍ଲରୁ ନିଜର ଧନଦୌଲତ ଆଣି ପୁଟୁଳି ବାନ୍ଧି କାଖରେ ଜାକି ବ୍ରହ୍ମଲୋକ ଅଭିମୁଖେ ଯାଆନ୍ତି ଭଲେ । ସେ ଆଉ ମୁହୂର୍ତ୍ତେ ହେଲେ ସେଠାରେ ରହିଲେ ନାହିଁ । ବ୍ରାହ୍ମଣଙ୍କୁ ଦାନ ଦକ୍ଷିଣା ମିଳିଯିବା ପରେ ସେ ଆଉ ଅଧିକ ସମୟ ରହିବା ଉଚିତ ନୁହେଁ ।

ନାରଦ ଚାଲିଯିବାରୁ ସତ୍ୟଭାମା ଭଗବାନଙ୍କ ଚରଣ କମଳରେ ପ୍ରଣାମ କରି ଅନୁରାଗଭରା ଦୃଷ୍ଟିରେ ତାଙ୍କ ମୁହଁକୁ ଚାହିଁଲେ । ଭଗବାନ ମଧ୍ୟ ତାଙ୍କୁ ଅତି ସ୍ନେହରେ ଚାହିଁ ହସି ହସି କହିଲେ—"କ'ଣ ଚିନ୍ତା କରୁଛ ପ୍ରିୟେ ?"

ପ୍ରେମାଶ୍ରୁ ପୋଛୁ ପୋଛୁ ସତ୍ୟଭାମା କହିଲେ—"ପ୍ରଭୋ ! ମୁଁ ଚିନ୍ତା କରୁଛି ପୂର୍ବ ଜନ୍ମରେ ମୁଁ ଏମନ୍ତ କୌଣସି ପୁଣ୍ୟ କରିଥିଲି ଯାହାର ଫଳ ସ୍ୱରୂପ ମୋତେ ସ୍ୱୟଂ ପରମେଶ୍ୱର ପତିରୂପେ ମିଳିଲେ । ନାଥ ! ମୋତେ କୁହନ୍ତୁ ତ ମୁଁ ପୂର୍ବଜନ୍ମରେ କିଏ ଥିଲି ଓ କେଉଁ ମହାନ ପୁଣ୍ୟକର୍ମ କରିଥିଲି ଯେ, ଏ ଜନ୍ମରେ ମୁଁ ଏତେ ସୌଭାଗ୍ୟଶାଳିନୀ ହେଲି ? କେଉଁ ପୁଣ୍ୟଫଳରେ ମୁଁ ମର୍ତ୍ତ୍ୟ ଲୋକରେ ରହି ମଧ୍ୟ ମୋ ଘର ସମ୍ମୁଖରେ କଳ୍ପବୃକ୍ଷ ଲଗା ହେଲା ?"

ଏହାଶୁଣି ଭଗବାନ କହିଲେ—"ପ୍ରିୟେ ! ପୂର୍ବଜନ୍ମରେ ତୁମେ ଭଗବାନଙ୍କ ମନ୍ଦିର ସମ୍ମୁଖରେ ଏକ ତୁଳସୀ ଗଛ ଲଗାଇ ଥିଲ, ତାହାର ଏହି ଫଳ ଯେ, ତୁମ ଘର ସମ୍ମୁଖରେ କଳ୍ପବୃକ୍ଷ ରୋପଣ ହେଲା ଓ ସର୍ବଦା ଲଗା ହେଉଥିବ ।"

ଏହା ଶୁଣି ସତ୍ୟଭାମା କହିଲେ—"ତେବେ ପୂର୍ବଜନ୍ମରେ ମୁଁ କିଏ ଥିଲି ? ମୋ ଦ୍ୱାରା ଏମନ୍ତ କେଉଁ ଶୁଭକର୍ମ ହୋଇଥିଲା, ଯେଉଁଥିପାଇଁ ମୁଁ ଏତେବଡ଼ ସୌଭାଗ୍ୟଶାଳିନୀ ହେଲି ?"

ଏହା ଶୁଣି ଭଗବାନ କିଛି ସମୟ ମୌନ ରହି କହିଲେ—"ଆଚ୍ଛା, ପ୍ରିୟେ ! ଶୁଣ, ମୁଁ ତୁମକୁ ତୁମ ସୁକୃତ ସମ୍ବନ୍ଧରେ କହୁଅଛି । ସତ୍ୟଯୁଗର ଶେଷଭାଗରେ କଙ୍ଗଳପୁରରେ ଦେବଶର୍ମା ନାମକ ଜଣେ ବ୍ରାହ୍ମଣ ଥିଲେ । ସେ ଅତି କୁଳରେ ଉତ୍ପନ୍ନ ହୋଇଥିଲେ ଓ ସମସ୍ତ ବେଦ ବେଦାଙ୍ଗରେ ପାରଙ୍ଗମ ଥିଲେ । ସେ ପ୍ରତ୍ୟେହ ବିଧି ବିଧାନରେ ଅଗ୍ନି ହୋମ କରି ସର୍ବଦା ଗାୟତ୍ରୀ ଜପ କରୁଥିଲେ । ଶ୍ରଦ୍ଧା ସହିତ ତିନିକାଳରେ ସୂର୍ଯ୍ୟଙ୍କୁ ଅର୍ଘ୍ୟ ପ୍ରଦାନ କରୁଥିଲେ ଓ ସୂର୍ଯ୍ୟନାରାୟଣ ବ୍ରତ ପାଳନ କରୁଥିଲେ । ସେ ସୂର୍ଯ୍ୟ-ନାରାୟଣଙ୍କ ଉପାସନାରେ ତତ୍ପର ରହୁଥିଲେ । ତାଙ୍କ ନିକଟରେ ଯେଉଁ ବିଦ୍ୟାର୍ଥୀ ବ୍ରହ୍ମଚାରୀ ରହୁଥିଲେ ସେ ସେମାନଙ୍କୁ ଅତି ପ୍ରେମରେ ପଢ଼ାଉଥିଲେ । ତାଙ୍କ ଧର୍ମପତ୍ନୀ ମଧ୍ୟ ଅତ୍ୟନ୍ତ ସତୀ, ସାଧ୍ୱୀ ଓ ଧର୍ମପରାୟଣା ଥିଲେ । ଉଭୟଙ୍କ ମଧ୍ୟରେ ଖୁବ୍ ପ୍ରେମ ଥିଲା । କିନ୍ତୁ ତାଙ୍କର କୌଣସି ସନ୍ତାନ ନଥିଲେ । ଏଥିପାଇଁ ସେ ଦୁଃଖରେ କାଳ ଯାପନ କରୁଥିଲେ ମଧ୍ୟ ଏହାକୁ ଦୈବଇଚ୍ଛା ବୋଲି ଜାଣି ମନକୁ ସାନ୍ତ୍ୱନା ଦେଉଥିଲେ ଓ ସର୍ବଦା ଧର୍ମ କର୍ମରେ ଲାଗିପଡ଼ିଥିଲେ । ଭଗବାନଙ୍କ ଭକ୍ତଙ୍କ ହୃଦୟରେ କୌଣସି ଇଚ୍ଛା ଜାତ ହୋଇ ତାହା ପୂର୍ଣ୍ଣ ନ ହେବା ଅସମ୍ଭବ । ହଁ, ଏହା ବି ହୋଇ-ପାରେ ଶୀଘ୍ର ନ ହୋଇ ବିଳମ୍ବରେ କିମ୍ବା ଏ ଜନ୍ମରେ ନ ହୋଇ ପରବର୍ତ୍ତୀ ଜନ୍ମରେ ହୋଇପାରେ । ଭଗବାନ ଯାହାଙ୍କର କଲ୍ୟାଣ କରିବାକୁ ଇଚ୍ଛା କରନ୍ତି ତାହା କରନ୍ତି । ଦେବଶର୍ମାଙ୍କ ବୃଦ୍ଧାବସ୍ଥାରେ ତାଙ୍କର ଇଚ୍ଛା ପୂର୍ଣ୍ଣ ହେଲା । ତାଙ୍କର ଏକ କନ୍ୟାରତ୍ନ ଲାଭ ହେଲା । ସେହି କନ୍ୟା ଏତେ ସୁନ୍ଦରୀ ଥିଲା ଯେ, ପିତାମାତା ତାକୁ ଦେଖି ପରମ ଆନନ୍ଦ ଲାଭ କରୁଥିଲେ । ସେ ଦୁହେଁ ପ୍ରାଣଠାରୁ ବଳି ତାହାକୁ ଆଦର କରୁଥିଲେ ଓ ଖୁବ୍ ଯତ୍ନରେ ତାହାର ଲାଳନପାଳନ କରୁଥିଲେ । ପିତା ତାହାର ନାମ ଦେଇଥିଲେ ଗୁଣବତୀ । ଗୁଣବତୀ ବାସ୍ତବରେ ରୂପ ଓ ଗୁଣରେ ଅତୁଳନୀୟା ଥିଲା । ଶୁକ୍ଳପକ୍ଷ ଚନ୍ଦ୍ରମାଙ୍କ କିରଣ ଭଳି ସେ ଦେବଶର୍ମାଙ୍କ ଗୃହରେ ବଢ଼ିବାକୁ ଲାଗିଲା ।

ମୁନିଙ୍କର ବହୁତ ଶିଷ୍ୟ ଥିଲେ । ସେମାନଙ୍କ ମଧ୍ୟରେ ଚନ୍ଦ୍ର ନାମକ ଜଣେ ଶିଷ୍ୟ ଥିଲା । ସେ ଅତି ସୁନ୍ଦର, ସୁଶୀଳ, ମେଧାବୀ ଓ ଧର୍ମାତ୍ମା ଥିଲା । ସେ ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତିର ସହିତ ଗୁରୁଙ୍କର ସେବା କରୁଥିଲା । ଆଚାର୍ଯ୍ୟ ମଧ୍ୟ ତାକୁ ପୁତ୍ର ଭଳି ଭଲ-ପାଉଥିଲେ । ଗୁଣବତୀ ବିବାହ-ଯୋଗ୍ୟା ହେବାରୁ ଆଚାର୍ଯ୍ୟ ମହାଶୟ ନିଜ ପତ୍ନୀଙ୍କ ସହିତ ପରାମର୍ଶ କରି ଚନ୍ଦ୍ର ସହିତ ଗୁଣବତୀର ବିବାହ କରିଦେଲେ । ଉଭୟେ ଯୁବାବସ୍ଥାପନ୍ନ ଥିଲେ, ସୁନ୍ଦର ଥିଲେ ଓ ସୁଶୀଳ ଥିଲେ । ଏହି ବିବାହରେ ପିତାମାତା ଖୁବ୍ ଆନନ୍ଦିତ ହେଲେ । ଚନ୍ଦ୍ର ମଧ୍ୟ ନିଜକୁ ଭାଗ୍ୟବାନ ମନେକଲା ।

ବିବାହର କିଛିଦିନ ପରେ ଆଚାର୍ଯ୍ୟ ଦେବଶର୍ମା ନିଜର ପ୍ରିୟ ଶିଷ୍ୟ ତଥା ଜାମାତାଙ୍କୁ ସଙ୍ଗରେ ନେଇ ବନକୁ ଜଳ, ଫୁଲ କୁଶ ଓ ସମିଧ ଆଣିବାକୁ ଗଲେ । ସେ କୁଶ ଆଣିବା

ପାଇଁ ହିମାଳୟର ପାଦ ଦେଶ ଗହନ ବନକୁ ଗଙ୍ଗାନଦୀ କୂଳେ କୂଳେ ଗଲେ । ସେହି ଘୋର ବନ ମଧ୍ୟରେ ସେ ଦୁହେଁ ଏକ ଭୟଙ୍କର କାଳ ସଦୃଶ ରାକ୍ଷସକୁ ଦେଖି ଦୌଡ଼ିବାକୁ ଲାଗିଲେ, କିନ୍ତୁ ଦୌଡ଼ି ପାରିଲେ ନାହିଁ । ରାକ୍ଷସ ତାଙ୍କ ଉପରେ ପ୍ରହାର କଲା । ଉଭୟେ ସେହିଠାରେ ମୃତ୍ୟୁ ବରଣ କଲେ ।

ଉଭୟେ ଧର୍ମାତ୍ମ ଥିଲେ ଓ ଭଗବତ୍ର ଉପାସକ ଥିଲେ । ଉଭୟେ ଗଙ୍ଗାତଟରେ କୁଶାବର୍ତ୍ତ ଭଳି ପରମ ପବିତ୍ର କ୍ଷେତ୍ରରେ ପ୍ରାଣତ୍ୟାଗ କଲେ । ତେଣୁ ଉଭୟେ ବୈକୁଣ୍ଠଗତି ପ୍ରାପ୍ତ ହେଲେ ଏବଂ ବିଷ୍ଣୁଙ୍କର ପ୍ରିୟ ପାର୍ଷଦ ହୋଇ ସ୍ୱର୍ଗରେ ନିବାସ କରିବାକୁ ଲାଗିଲେ । ବିଷ୍ଣୁ, ଶିବ, ଶକ୍ତି, ସୂର୍ଯ୍ୟ ଓ ଗଣପତି ଏ ପାଞ୍ଚ ଦେବତା ହିଁ ଏକ । ଏକ ଭଗବାନ୍ ହିଁ ପାଞ୍ଚ ରୂପରେ ଭକ୍ତମାନଙ୍କର କାମନା ପୂର୍ଣ୍ଣ କରନ୍ତି । ସୂର୍ଯ୍ୟଙ୍କୁ ଉପାସନା କରୁଥିବା ଦେବଶର୍ମାଙ୍କୁ ସେହି କାରଣରୁ ବୈକୁଣ୍ଠ ପ୍ରାପ୍ତି ହୋଇଥିଲା ।

ଏଣେ ଗୁଣବତୀ ଯେତେବେଳେ ଏହି ସମାଚାର ଶୁଣିଲେ, ସେ ଅତ୍ୟନ୍ତ ଶୋକାକୁଳା ହୋଇ ମୂର୍ଚ୍ଛିତ ହୋଇଗଲେ । ତାଙ୍କୁ ସମସ୍ତ ସଂସାର ଶୂନ୍ୟବୋଧ ହେଲା । ତାଙ୍କର ମାତା ତାଙ୍କୁ ଯେତେ ସାନ୍ତ୍ୱନା ଦେଲେ ମଧ୍ୟ କିଛି ଫଳ ହେଲା ନାହିଁ । ସ୍ତ୍ରୀ ଲୋକଙ୍କ ପକ୍ଷେ ବୈଧବ୍ୟଠାରୁ ବଳି ଅନ୍ୟ କୌଣସି ଦୁଃଖ ନାହିଁ । ପୁନଶ୍ଚ ଯେଉଁ ସ୍ତ୍ରୀ ଲୋକ ବାଲ୍ୟବିଧବା ହୋଇଯାଏ, ପତିସୁଖ ଲାଭ କରିବାର ସୁଯୋଗ ପାଏ ନାହିଁ, ତାହାର ଦୁଃଖ ସମ୍ବନ୍ଧରେ ତ କିଛି କୁହାଯାଇ ନ ପାରେ ।

ଗୁଣବତୀ ଶେଷକୁ ଧୈର୍ଯ୍ୟ ଧରିଲେ । ତାଙ୍କ ଗୃହରେ ଯେଉଁସବୁ ବାସନ କୁସନ ଥିଲା ତାହା ବିକ୍ରୟ କରି ପିତା ଓ ପତିଙ୍କର ଶ୍ରାଦ୍ଧ କର୍ମ କଲେ । ସେ ପରମେଶ୍ୱରଙ୍କୁ ନିଜର ପତିଜ୍ଞାନ କରି ତାଙ୍କର ଆରାଧନାରେ ତତ୍ପର ହେଲେ । କିଛିଦିନ ପରେ ତାଙ୍କ ମାତା ମଧ୍ୟ ମୃତ୍ୟୁବରଣ କଲେ । ଏବେ ସେ ଆଶ୍ରମରେ ଏକାକିନୀ ରହିଲେ । ଆଶ୍ରମ ଛାଡ଼ି ସେ ଅନ୍ୟ କେଉଁଠାକୁ ବି ଗଲେ ନାହିଁ । ସେଠାରେ ରହି ସେ ମୋତେ ଭକ୍ତି କରି ଜୀବନ ଅତିବାହିତ କରିବାକୁ ଲାଗିଲେ ।

ଭଗବାନ ଶ୍ରୀକୃଷ୍ଣ ସତ୍ୟଭାମାଙ୍କୁ କହିଲେ—"ପ୍ରିୟେ ! ବିଧବା ହେବା ଏକ ଦୁର୍ଭାଗ୍ୟଜନକ ଘଟଣା । ବିଧବା ହୋଇ ଯେ ନିଜ ମନକୁ ବିଷୟ ଭୋଗରେ ବୁଡ଼ାଇ ରଖେ, ତାହାର ଉଦ୍ଧାର ହେବା ଅତ୍ୟନ୍ତ କଠିନ । କାରଣ ବିଷୟ ସୁଖର ଆକର୍ଷଣ ଏପରି ପ୍ରବଳ ଯେ, ସ୍ତ୍ରୀ ପୁରୁଷ ଯେ କେହି ଘୋର ସାଧନା ବ୍ୟତିରେକେ ଏହାକୁ ଭୁଲି ପାରନ୍ତି ନାହିଁ । ମୃତ୍ୟୁ କାଳକୁ ସେହି ସ୍ତ୍ରୀ ଲୋକର ଯେଉଁ ଯେଉଁ ପୁରୁଷ ସହିତ ସମ୍ବନ୍ଧ ହୋଇଥାଏ ତାହା ସ୍ମରଣ ହୁଏ । ମୃତ୍ୟୁ ହେବା ସମୟରେ ଯାହାର ଯାହାକୁ ସ୍ମରଣ ହୁଏ, ସେ ଅବଶ୍ୟ ତାକୁ ହୁଏ । ଏହିପରି ସେହି ସ୍ତ୍ରୀଲୋକ ପରଜନ୍ମରେ ବେଶ୍ୟା ବା ବ୍ୟଭିଚାରିଣୀ ହୁଏ ।

ଏଥିପାଇଁ ବୈଧବ୍ୟଠାରୁ ବଳି ଦୁର୍ଭାଗ୍ୟ ସ୍ତ୍ରୀମାନଙ୍କ ପାଇଁ ଆଉ କିଛି ହୋଇ ନପାରେ। କିନ୍ତୁ ଏହି ଦୁର୍ଭାଗ୍ୟକୁ ସୌଭାଗ୍ୟରେ ପରିଣତ କରାଯାଇ ପାରେ ସେତିକିବେଳେ, ଯେତେବେଳେ କି ବିଧବା ନିଜର ମନକୁ ଭଗବାନଙ୍କ ସମ୍ପୂର୍ଣ୍ଣ ରୂପେ ସମର୍ପଣ କରିଦିଏ। ତାଙ୍କ ସର୍ବଦା ଚିନ୍ତା କରେ ଓ ତାଙ୍କ ନିମିତ୍ତ ବ୍ରତ ଉପାସନା ଆଦି କରେ; ଏବଂ ତାଙ୍କର ସେବାରେ ସଦା ସଂଲଗ୍ନ ରହେ। ଏପରି ଆଚରଣ କରୁଥିବା ବିଧବା କେବେହେଲେ ବି ବିଧବା ହୁଏ ନାହିଁ, ସେ ସର୍ବଦା ପତି ସୁହାଗିନୀ ହୋଇ ରହିଥାଏ। ସେ ମୋକ୍ଷ (ଅଜର, ଅମର, ଅବିନାଶୀତ୍ୱ) ପ୍ରାପ୍ତ ହୁଏ। ସୁନ୍ଦରବତୀ ନିଜର ଦୁର୍ଭାଗ୍ୟକୁ ସୌଭାଗ୍ୟରେ ପରିଣତ କରିନେଲା। ସେ ନିରନ୍ତର ମୋ ଚିନ୍ତାରେ ଲାଗିରହିଲା। ସେ ଭୁଲରେ ବି କୌଣସି ପରପୁରୁଷ ସହିତ କଥାବାର୍ତ୍ତା ହେଲା ନାହିଁ। ଘରେ ରହି ସେ ଭଜନ ପୂଜନରେ ହିଁ ସମସ୍ତ କଟାଇଲା। ସେ ପ୍ରାୟ ସମସ୍ତ ବ୍ରତ ପାଳନ କଲା। କିନ୍ତୁ ଜୀବନରେ ଦୁଇଟି ମୁଖ୍ୟ ବ୍ରତକୁ କେବେହେଲେ ଛାଡ଼ି ନଥିଲା। ଗୋଟିଏ ଏକାଦଶୀ ଓ ଅନ୍ୟଟି କାର୍ତ୍ତିକ ବ୍ରତ। ଦୁଇପକ୍ଷର ଏକାଦଶୀ ସେ ପାଳନ କରୁଥିଲା। ଦଶମୀ ଦିନ ସେ ଥରେମାତ୍ର ସୂକ୍ଷ୍ମ ଆହାର କରୁଥିଲା, ଏକାଦଶୀଦିନ ନିର୍ଜଳା ଉପବାସ କରୁଥିଲା ଓ ଦ୍ୱାଦଶୀ ଦିନ ବ୍ରାହ୍ମଣଙ୍କୁ ସିଧା ଦେଇ ପାରଣା କରୁଥିଲା। ଏକାଦଶୀ ଦିନ ସେ ରାତ୍ରି ଜାଗର ରହି ଦ୍ୱାଦଶୀରେ ବିଶ୍ରାମ ମଧ୍ୟ ନେଉ ନଥିଲା। ସେହିପରି କାର୍ତ୍ତିକ ମାସରେ ସେ ସୂର୍ଯ୍ୟୋଦୟର ପୂର୍ବରୁ ଗଙ୍ଗାରେ ସ୍ନାନ କରି, ତୁଳସୀ ପୂଜନ କରି ଦୀପଦାନ କରୁଥିଲା। ଦିନରେ ଥରେ ବିନା ଲୁଣରେ ହବିଷ୍ୟାନ୍ନ ଭୋଜନ କରୁଥିଲା। ଏହି ଦୁଇବ୍ରତ ବିଧିବତ୍ ପାଳନ କରି କରି ତାହାର କ୍ରମେ ବୃଦ୍ଧାବସ୍ଥା ଆସିଗଲା। କିନ୍ତୁ ସେ ଏକାଦଶୀ ଓ କାର୍ତ୍ତିକବ୍ରତ ଆଦୌ ଛାଡ଼ିଲା ନାହିଁ।

ନିୟମ ଅନୁସାରେ କାର୍ତ୍ତିକ ମାସ ଆସିଲା। ଶୁକ୍ଳଦଶମୀ ଦିନ ତାକୁ ସାମାନ୍ୟ ଜ୍ୱର ହେଲା। ତଥାପି ସେ ଏକାଦଶୀ ଦିନ ପ୍ରାତଃକାଳରେ ଗଙ୍ଗାସ୍ନାନ କରିବାକୁ ଗଲା। କାର୍ତ୍ତିକ ମାସର ଶୀତ ବି ଖୁବ୍ ହେଉଥିଲା ଓ ହରିଦ୍ୱାରର ଗଙ୍ଗାଜଳ ବି ବରଫ ଭଳି ଥଣ୍ଡା ହୋଇଥିଲା। ଜ୍ୱର ହେତୁ ତାକୁ ଅଧିକ ଶୀତ ହେଲା, ତଥାପି ସେ କାର୍ତ୍ତିକସ୍ନାନ କଲା। ତା ଶରୀର ଶୀତରେ କମ୍ପୁଥିଲେ ମଧ୍ୟ ସେ ଅଣ୍ଟା ବୁଡ଼ିବା ପର୍ଯ୍ୟନ୍ତ ଗଙ୍ଗାରେ ପ୍ରବେଶ କଲା। ଏହି ସମୟରେ ସେ ଦେଖିଲା, ଆକାଶରୁ ଏକ ଆଲୋକମୟ ବିମାନ ଆସୁଅଛି। ସେଥିରେ ଭଗବାନଙ୍କର ଚତୁର୍ଭୁଜ ପାର୍ଷଦ ବସିଅଛନ୍ତି। ସେଥିରେ ଗରୁଡ଼ ଚିହ୍ନରେ ଚିହ୍ନିତ ଧ୍ୱଜା ଉଡ଼ୁଥିଲା। ବିମାନକୁ ଦେଖି ସୁନ୍ଦରବତୀ ବୁଝିପାରିଲା ଯେ, ତାହା ଭଗବାନଙ୍କର ବିମାନ। ସେ ନତମସ୍ତକ ହୋଇ ବିଷ୍ଣୁ ପାର୍ଷଦଙ୍କୁ ପ୍ରଣାମ କଲା। ପାର୍ଷଦ ସଙ୍ଗେ ସଙ୍ଗେ ତାକୁ ବିମାନରେ ବସିବାକୁ ପ୍ରାର୍ଥନା କଲେ। ସେ ତାହାର ପାଞ୍ଚଭୌତିକ ଶରୀରକୁ ଗଙ୍ଗା ଜଳରେ ଛାଡ଼ି ଦିବ୍ୟରୂପ ଧାରଣ କରି ଅଗ୍ନିଶିଖା ଭଳି ଜାଜ୍ୱଲ୍ୟମାନ

ରୂପରେ ଅପ୍‌ସରାମାନଙ୍କ ଦ୍ୱାରା ସେବିତ ହୋଇ ବିଷ୍ଣୁଲୋକ ପ୍ରାପ୍ତ ହେଲେ । ସେ ଜୀବନ ସାରା ମୋତେ ଚିନ୍ତା କରୁଥିଲେ । ମୋ ପାଇଁ ଏକାଦଶୀ ବ୍ରତ ଓ କାର୍ତ୍ତିକବ୍ରତ ପାଳନ କରୁଥିଲେ । ସେଥିପାଇଁ ସେ ମୋ ସାନିଧ୍ୟ ଲଭକଲେ ।

ଯେତେବେଳେ ପୃଥିବୀରେ ପାପଭାର ବଢ଼ିଗଲା ଓ ବ୍ରହ୍ମାଦି ଦେବଗଣ ମୋତେ ଅବତାର ଧାରଣ କରିବାକୁ ପ୍ରାର୍ଥନା କଲେ, ସେତେବେଳେ ମୁଁ ନିଜଗଣଙ୍କ ସହିତ ଅବତାର ଧାରଣ କଲି । ଦେବଶର୍ମା ଓ ଚନ୍ଦ୍ର ଏସବୁ ମୋ ଲୋକରେ ମୋ ପାର୍ଷଦ ହୋଇ ରହିଥିଲେ । ମୁଁ ଅବତୀର୍ଣ୍ଣ ହେବାରୁ ଏମାନେ ମଧ୍ୟ ଶରୀର ଧାରଣ କଲେ । ସେହି ଦେବଶର୍ମା ହିଁ ତୁମର ପିତା ସତ୍ରାଜିତ ଓ ଚନ୍ଦ୍ର ହେଉଛନ୍ତି ଅକ୍ରୂର ଏବଂ ସେହି ଗୁଣବତୀ ହିଁ ତୁମେ । ତୁମେ ମୋତେ ଅନନ୍ୟ ଭାବରେ ଆରାଧନା କଲ । ତେଣୁ ତୁମେ ମୋର ପତ୍ନୀ ହେଲ । ଏବେ ତୁମେ ତୁମ ସେବାରେ ମୋତେ ବଶକରି ନେଇଛ । ତେଣୁ ଚିରଦିନ ପାଇଁ ତୁମେ ମୋର ହୋଇଯାଇଛ । ଆଉ ଏଣିକି ତୁମେ କେବେ ହେଲେ ମୋଠାରୁ ପୃଥକ ହୋଇ ପାରିବ ନାହିଁ । ପ୍ରିୟେ ! ଏ ସଂସାରରେ ଯିଏ ମୋ ନିମିତ୍ତ କର୍ମ କରେ, ତାକୁ ମୁଁ ଅକ୍ଷୟ କରିଦିଏ । ତୁମେ ମୋ ଦ୍ୱାର ଦେଶରେ ତୁଳସୀଗଛ ଲଗାଇ ଥିଲ ? ତାହାର ଫଳ ସ୍ୱରୂପ ତୁମେ ଅକ୍ଷୟ କଳ୍ପବୃକ୍ଷ ପାଇଲ । ତୁମେ କାର୍ତ୍ତିକ ମାସରେ ଦୀପଦାନ କରିଥିଲ । ତେଣୁ ତାହାର ଫଳ ସ୍ୱରୂପ ତୁମେ ଅକ୍ଷୟଲକ୍ଷ୍ମୀ ପ୍ରାପ୍ତ ହେଲ । ତୁମେ ଯେଉଁ ବ୍ରତ ଉପବାସ କରିଥିଲ ତାହା ମୋତେ ଅର୍ପଣ କରିଥିଲ, ତାହାର ଫଳସ୍ୱରୂପ ତୁମେ ମୋର ପତ୍ନୀ ହେଲ । ତୁମେ ଜୀବନସାରା କେବେହେଲେ ବ୍ରତକୁ ଖଣ୍ଡିତ କରି ନଥିଲ, ସେଥିପାଇଁ ତୁମେ ଅଖଣ୍ଡ ଐଶ୍ୱର୍ଯ୍ୟର ଅଧିକାରଣୀ ହେଲ । ତେଣୁ ବୁଝାଯାଏ, ଯେତେ ଯଜ୍ଞ, ତପ, ଦାନ, ବ୍ରତ ଓ ପୁଣ୍ୟାଦି ରହିଛି, ତାହା ଏକାଦଶୀ ଓ କାର୍ତ୍ତିକ ବ୍ରତ ତୁଳନାରେ କିଛି ବି ନୁହେ ।

ଏହାଶୁଣି ସତ୍ୟଭାମା କହିଲେ—"ମହାରାଜ ! ଆପଣ ତ ବଡ଼ ଆଶ୍ଚର୍ଯ୍ୟ କଥା କହୁଛନ୍ତି । ସମସ୍ତ ସମୟରେ ଆପଣ ଏପରି ହସନ୍ତି ଯେ, ମୁଁ ଚିଡ଼ିଯାଏ ଓ ସମସ୍ତ ସମୟରେ ଏପରି କଥା କହନ୍ତି ଯେ, ତାହା ଶୁଣି ମୋ ପ୍ରେମ ଟାଙ୍କର ହୁଏ । ଆଚ୍ଛା କୁହନ୍ତୁ ତ ଦେଖି ଏକାଦଶୀ ବ୍ରତ ଓ କାର୍ତ୍ତିକ ବ୍ରତର ଏତେ ମାହାତ୍ମ୍ୟ କାହିଁକି ? ଦେବଗଣ ଓ ଆପଣ ଏହି ବ୍ରତ ଆଚରଣ କରୁଥିବା ଲୋକଙ୍କ ଉପରେ କାହିଁକି ଏତେ ପ୍ରସନ୍ନ ହୁଅନ୍ତି ?"

ଭଗବାନ କହିଲେ—"ଏ ବିଷୟରେ ଏକ ଇତିହାସ ଅଛି, ତାହା ଶୁଣ । ପ୍ରାଚୀନ କାଳରେ ଶଙ୍ଖାସୁର ନାମକ ଏକ ଦୈତ୍ୟ ଥିଲା । ସେ ଅତ୍ୟନ୍ତ ବଳୀ ଥିଲା । ସେ ସ୍ୱର୍ଗରୁ ସମସ୍ତ ଦେବତାଙ୍କୁ ତଡ଼ିଦେଲା ଓ ନିଜେ ଏକୁଟିଆ ସମସ୍ତ ଦେବତାଙ୍କ କାର୍ଯ୍ୟ କଲା । ଦେବତାମାନେ ଭୟଭୀତ ହୋଇ ଧରାବକ୍ଷରେ ଏଣେ ତେଣେ ଭ୍ରମଣ କରି

ଶରଣାର୍ଥୀ ରୂପେ ଦିନ କାଟିଲେ । ଏବେ ସେହି ଦୈତ୍ୟ ଚିନ୍ତାକଲା—"ମୁଁ ତ ଦେବଗଣଙ୍କୁ ଏବେ ଜୟ କଲି, କିନ୍ତୁ ଏମାନେ ଯେତେବେଳେ ବଳଶାଳୀ ହେବେ ପୁନଶ୍ଚ ଆସି ମୋତେ ସ୍ୱର୍ଗରୁ ତଡ଼ିଦେବେ । ଏମାନଙ୍କର ବଳଶାଳୀ ହେବାର ଏକମାତ୍ର କାରଣ ଯାଗଯଜ୍ଞ । ଏମାନେ ବେଦବିଦ୍ୟା ଦ୍ୱାରା ପୁଷ୍ଟ ହୋଇଯିବେ । ତେଣୁ ମୁଁ ପ୍ରଥମେ ବେଦକୁ ନଷ୍ଟ କରିଦେବ । ଯେତେବେଳେ ଗଛ ମୂଳରୁ କଟିଯାଏ, ସେତେବେଳେ ତାହିଁରୁ ଆଉ ଶାଖା ପ୍ରଶାଖା ବାହାରେ ନାହିଁ ।" ଏହି କଥା ଚିନ୍ତାକରି ସେ ସତ୍ୟଲୋକକୁ ଗଲା । ମୁଁ ତ ସେତେବେଳେ କ୍ଷୀର ସାଗରରେ ଅନନ୍ତ ଶୟନ କରିଥିଲି । ବେଦ ଚିନ୍ତା କଲେ, ଏ ଅସୁର ଯଦି ଆମକୁ ନ ପାଏ, ତ ତାହେଲେ ଆମ୍ଭମାନଙ୍କର ବହୁତ ଅନିଷ୍ଟ କରିବ । ସେଥିପାଇଁ ସେମାନେ ପୃଥକ ପୃଥକ ହୋଇ ସମୁଦ୍ର ଜଳରେ ଲୁଚିଗଲେ । ସତ୍ୟଲୋକରୁ ବେଦ ନ ପାଇ ଦୈତ୍ୟ ଚିନ୍ତାକଲା, ମୁଁ ଏବେ ସମୁଦ୍ର ଭିତରକୁ ଯାଇ ବେଦ ଅନ୍ୱେଷଣ କରିବି । ସେ ସମୁଦ୍ର ମଧ୍ୟରେ ପଶି ପାତାଳ ପର୍ଯ୍ୟନ୍ତ ବେଦ ଖୋଜିବାରେ ଲାଗିଲା । ଏହି ସମୟ ମଧ୍ୟରେ ସୁଯୋଗ ପାଇ ସମସ୍ତ ଦେବତା ମିଶି ମୋ ନିକଟରେ ଆସି ପହଞ୍ଚିଲେ । ମୁଁ ତ ଯୋଗ ନିଦ୍ରାରେ ଶୟନ କରିଥିଲି । ସେମାନେ ଆସି ଶଙ୍ଖ, ଘଣ୍ଟା ଆଦି ମୋ ନିକଟରେ ବଜାଇଲେ ଓ ଜୟ ଜୟକାର ଧ୍ୱନି କଲେ । ମୋ ନିଦ୍ରାଭଗ୍ନ ହେବାରୁ ମୁଁ ପଚାରିଲି—"କ'ଣ ଖବର ?" ସମସ୍ତେ ଡରି ଡରି କହିଲେ—"ମହାରାଜ ! ଶଙ୍ଖାସୁର ବଡ଼ ଉପଦ୍ରବ କରୁଛି, କୃପାକରି ଆପଣ ଏବେ ନିଦ୍ରା ତ୍ୟାଗ କରନ୍ତୁ ।"

ମୁଁ ପଚାରିଲି—"ବର୍ତ୍ତମାନ କେଉଁ ମାସ ?"

ଦେବତାମାନେ କହିଲେ—"ମହାରାଜ ! ବର୍ତ୍ତମାନ କାର୍ତ୍ତିକ ମାସ ।"

ମୁଁ ପୁନଶ୍ଚ ପଚାରିଲି—"ଆଜି ତିଥି କଣ ?"

ସମସ୍ତେ କହିଲେ —"ଆଜି ଶୁକ୍ଳପକ୍ଷ ଏକାଦଶୀ ।"

ମୁଁ କହିଲି—"ଆଚ୍ଛା, ଠିକ୍ ଅଛି, ଆଜିଠାରୁ ଏହି ଏକାଦଶୀର ନାମ ହରିପ୍ରବୋଧିନୀ ଏକାଦଶୀ ହେବ । ସେ ଦିନ ସନ୍ଧ୍ୟା ସମୟରେ ଯିଏ ଶଙ୍ଖ, ଘଣ୍ଟା ବଜାଇବ, ମୋତେ ଉଠାଇବ ତାହାର ସମସ୍ତ ପ୍ରକାର ସମୃଦ୍ଧି ହେବ । ଆଜିଠାରୁ କାର୍ତ୍ତିକମାସ ଓ ଏକାଦଶୀ ତିଥି ଏହି ଦୁଇଟିକୁ ସବୁଠାରୁ ଶ୍ରେଷ୍ଠ ବ୍ରତ ବୋଲି ଗ୍ରହଣ କରାଯିବ । ଯିଏ ଏହି ଦୁଇ ବ୍ରତ ପାଳନ କରିବ, ସେ ମୋର ଅତ୍ୟନ୍ତ ପ୍ରିୟ ହେବ ।"

ଏହା କହି ମୁଁ ସେଠାରେ ଥିବା ଦେବତାମାନଙ୍କୁ କହିଲି—"ଦେବଗଣ ! ଦେଖ, ଏ କଥା ଭଲଭାବେ ମନେରଖ ଯେ, ଆଜିଠାରୁ ମୁଁ ଏକମାସ କାର୍ତ୍ତିକ ଶେଷ ପର୍ଯ୍ୟନ୍ତ ଜଳ ମଧ୍ୟରେ ରହିବି, ତୁମ୍ଭେମାନେ ମଧ୍ୟ ମୋ ସଙ୍ଗେ ମୋ ପାଖରେ ରହିବ । ସମସ୍ତ ଅଙ୍ଗ ସହିତ ବେଦ ଏବେ ଜଳ ମଧ୍ୟରେ ରହିଛନ୍ତି । ଯେଉଁ ନରନାରୀ ସୂର୍ଯ୍ୟୋଦୟ

ପୂର୍ବରୁ ଜଳାଶୟ ଆଦିରେ ସ୍ନାନ କରିବେ, ମୁଁ ସେମାନଙ୍କର ସମସ୍ତ ମନୋରଥ ପୂର୍ଣ୍ଣ କରିବ ।"

ଏହାପରେ ମୁଁ ଦେବତାମାନଙ୍କୁ ପୃଥକ୍ ପୃଥକ୍ ପାଖକୁ ଡାକି କହିଲି—"ଦେବରାଜ ! ଦେଖ, ଯେଉଁ ଲୋକ କାର୍ତ୍ତିକ ସ୍ନାନ କରିବେ, ସେ ଶରୀର ତ୍ୟାଗ କରିବା ମାତ୍ରେ ତାଙ୍କୁ ମୋ ଲୋକରେ ନେଇ ପହଞ୍ଚାଇଦେବ !" ମୁଁ ବରୁଣଙ୍କୁ କହିଲି—"ହେ ବରୁଣ ! ସେମାନଙ୍କୁ ବିନା ଯାଚଞ୍ଚାରେ ତୁମେ ପୁତ୍ରପୌତ୍ରାଦି ପ୍ରଦାନ କରିବ ।" ଧନାଧକ୍ଷ ! "ତୁମେ ଏପରି ଲୋକଙ୍କ ନିକଟରେ ଧନ ସମ୍ପତ୍ତି ସର୍ବଦା ଭରିଦେବ ।" ଯମରାଜ ! ତୁମେ କାର୍ତ୍ତିକ ମାସରେ କେବେହେଲେ କଟୁ ବଚନ କହିବ ନାହିଁ, ସେହି ଲୋକମାନଙ୍କୁ ତୁମେ ସର୍ବଦା ଯାଇ ଆଦର କରିବ ।" ଏହିପରି ସମସ୍ତ ଦେବତାଙ୍କୁ ଆଜ୍ଞା ଦେଇ ମୁଁ ମତ୍ସ୍ୟରୂପ ଧାରଣ କରି ଜଳ ମଧ୍ୟରେ ପ୍ରବେଶ କଲି ଓ ଶଙ୍ଖାସୁରକୁ ମାରି ବେଦ ଉଦ୍ଧାର କଲି ।"

ଏହାଶୁଣି ସତ୍ୟଭାମା ପଚାରିଲେ—"ମହାରାଜ ! ଆପଣ ମତ୍ସ୍ୟ ବି ହୋଇଥିଲେ ? ଆପଣ ତ ବହୁରୂପୀ ?"

ଭଗବାନ କହିଲେ—"କେବଳ ମାଛ କାହିଁକି, ମୁଁ ତ ଘୁଷୁରି ହୋଇଛି, ସିଂହ ହୋଇଛି, କଇଁଛ ହୋଇଛି ଓ ସବୁକିଛି ହୋଇଛି । ମୋର ଭକ୍ତ ଯେତେବେଳେ ଯାହା ଚାହିଁଛନ୍ତି, ସେତେବେଳେ ମୁଁ ସେହିରୂପ ହୋଇଛି ଓ ହେଉଛି ମଧ୍ୟ । ଏପରି ଏତେ ଅସୁର ଅଛନ୍ତି, ଯେଉଁମାନେ କି ଶରୀରକୁ ସବୁକିଛି ମନେକରନ୍ତି । ସେମାନେ କହନ୍ତି—"ବେଦ ମିଥ୍ୟା, ଯଜ୍ଞ ମିଥ୍ୟା, ଦାନ ମିଥ୍ୟା, ଧର୍ମ ମିଥ୍ୟା, କେବଳ ଶରୀର ସତ୍ୟ । ସେହି ଶରୀରକୁ ପାଳନ କରି ସୁଖରେ ରହ ।" ସେମାନଙ୍କ ପାଇଁ ମୁଁ ସେହିପରି ହୋଇ ସେମାନଙ୍କୁ ଉପଦେଶ ଦିଏ—'ବେଦ ଯଜ୍ଞ, ଧର୍ମ ଓ ଭଗବାନ (ମୁଁ) ସବୁ ମିଥ୍ୟା । ଶରୀର ସବୁକିଛି । ଋଣକରି ପରେ ଘୃତ ପାନ କର । ସାରକଥା ଏହି ଯେ, ମୋତେ ଯେ କୌଣସି ରୂପ ଧାରଣ କରିବାରେ ସଙ୍କୋଚ ନାହିଁ । ମୋର ଭକ୍ତ ଯେଉଁ ଭାବରେ ମୋତେ ଭଜନ କରନ୍ତି, ମୁଁ ସେହି ରୂପ ଧାରଣ କରି ସେମାନଙ୍କୁ ସେହିପରି ଫଳ ଦିଏଁ ।"

ସତ୍ୟଭାମା କହିଲେ—"ତାହାହେଲେ ମହାରାଜ ! ଆପଣ ତ ବିନା ପେଣ୍ଠୀର ଲୋଟା ଭଳି ଯେଉଁ ଆଡ଼କୁ ଇଚ୍ଛା ସେଆଡ଼େ ଗଡ଼ି ଯାଆନ୍ତି । ଆପଣଙ୍କର ଏପରି ରୂପକୁ ମୋର ଦଣ୍ଡବତ । ମୁଁ ତ ସଦା ଆପଣଙ୍କର ଏହି ମଦନମୋହନ ମନୋହର ରୂପକୁ ଦର୍ଶନ କରିବାକୁ ଚାହେଁ । ମୋତେ ଆପଣ କେବେହେଲେ ସେ ସବୁ ବ୍ୟାଘ୍ର, ସର୍ପ, ବିଚ୍ଛୁ ଆଦି ରୂପ ଦେଖାଇବେ ନାହିଁ ।

ଏହା ଶୁଣି ଭଗବାନ ହସି ହସି ବେଦମ ହୋଇଗଲେ, ସତ୍ୟଭାମା ମଧ୍ୟ ନ ହସି ରହିପାରିଲେ ନାହିଁ । ସେହିଦିନଠାରୁ ସେ ଏକାଦଶୀବ୍ରତ ଛାଡ଼ିଲେ ନାହିଁ କିମ୍ବା କାର୍ତ୍ତିକ ମାସକୁ ବିନା ବ୍ରତରେ ଯିବାକୁ ଦେଲେ ନାହିଁ ।"

ସୂତ କହିଲେ—"ମୁନିଗଣ ! ଭଗବାନ ଏହିପରି ସମସ୍ତ ରାଣୀଙ୍କ ସହିତ ବିନୋଦ କରି ହସ ଖୁସିରେ ଭଲ ଭଲ ଶିକ୍ଷା ପ୍ରଦାନ କରୁଥିଲେ । ସେ ଅନେକ ଅଦ୍ଭୁତ ଅଦ୍ଭୁତ ଇତିହାସ ଶୁଣାଇ ଥିଲେ । ଏହାଦ୍ୱାରା ସେମାନେ ଅତ୍ୟନ୍ତ ପ୍ରସନ୍ନ ହେଉଥିଲେ । ସେ ନିଜକୁ ଏପରି ଗୋପନ ରଖୁଥିଲେ ଯେ, ସମସ୍ତ ରାଣୀ ଜାଣୁଥିଲେ ସୁଦ୍ଧା ସେମାନେ ଭଗବାନଙ୍କ ସ୍ୱରୂପକୁ ଭୁଲିଯାଇ ତାଙ୍କୁ ପ୍ରକୃତ ପୁରୁଷ ବୋଲି ଜ୍ଞାନ କରୁଥିଲେ । ସେମାନେ ଭାବୁଥିଲେ ଭଗବାନ ଆମ୍ଭମାନଙ୍କ ବଶରେ ଅଛନ୍ତି । ସ୍ତ୍ରୀ ଲୋକମାନଙ୍କ କଥା ତ ଅଲଗା, ସ୍ୱୟଂ ଶିବ ମଧ୍ୟ ତାଙ୍କ ସ୍ୱରୂପକୁ ଭୁଲିଯାଇ ତାଙ୍କ ସହିତ ଯୁଦ୍ଧ କରୁଥିଲେ ।"

ଶୌନକ ପଚାରିଲେ—"ହେ ସୂତ ! ଭଗବାନଙ୍କ ସହିତ ଶିବ କାହିଁକି ଯୁଦ୍ଧ କରିଥିଲେ ଓ କେବେ କରିଥିଲେ ? କୃପାକରି ଏହି କଥା ଆମ୍ଭମାନଙ୍କୁ କୁହନ୍ତୁ ।"

ସୂତ କହିଲେ—"ଭଗବାନ ! ଅନିରୁଦ୍ଧଙ୍କ ବିବାହ ସମୟରେ ସେ ଭଗବାନଙ୍କ ସହିତ ଯୁଦ୍ଧ କରିଥିଲେ ।"

ଶୌନକ କହିଲେ—"ହେ ସୂତ ! ଆପଣ ତ ଅନିରୁଦ୍ଧଙ୍କ ବିବାହ ପ୍ରସଙ୍ଗ ବର୍ଣ୍ଣନା କରି ସାରିଛନ୍ତି । ସେ ତ ଭୋଜକଟରେ ରୁକ୍ମୀଙ୍କ ନାତୁଣୀ ସହିତ ବିବାହ କରିଥିଲେ । ସେହି ସମୟରେ ବଳଦେବ ତ ରୁକ୍ମୀଙ୍କୁ ମାରି ଦେଇଥିଲେ । କିନ୍ତୁ ସେତେବେଳେ ତ ଶଙ୍କରଙ୍କ ଯୁଦ୍ଧ କଥା କିଛି ଉଠି ନଥିଲା ?"

ସୂତ କହିଲେ—"ହଁ, ମହାରାଜ ! ତାହା ତ ଅନିରୁଦ୍ଧଙ୍କର ପ୍ରଥମ ବିବାହ ଥିଲା । ଦ୍ୱିତୀୟଥର ବିବାହ ବାଣାସୁରର କନ୍ୟା ଉଷାଙ୍କ ସହିତ ହେବାକୁ ଯାଉଥିବା ସମୟରେ ଏହି ଯୁଦ୍ଧ ହୋଇଥିଲା ।"

ଶୌନକ ପଚାରିଲେ—"ହେ ସୂତ ! ଅସୁର କନ୍ୟା ସହିତ ଅନିରୁଦ୍ଧ କାହିଁକି ବିବାହ ହେଉଥିଲେ ଓ ଶଙ୍କର କାହିଁକି ଭଗବାନଙ୍କ ସହିତ ସେଠାରେ ଯୁଦ୍ଧ କରିଥିଲେ, ଦୟାକରି ଆମ୍ଭମାନଙ୍କୁ ତାହା କୁହନ୍ତୁ ।"

ସୂତ କହିଲେ—"ଆଚ୍ଛା ଠିକ୍ ଅଛି । ଏବେ ମୁଁ ଆପଣମାନଙ୍କୁ ସେହି କଥା କହୁଅଛି ଆପଣମାନେ ସ୍ଥିରଚିତ୍ତରେ ତାହା ଶ୍ରବଣ କରନ୍ତୁ ।"

### ଛପ୍‌ପୟ

ପ୍ରାକୃତ ପୁରୁଷ ସମାନ ସବନ୍ତ କୁଁ ହରି ସମ୍ମାନେ ।
ତନକୁଁ ରାଜକୁମାରି ସ୍ୱବଶ ପଞ୍ଚ ନର ସମ ଜାଣେ ॥
ଔରନକୀ କା କହେଁ ଶମ୍ଭୁ ହୁ ଲଡ଼ବେ ଆୟେ ।
ବାଣାସୁରକୋ ପକ୍ଷ ଲୟୋ ପୀଛେ ପଛତାୟେ ॥
ଶୌନକ ପୂଛେଁ—ସୂତଜୀ ! କ୍ୟୋଁ ହରି ଶ୍ରୀହରି ତେଁ ଲଡ଼େ ।
ସୂତ କହେଁ—"ମୁନି ! ଭକ୍ତହିତ, ବୃଷଭଧ୍ୱଜ ପ୍ରଭୁ ତେଁ ଭିଡ଼େ ॥



## ଅନିରୁଦ୍ଧ ଓ ଊଷା

ବାଣସ୍ୟ ତନୟାମୂଷାମୁପୟେମେ ଯଦୂତ୍ତମଃ ।
ତତ୍ର ଯୁଦ୍ଧମଭୂଦ୍ ଘୋରଂ ହରିଶଙ୍କରୟୋର୍ମହତ୍ ॥
ଏତଦ୍ ସର୍ବଂ ମହାଯୋଗିନ୍ ସମାଖ୍ୟାତୁଂ ତ୍ୱମର୍ହସି ॥

(ଶ୍ରୀ: ଭା: ୧୦ମ ସ୍କ: ୬୨ ଅ: ୧ ଶ୍ଳୋକ)

### ଛପ୍‌ପୟ

ବୈରୋଚନ ଶତ ପୁତ୍ର ବଡ଼େ ସବମେଂ ବାଣାସୁର ।
ଶୂର ବୀର ରଣଧୀର ଦୟେ ତନ ହର ଇଚ୍ଛିତ ବର ॥
ଶୋଣିତପୁର ମହଁ ବସେ କରେଂ ହର ପୁର ରଖବାରୀ ।
କନ୍ୟା ତାକୀ ପରମ ସୁନ୍ଦରୀ ଊଷା ପ୍ୟାରୀ ॥
ତାନେଂ ଇକ ଦିନ ସ୍ୱପ୍ନ ମହଁ, ଲଖେ ବୀର ଅନିରୁଦ୍ଧ ବର ।
ପତି ସମାନ କ୍ରୀଡ଼ା କରତ, ବେଧତ ହୃୟ ମହଁକ ।ମ ଶର ॥

କେତେକ ଲୋକ କହନ୍ତି, "ଯାହାକୁ ଆମେ ଦେଖିନାହୁଁ ତାକୁ ସ୍ୱପ୍ନରେ ମଧ୍ୟ ଦେଖି ହୁଏ ନାହିଁ ।" କିନ୍ତୁ ଏ କଥା ସତ୍ୟ ନୁହେଁ । ଆମ୍ଭେମାନେ ସ୍ୱପ୍ନରେ ଏପରି ଅନେକ ପୁରୁଷ, ଏପରି ନଗର ମଧ୍ୟ ଦେଖିଥାଉଁ, ଯେଉଁ ପୁରୁଷ କି ନଗରକୁ ଇହ ଜନ୍ମରେ ଆଦୌ କେବେ ଦେଖି ନ ଥାଉଁ । ଏଥିରୁ ଏହା ସିଦ୍ଧ ହୁଏ ଯେ, ଇହଜନ୍ମର ଦର୍ଶନକୁ ଦର୍ଶନ କୁହାଯାଏ ନାହିଁ । ଜନ୍ମଜନ୍ମାନ୍ତରରେ ଆମେ ଯାହା ସବୁ ଦର୍ଶନ କରିଥାଉଁ, ପୂର୍ବଜନ୍ମରେ ଯାହାଙ୍କ ସହିତ ଆମ୍ଭେମାନେ ଯେଉଁମାନଙ୍କ ସହିତ ମିଶିଥାଉଁ, ସଂସ୍କାର ବଶତଃ ଇହଜନ୍ମରେ ଆମ୍ଭେମାନେ ମଧ୍ୟ ସେମାନଙ୍କ କଥା ସ୍ମରଣ କରିଥାଉଁ ଓ ସେମାନଙ୍କୁ ସ୍ୱପ୍ନରେ ଦର୍ଶନ କରିଥାଉଁ । ଏପରି ଏକ ଘଟଣା ଆମେ ସ୍ୱପ୍ନରେ ଦେଖୁଁ ଯେ, ଯାହାକି କେବଳ ଇହ ଜନ୍ମର ଘଟଣା । ସେପରି ଆମେ ଦେଖୁ ନାହିଁ ବରଂ ଜନ୍ମଜନ୍ମାନ୍ତରର ଘଟଣା ଆମକୁ ସ୍ୱପ୍ନରେ ଦେଖାଯାଇଥାଏ ଓ ସମୟ ସମୟରେ ସ୍ୱପ୍ନରେ ଏପରି ସ୍ପଷ୍ଟ ଘଟଣା ଦେଖାଯାଏ ଯେ, ଯାହାକି ସର୍ବଥା ସତ୍ୟ ହୋଇଥାଏ । କେହି ସ୍ୱପ୍ନରେ ଦେଖିଲା— ଅମୁକ ସ୍ଥାନରେ ମୋର ଏତେ ଧନ ମାଟିତଳେ ରକ୍ଷିତ ଅଛି । ଏହା ଜାଣି ସେ ସେହି ସ୍ଥାନକୁ ଖୋଳିବା ମାତ୍ରେ ସେହି ଧନ ସତକୁ ହାତ ମିଳିଯାଏ । ଏହା ନିଶ୍ଚିତ କଥା ଯେ, ଇହଜନ୍ମରେ ତ ସେ କେବେହେଲେ ଧନ ପୋତି ନଥିଲା; କିନ୍ତୁ ତାକୁ ଯେଉଁ ଧନ ମିଳିଲା, ତାହା ସେ ପୂର୍ବଜନ୍ମରେ ସେଠାରେ ପୋତିଥିଲା ।

ସୂତ କହିଲେ—"ମୁନିଗଣ ! ଏବେ ମୁଁ ଅନିରୁଦ୍ଧ ଓ ବାଣାସୁର କନ୍ୟା ଉଷାଙ୍କ ସମାଚାର କହୁଅଛି ଶୁଣନ୍ତୁ । ଭଗବାନ କଶ୍ୟପଙ୍କ ଔରସରୁ ଦୈତ୍ୟ ବଂଶରେ ହିରଣ୍ୟାକ୍ଷ ଓ ହିରଣ୍ୟକଶିପୁ ଏହି ଦୁଇ ବୀରପୁତ୍ର ଜନ୍ମଲାଭ କରିଥିଲେ । ଏ ଦୁଇପୁତ୍ର ଦିତିଙ୍କ ଗର୍ଭରୁ ଜନ୍ମ ହୋଇଥିବାରୁ ଏହାଙ୍କ ବଂଶକୁ ଦୈତ୍ୟବଂଶ କୁହାଯାଏ । ହିରଣ୍ୟକଶିପୁ ଭକ୍ତାଗ୍ରଗଣ୍ୟ ପରମ ଧାର୍ମିକ ପ୍ରହ୍ଲାଦ ଜନ୍ମ ଗ୍ରହଣ କରିଥିଲେ ଓ ପ୍ରହ୍ଲାଦଙ୍କ ପୁତ୍ର ବିରୋଚନ ଠାରୁ ଜଗତ ପ୍ରସିଦ୍ଧ ଦାନୀ ବଳି ଜନ୍ମ ଗ୍ରହଣ କରିଥିଲେ, ସେହି ବଳି ବିଷ୍ଣୁଙ୍କ ବାମନାବତାର କାଳରେ ତାଙ୍କୁ ସମସ୍ତ ଭୂମଣ୍ଡଳ ଦାନ କରିଥିଲେ । ଭୂମଣ୍ଡଳ ଦାନ କରିସାରି ସେ ଭଗବାନଙ୍କ ଆଜ୍ଞାରେ ନିଜ ପରିବାର ସହିତ ପାତାଳ ଲୋକରେ ଅବସ୍ଥାନ କଲେ । ମହାରାଜ ବଳିଙ୍କର ଶହେ ପୁତ୍ର ଥିଲେ । ସେମାନଙ୍କ ମଧ୍ୟରେ ବାଣ ନାମକ ପୁତ୍ର ଜ୍ୟେଷ୍ଠ ଓ ଶ୍ରେଷ୍ଠ ଥିଲା । ବାଣାସୁର ଶଙ୍କରଙ୍କର ପରମ ଭକ୍ତ ଥିଲା । ସେ ଉଦାର ଚରିତ, ବୁଦ୍ଧିମାନ୍, ସତ୍ୟ ପ୍ରତିଜ୍ଞ, ଦୃଢ଼ବ୍ରତ ଓ ପରମ ମନସ୍ୱୀ ଥିଲା । ସେ ସର୍ବଦା ଭଗବାନ ଶଙ୍କରଙ୍କ ପୂଜାର୍ଚ୍ଚନା କରୁଥିଲା । ପିତା ସୁତଳ ଲୋକକୁ ଗଲାପିବା ପରେ ସେ ଶଙ୍କରଙ୍କ ପୂଜାର୍ଚ୍ଚନା କରିବା ପାଇଁ ଏକା ପୃଥିବୀରେ ରହିଗଲା । ସେ ସମତଳ ଅଞ୍ଚଳ ଛାଡ଼ି ହିମାଳୟ ପର୍ବତ ଉପରେ ପାହାଡ଼ ମଧ୍ୟରେ ଶୋଣିତପୁର ନାମକ ଏକ ନଗର ବସାଇ ସେଠାରେ ବସବାସ କଲା । ଶିବ ତା ଭକ୍ତିରେ ଅତ୍ୟନ୍ତ ସନ୍ତୁଷ୍ଟ

ଥିଲେ । ଆଶୁତୋଷ ତ ସହଜେ ଭୋଳାନାଥ । ବାଣାସୁରର ସହସ୍ର ବାହୁଥିଲା । ସେ ତେଣେ ସହସ୍ର ହାତରେ ସହସ୍ର ବାଦ୍ୟ ବଜାଇ, ଅଦ୍ଭୁତ ତାଣ୍ଡବ ନୃତ୍ୟ କରି ଶଙ୍କରଙ୍କୁ ଅତ୍ୟନ୍ତ ସନ୍ତୁଷ୍ଟ କରିଦେଲା । ତାହାର ନୃତ୍ୟ, ଗାନ ଓ ବାଦ୍ୟରେ ପ୍ରସନ୍ନ ହୋଇ ଶଙ୍କର କହିଲେ— ରାଜନ ! ମୁଁ ତୁମ ଉପରେ ଅତ୍ୟନ୍ତ ସନ୍ତୁଷ୍ଟ । ତୁମେ ଯେଉଁ ବର ଇଚ୍ଛା ମାଗିନିଅ । ଭକ୍ତଙ୍କ ପାଖରେ ମୋର କିଛି ଅଦେୟ ନାହିଁ । ତୁମେ ଯାହା ମାଗିବ ମୁଁ ତାହା ଦେବ ।"

ବାଣାସୁର ହାତଯୋଡ଼ି କହିଲା—"ପ୍ରଭୋ ! ମୁଁ ତ ଆପଣଙ୍କୁ କେବଳ ମୋର ଆରାଧ୍ୟ ଦେବ ବୋଲି ଜ୍ଞାନ କରେ । ଆପଣ ହିଁ ମୋର ଭରସା, ଆପଣ ଯଦି ମୋ ଉପରେ ସନ୍ତୁଷ୍ଟ ହୋଇଛନ୍ତି, ତାହାହେଲେ ଆପଣ ଯେପରି କାଶୀରେ ରହୁଛନ୍ତି, ସେହିପରି ମୋ ପୁର ସମ୍ମୁଖରେ ରହି ମୋ ପୁରକୁ ଶତ୍ରୁମାନଙ୍କଠାରୁ ସର୍ବଦା ରକ୍ଷା କରନ୍ତୁ ।"

ଶିବ ତ ମହାଦାନୀ । ସେ ଦେବା ସମୟରେ ଆଗ ପଛ କିଛି ବିଚାର କରନ୍ତି ନାହିଁ । କହିଲେ ଠିକ୍ ଅଛି, ମୁଁ ସବୁଦିନ ପାଇଁ ତୁମ ପୁର ସମୀପରେ ରହିବି । ଯେପରି ମୁକ୍ତି କାଶୀ କ୍ଷେତ୍ର, ସେହିପରି ତୁମ ପୁରଦ୍ୱାରରେ "ଗୁପ୍ତ କାଶୀ" କ୍ଷେତ୍ର ତିଆରି କରାଇ ମୁଁ ରହିବି । ମୁଁ ରହିବା ଦ୍ୱାରା ତୁମ ପୁରକୁ କେହି ଧ୍ୱଂସ କରି ପାରିବେ ନାହିଁ ।"

ଏହି ବରଦାନ ପାଇ ବାଣାସୁର ପଶୁପତିଙ୍କ ପାଦପଦ୍ମରେ ପ୍ରଣାମ କଲା ଓ ନିର୍ଭୟ ହୋଇ ନିଜ ପାହାଡ଼ ପୁରରେ ରହିବାକୁ ଲାଗିଲା । ପୂର୍ବରୁ ସେ ପ୍ରତିଦିନ କେଦାରନାଥଙ୍କ ନିକଟକୁ ପୂଜା କରିବାକୁ ଆସୁଥିଲା, ଗୁପ୍ତକାଶୀ ହୋଇଯିବା ପରେ ସେ ସେଠାରେ ଶିବଙ୍କୁ ପୂଜା କରିବାକୁ ଲାଗିଲା । ସେ ତାହାର ନଗରକୁ ଖୁବ୍ ସୁଦୃଢ଼ କରି ଗଢ଼ିଥିଲା । ସହଜେ ତ ନଗରର ଚତୁର୍ଦ୍ଦିଗରେ ଉଚ୍ଚ ଉଚ୍ଚ ପାହାଡ଼ ପ୍ରାଚୀର ରୂପେ ଥିଲା । ଦ୍ୱିତୀୟରେ ତାହାର ନିକଟ କଣ୍ଠା ଭିତରେ କେଦାର ଗଙ୍ଗା ମନ୍ଦାକିନୀ ବହି ଯାଉଥିଲା । ତୃତୀୟରେ ଶିବ ସର୍ବଦା ତାହାର ନଗରକୁ ରକ୍ଷା କରୁଥିଲେ । ଏହିସବୁ କାରଣରୁ କୌଣସି ଶତ୍ରୁ ତା ପୁର ଉପରେ ଆକ୍ରମଣ କରିବାକୁ ସାହସ କରୁ ନଥିଲେ । ତାକୁ କେବେହେଲେ ଯୁଦ୍ଧ କରିବାକୁ ବି ପଡ଼ୁ ନଥିଲା । ବଳବାନଙ୍କୁ ଯେତେବେଳେ ଯୁଦ୍ଧ କରିବାର ସୁଯୋଗ ନ ମିଳେ, ସେତେବେଳ ପର୍ଯ୍ୟନ୍ତ ତାଙ୍କ ହାତ ଅବଶ ହୋଇ ପଡ଼ିଥାଏ । ତାଙ୍କ ଅଭିମାନ ହୁଏ ଯେ, ମୁଁ ଖୁବ୍ ବଳଶାଳୀ, ମୋ ଭୟରେ କେହି ହେଲେ ମୋର ସମ୍ମୁଖୀନ ହେଉନାହାନ୍ତି । ବାଣାସୁରର ମଧ୍ୟ ଏହିପରି ଅଭିମାନ ହୋଇଗଲା ।

ତେଣେ ସେ ନିଜ ବଳର ଅଭିମାନରେ ଗୁପ୍ତକାଶୀରେ ସ୍ଥିତ ଭଗବାନ ଶଙ୍କରଙ୍କୁ ଦର୍ଶନ କରିବାକୁ ଗଲା । ବିଧିବତ୍ ତାଙ୍କୁ ପୂଜା କଲା ଓ ପୂର୍ବସଦୃଶ ତାହାର

ଦେଦୀପ୍ୟମାନ ମୁକୁଟ ପରିଧାନ କରି ଶଙ୍କରଙ୍କ ପାଦପଦ୍ମରେ ପ୍ରଣାମ କରି କହିଲା— "ପ୍ରଭୋ ! ସମସ୍ତଙ୍କୁ ତ ଆପଣ ଦୁଇ ଦୁଇ ହାତ ଦେଇଛନ୍ତି, କିନ୍ତୁ ମୋତେ ଏକସଙ୍ଗେ ସହସ୍ର ହାତ କାହିଁକି ଦେଇଛନ୍ତି ?"

ଭଗବାନ୍ ବୃଷଭଧ୍ୱଜ କହିଲେ—"ରାଜନ୍ ! ତୁମେ ତ ମୋର ଭକ୍ତ । ତୁମର ସବୁ ଇଚ୍ଛା ମୁଁ ପୂର୍ଣ୍ଣ କରିଛି । ତୁମେ ସହସ୍ର ହସ୍ତରେ ସମସ୍ତ ସୁଖ ସମ୍ପତ୍ତି ଭୋଗ କରିପାରିବ ବୋଲି ପ୍ରସନ୍ନ ହୋଇ ମୁଁ ତୁମକୁ ସହସ୍ର ହସ୍ତ ପ୍ରଦାନ କରିଛି ।"

ବାଣାସୁର କହିଲା—"ହଁ ପ୍ରଭୋ ! ତାହା ତ ମୁଁ ଜାଣେ । ଆପଣ ଭକ୍ତବାଞ୍ଛା-କଳ୍ପତରୁ ଅଟନ୍ତି । ଆପଣ ସମସ୍ତ ଭୁବନର ଏକମାତ୍ର ଅଧୀଶ୍ୱର । ସମସ୍ତ ଲୋକର ଗୁରୁ ଓ ଆଶୁତୋଷ ଅଟନ୍ତି । ଯାହାଙ୍କର କାମନା କେବେହେଲେ କେଉଁଠାରେ ପୂର୍ଣ୍ଣ ହୁଏ ନାହିଁ, ସେମାନଙ୍କର ଆପଣଙ୍କୁ ଦର୍ଶନ କରିବାକୁ ଓ ଆପଣଙ୍କ ଶରଣ ନେବାକୁ ଇଚ୍ଛା ହୁଏ ଏବଂ ତାହା ଆପଣ ଶୀଘ୍ର ପୂର୍ଣ୍ଣ କରନ୍ତି ।"

ଶିବ ପ୍ରସନ୍ନ ହୋଇ କହିଲେ—"ହଁ, ଏବେ ତୁମର ଇଚ୍ଛା କ'ଣ ତାହା ପ୍ରକାଶ କର । ମୁଁ ତାହା ନିଶ୍ଚୟ ପୂର୍ଣ୍ଣ କରିବି ।"

ବାଣାସୁର ମିଥ୍ୟା ବିନୟ ପ୍ରଦର୍ଶନ ପୂର୍ବକ କହିଲା—"ଭଗବାନ ! ରାଜା-ମାନଙ୍କ ବାହୁମୂଳକର ଏକମାତ୍ର ଉଦ୍ଦେଶ୍ୟ ଯୁଦ୍ଧ । ଯେଉଁ ରାଜା ଯୁଦ୍ଧ କରେ ନାହିଁ, ତାହାର ବାହୁ ଥାଇ ବୃଥା । ଅନ୍ୟମାନଙ୍କର ତ ଦୁଇ ଦୁଇ ବାହୁ । କିନ୍ତୁ ମୋର ଏକ ସହସ୍ର । ଏଗୁଡ଼ିକର ତ କୌଣସି ଉପଯୋଗ ହେଉନାହିଁ, କେବଳ ଏଗୁଡ଼ିକର ବୋଝ ମୋତେ ବହନ କରିବାକୁ ପଡ଼ୁଛି । ମୁଁ ଯୁଦ୍ଧ କରିବା ଉଦ୍ଦେଶ୍ୟରେ ସମଗ୍ର ବିଶ୍ୱ ବୁଲି ଆସିଲି, କିନ୍ତୁ ମୋ ସହିତ ଯୁଦ୍ଧ କଲାଭଳି ବ୍ୟକ୍ତି କେଉଁଠାରେ ପାଇଲି ନାହିଁ । କେବଳ ଆପଣଙ୍କ ବ୍ୟତୀତ । ଆପଣ ହିଁ ଏକମାତ୍ର ସେହିପରି ବ୍ୟକ୍ତି, ଯେ କି ମୋ ସହିତ ଯୁଦ୍ଧ କରିବାକୁ ସକ୍ଷମ ।"

ଶିବ ତାହାର ଗର୍ବପୂର୍ଣ୍ଣ କଥାର ଅଭିପ୍ରାୟ ବୁଝିପାରିଲେ । ସେ ସଙ୍ଗେ ସଙ୍ଗେ ଜାଣିଗଲେ ଯେ ପିଲାଟାର ଅଭିମାନ ହୋଇଗଲା । ତେଣୁ ସେ ମୋ ସହିତ ଲଢ଼ିବାକୁ ଚାହୁଁଛି । ମୁଁ ଚାହିଁଲେ ତ ଏବେ ତାକୁ ବୁଦ୍ଧି ଶିଖାଇ ଦିଅନ୍ତି, ତାର ହାଡ଼, ମାଂସ ପେଶି ଦିଅନ୍ତି, କିନ୍ତୁ ସୁକୃତ ପୁରୁଷ ଅଙ୍ଗୀକାର କରି ଶେଷ ପର୍ଯ୍ୟନ୍ତ ତାହା ପାଳନ କରନ୍ତି ।" ଏହି ସମସ୍ତ କଥା ଚିନ୍ତା କରି ସେ କହିଲେ—"ରାଜନ୍ ! ଏବେ ତୁମ ମୋ ଭିତରେ ଯୁଦ୍ଧ ହେବା ଶୋଭନୀୟ ନୁହେଁ ।"

ବାଣାସୁର ଅଭିମାନଭରା ସ୍ୱରରେ କହିଲା—"ନା, ମହାରାଜ ! ଆପଣଙ୍କ ସହିତ ଯୁଦ୍ଧ କରିବାକୁ ମୁଁ ଆଗ୍ରହ ପ୍ରକାଶ କରୁନାହିଁ, କିନ୍ତୁ ଏବେ ଲଢ଼େଇ ନକରି ମୁଁ ସ୍ଥିର ହୋଇ ରହିପାରୁ ନାହିଁ । ମୋ ହାତ ଗଲୁ କରୁଛି । ଯେତେବେଳେ ମୋ ହାତ ଅଧିକ ଗଲୁ କରୁଛି, ସେତେବେଳେ ମୁଁ ହାତରେ ଗଦା ଧରି ନିଜ ସମାନ୍ତର ଯୋଦ୍ଧାଙ୍କୁ ଅନ୍ୱେଷଣ କରିବାକୁ ଘରୁ ବାହାରି ପଡ଼ୁଛି । ଯେତେବେଳେ ସାରା ପୃଥିବୀରେ କାହା ସହିତ ଯୁଦ୍ଧ କରିବାର ସୁଯୋଗ ନ ପାଉଛି, ସେତେବେଳେ ମୁଁ ଅଷ୍ଟ ଦିଗର ଦିଗ୍‌ଗଜଙ୍କ ସମ୍ମୁଖରେ ଥିବା ପର୍ବତଗୁଡ଼ିକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିବାକୁ ଯାଉଛି ଓ ସେମାନଙ୍କୁ କହୁଛି— "ହାଇ ! ତୁମ୍ଭେମାନେ ସମସ୍ତ ପୃଥିବୀକୁ ଧରି ରଖିଅଛ । ଆସ ମୋ ସହିତ ଯୁଦ୍ଧ କରିବ । ମୋର ଏହି କଥା ଶୁଣିବା ମାତ୍ରେ ସେମାନେ ଦୌଡ଼ି ପଳାଉଛନ୍ତି । ମୋ ସମ୍ମୁଖରେ ରହିବାକୁ ସେମାନଙ୍କର ସାହସ ହେଉ ନାହିଁ । ଏବେ ମୁଁ କ'ଣ କରିବି ? କିଏ ମୋ ହାତ ଗଲୁ ଦୂର କରିବ ?"

ଭଗବାନ ଭୋଳାନାଥ ଏହାଶୁଣି ରାଗିଗଲେ ଓ ତାକୁ ଧମକାଇ କହିଲେ— "ଆରେ ମୂଢ଼ ! ତୁ କାହିଁକି ଏତେ ଅଭିମାନ କରୁଛୁ ? ଦିନେ ତୋ ବାହୁ ସ୍ୱର୍ଗ ଲୋକ ଆସି ତୋ ପାଖରେ ପହଞ୍ଚିଥିଲେ । ମୁଁ ତ ତୋ ବାହୁ ସ୍ୱର୍ଗ ଦିଅନ୍ତି, କିନ୍ତୁ ତୋର ମୋର ସେବକ ସ୍ୱାମୀ ସମ୍ବନ୍ଧ । ସ୍ୱାମୀର ସେବକ ସହିତ ଯୁଦ୍ଧ କରିବା ଉଚିତ ନୁହେଁ । ତୁ ଆଉ କିଛିଦିନ ଧୈର୍ଯ୍ୟଧରି ରହିଯା । ଦିନେ ମୋ ଭଳି ଶରୀରର ଯୋଦ୍ଧା ଆସି ତୋତେ ଭେଟିବ ଓ ଯୁଦ୍ଧରେ ତୋତେ ଅସ୍ଥିର କରିଦେବ । ତୋର ବଢ଼ି ଯାଇଥିବା ଗର୍ବକୁ ସେ ଏକାଥରେ ଖର୍ବ କରିଦେବ ।"

ମୂଢ଼ ବାଣାସୁର ଏହା ଶୁଣି ପରମ ପ୍ରମୁଦିତ ହେଲା । ସେ ଏ କଥାରେ ଧ୍ୟାନ ବି ଦେଲନାହିଁ ଯେ, ଶିବ କ୍ରୁଦ୍ଧ ହୋଇ ଏହା କହୁଥିଲେ । ସେ ଆଗ୍ରହରେ ପଚାରିଲା— "ମହାରାଜ ! ମୋ ସଙ୍ଗେ ଯୁଦ୍ଧ କରିବାକୁ ଯେଉଁ ବୀର ଆସିବ, ସେ ମୋତେ କେଉଁଠି ଭେଟିବ ?"

ଶିବ କହିଲେ—"ସେ ତୋ ପୁରକୁ ଆସି ତୁ ଘରେ ବସିଥିବା ସମୟରେ ତୋତେ ଭେଟିବ ।"

ବାଣାସୁର ପଚାରିଲା—"ସେ କେବେ ଆସିବ ମହାରାଜ ! ମୁଁ କେତେ ଦିନ ତାକୁ ପ୍ରତୀକ୍ଷା କରିବି ?"

ଶିବ କହିଲେ—"ଯେତେବେଳେ ତୋ ଧ୍ୱଜା ଆପେ ଆପେ ଭାଙ୍ଗି ଯାଇ ତଳେ ପଡ଼ିଯିବ, ସେତେବେଳେ ତୁ ଜାଣିବୁ ଯେ, ତୋର ଶତ୍ରୁ ତୋ ପୁର ଉପରେ ଆକ୍ରମଣ କରୁଛି ।"

ଏହା ଶୁଣି ସେହି ମହାମତ ଅତି ପ୍ରସନ୍ନ ହେଲା । ସେ ଶିବଙ୍କ ପାଦପଦ୍ମରେ ପ୍ରଣାମ କରି ନିଜ ପୁରକୁ ଫେରି ଆସିଲା ଓ ନିଜର ସମବଳ ଶତ୍ରୁର ଆଗମନକୁ ଅତି ଉତ୍କଣ୍ଠାର ସହିତ ପ୍ରତୀକ୍ଷା କରିବାକୁ ଲାଗିଲା ।

ବାଣାସୁରର ଉଷା ନାମକ ଏକ ପରମ ସୁନ୍ଦରୀ କନ୍ୟା ଥିଲା । ସେ ଧୀରେ ଧୀରେ ବାଲ୍ୟାବସ୍ଥା ଅତିକ୍ରମ କରି ଯୌବନାବସ୍ଥାରେ ପଦାର୍ପଣ କରିଥିଲା । ବଡ଼ ବଡ଼ ରାଜାମାନଙ୍କର ଯେତେବେଳେ କନ୍ୟା ବଡ଼ ହୋଇଯାଏ, ସେତେବେଳେ କନ୍ୟାକୁ ଅନ୍ତଃପୁରରୁ ପୃଥକ କରି ଦିଆଯାଏ । ସେ ଅନ୍ୟ ଏକ ଅନ୍ତଃପୁରରେ ନିଜ ଦାସ ଦାସୀ ଓ ସଖୀଗଣଙ୍କ ଗହଣରେ ରହେ । ସେଠାକୁ ଅନ୍ୟମାନେ ପ୍ରବେଶ କରି ପାରନ୍ତି ନାହିଁ । ଜଣେ ବୃଦ୍ଧ ବିଶ୍ୱାସୀ ଦ୍ୱାରପାଳ ତା ଦ୍ୱାର ଦେଶରେ ଜଗିରହେ । ବଡ଼ ହେବା ପରେ ଉଷାର ଅନ୍ତଃପୁର ମଧ୍ୟ ପୃଥକ୍ ହୋଇଗଲା । ନଗ୍ରୀ ମଧ୍ୟରେ କେଦାର ଗଙ୍ଗା ମନ୍ଦାକିନୀର ଅପର ପାର୍ଶ୍ୱରେ ତା ପାଇଁ ଅନ୍ତଃପୁର ନିର୍ମାଣ କରାଯାଇଥିଲା । ସେଠାରେ ସେ ମନ୍ତ୍ରୀକନ୍ୟା-ମାନଙ୍କ ଗହଣରେ ରହିବାକୁ ଲାଗିଲା । ବୃଦ୍ଧ ଦ୍ୱାରପାଳ ଅତ୍ୟନ୍ତ ତତ୍ପରତାର ସହିତ ଅନ୍ତଃପୁର ରକ୍ଷା କରିବାକୁ ଲାଗିଲା ।

ଉଷା ଦିନେ ନିଜର ସୁନ୍ଦର ସୁକୋମଳ ଶଯ୍ୟାରେ ସୁନିଦ୍ରାରେ ଶୟନ କରିଥିବା ସମୟରେ ସହସା ଚମକ ପଡ଼ି ଚିତ୍କାର କରିବାକୁ ଲାଗିଲେ । ସେ ପାଟିକରି କହୁଥିଲା— "ହା, କାନ୍ତ ! ତୁମେ କେଉଁଠାରେ ! ମୋତେ ଛାଡ଼ି ତୁମେ କେଉଁଆଡ଼େ ଚାଲିଗଲ ?"

ତା ନିକଟସ୍ଥ ଶଯ୍ୟାରେ ଚିତ୍ରଲେଖା ନାମକ ତାହାର ଏକ ସଖୀ ଶୟନ କରିଥିଲା । ସେ ବାଣାସୁରର ମନ୍ତ୍ରୀ କୁମ୍ଭାଣ୍ଡର କନ୍ୟା । ସେ କୌଣସି ଯୋଗୀଙ୍କଠାରୁ ସମସ୍ତ ସିଦ୍ଧିଲାଭ କରିନେଇଥିଲା ଓ ଚିତ୍ର ଆଙ୍କିବାରେ ପ୍ରବୀଣା ଥିଲା । ସେ ନ ଦେଖିଥିବା ଲୋକକୁ ମଧ୍ୟ ଧ୍ୟାନ ବଳରେ ଶୀଘ୍ର ଅବିକଳ ଆଙ୍କି ଦେଇ ପାରୁଥିଲା । ଯେତେବେଳେ ସେ ରାଜକୁମାରୀଙ୍କର ଏ ପ୍ରକାର ଚିତ୍କାର ଶୁଣିଲା, ସଙ୍ଗେ ସଙ୍ଗେ ଶଯ୍ୟାରୁ ଉଠି ଉଷାଙ୍କ ପାଖକୁ ଗଲା । ଅନ୍ୟ ସଖୀମାନେ ମଧ୍ୟ ପାଟିଶୁଣି ସେଠାକୁ ଉଠି ଆସିଥିଲେ ଓ ଉଷାଙ୍କ ଚାରିପଟେ ଘେରି ଠିଆ ହୋଇଗଲେ । ଚିତ୍ରଲେଖା କହିଲା—"ରାଜକୁମାରୀ ! ତୁମକୁ କିଏ ଛାଡ଼ି ଚାଲିଗଲେ ? କାହାଙ୍କୁ ତୁମେ ଡାକୁଅଛ ? କାହାକୁ କାନ୍ତ ବୋଲି ସମ୍ବୋଧନ କରି ପାଟି କରୁଛ ? ତୁମେ ତ ଏ ପର୍ଯ୍ୟନ୍ତ ବିବାହ କରିନାହଁ, ପୁଣି ତୁମେ ଏପରି ପ୍ରଣୟ କଳ୍ପନା କିପରି କରୁଛ ?"

ଉଷା ଆଖି ମଳ ମଳ କରି ଶେଯରୁ ଉଠି ନିଜକୁ ସଖୀମାନଙ୍କ ଘେର ଭିତରେ ଦେଖି ଅତ୍ୟନ୍ତ ଲଜ୍ଜିତା ହେଲା । ସଖୀମାନେ ତାକୁ ପ୍ରଶ୍ନ ଉପରେ ପ୍ରଶ୍ନ କରିବାକୁ ଲାଗିଲେ । ସେମାନଙ୍କ ପ୍ରଶ୍ନ ଶୁଣି ସେ କହିଲା—"ମୋ ଚିତ୍ତ ବର୍ତ୍ତମାନ ସ୍ଥିର ନାହିଁ, ତୁମେ ସବୁ ଏଠାରୁ ଚାଲିଯାଅ । କେବଳ ଚିତ୍ରଲେଖା ହିଁ ମୋ ପାଖରେ ରହୁ ।"

ଯଥା ଆଜ୍ଞା, କହି ଅନ୍ୟ ସଖୀମାନେ ନିଜ ନିଜ ସ୍ଥାନକୁ ଚାଲିଗଲେ । କେବଳ ଚିତ୍ରଲେଖା ରାଜକୁମାରୀଙ୍କ ପାଖରେ ରହିଲା । ରାଜକୁମାରୀ ତାକୁ କହିଲା— ଭଉଣୀ ! ମୁଁ ଏବେ ଏକ ଅତି ଅଦ୍ଭୁତ ସ୍ୱପ୍ନ ଦେଖିଲି । ସେଥିପାଇଁ ଏ ପର୍ଯ୍ୟନ୍ତ ମୋ ଦେହ ଶୀତେଇ ଉଠୁଛି; ରୋମାଞ୍ଚ ହେଉଛି ଓ ଗ୍ଲାନି ଅନୁଭବ । ଶରୀରରେ କମ୍ପନ ବି ସୃଷ୍ଟି ହେଉଛି । ମୋର ଚିତ୍ତ ଚଞ୍ଚଳ ହୋଇ ଉଠୁଛି । ସେହି ସ୍ୱପ୍ନକଥା କହିବାକୁ ମୁଁ ଲଜ୍ଜାବୋଧ କରୁଛି ।"

ଚିତ୍ରଲେଖା ଅତି ସ୍ନେହରେ ପଚାରିଲା— କୁମାରୀ ! ଆମ ନିଜ ନିଜ ଭିତରେ ଲଜ୍ଜା କ'ଣ ? ତୁମେ ତୁମ ସ୍ୱପ୍ନ ବିଷୟରେ ମୋତେ କୁହ । ଯଦି ମୁଁ କିଛି ପ୍ରତିକାର କରିବାକୁ ସକ୍ଷମ ହେବି; ତାହାହେଲେ ତା'ହା'ର ଉପାୟ କରିବି ।"

ରାଜକୁମାରୀ ଲାଜ ଲାଜ ହୋଇ କହିଲା—"ଭଉଣୀ ! ମୁଁ ଏକ ଯୁବକଙ୍କୁ ସ୍ୱପ୍ନରେ ଦେଖିଲି । ତାଙ୍କର ବର୍ଣ୍ଣ ନବୀନ ଘନପରି ଶ୍ୟାମବର୍ଣ୍ଣ । ତାଙ୍କର ନେତ୍ର ବିକଶିତ କମଳ ସଦୃଶ ବଡ଼ ବଡ଼ । ସେ ସୁନ୍ଦର ଜାନୁଲମ୍ବିତ ପୀତବସ୍ତ୍ର ଆଚ୍ଛାଦିତ ହୋଇଥିଲେ । ବେଲଣା ସଦୃଶ ଗୋଲ ଗୋଲ ପୁଷ୍ଟଦେଶ, ବାହୁଦ୍ୱୟ ବିଶାଳ । ସେ ଏତେ ସୁନ୍ଦର ଓ ଆକର୍ଷକ ଯେ; ତାଙ୍କୁ ଦେଖିବା ମାତ୍ରେ ମୁଁ ନିଜକୁ ଭୁଲିଗଲି । ସେ ମୋତେ ଅତ୍ୟନ୍ତ ସୁଖ ପ୍ରଦାନ କଲେ । କିନ୍ତୁ ମଝିରେ ମୋତେ ଅତୃପ୍ତାବସ୍ଥାରେ ତ୍ୟାଗକରି କେଉଁଆଡ଼େ ଚାଲିଗଲେ ଯେ ତାହା ମୁଁ କହିପାରୁ ନାହିଁ । ଭଉଣୀ ! ମୁଁ ସତକଥା କହୁଛି ତାଙ୍କ ବିନା ମୁଁ ଜୀବନ ଧାରଣ କରି ପାରିବି ନାହିଁ । ଏହା ସାଧାରଣ ସ୍ୱପ୍ନ ନଥିଲା । ଏହା ଥିଲା ବାସ୍ତବ ଘଟଣା । ମୁଁ ତାଙ୍କୁ କାନ୍ତ କାନ୍ତ କହି ଡାକୁଛି, ତାଙ୍କୁ ଏବେ ଖୋଜିବାରେ ଲାଗିଛି ।"

ଚିତ୍ରଲେଖା ଉଲ୍ଲସିତ ହୋଇ ପଚାରିଲା—"ଏହା ଏପରି କେଉଁ ବଡ଼ କଥା ? ତ୍ରିଲୋକରେ ଯଦି ଏପରି କୌଣସି ପ୍ରସିଦ୍ଧ ପୁରୁଷ ଥାଆନ୍ତି, ତାହାହେଲେ ମୁଁ ଅତି ସହଜରେ ତୁମ ସହିତ ତାଙ୍କୁ ନିଶ୍ଚୟ ସାକ୍ଷାତ କରାଇ ଦେବି ।"

ଉଷା ସେହି ଶଯ୍ୟା ଉପରେ ଥାଇ ଦୀନତା ସ୍ୱରରେ ଚିତ୍ରଲେଖାକୁ କହିଲା— "ଭଉଣୀ ! ଯଦି ତୁମେ ମୋର ଏହି ମନୋରଥ ପୂର୍ଣ୍ଣ କରିପାରିବ, ତାହାହେଲେ ମୁଁ ଜୀବନରେ ତୁମର ଏ ଉପକାର ଭୁଲିପାରିବି ନାହିଁ । ସର୍ବଦା ତୁମର ଗୁଣଗାନ କରୁଥିବି ।"

ଚିତ୍ରଲେଖା ମମତାଭରା ସ୍ୱରରେ କହିଲା—"କୁମାରୀ ! ନିଜର ହେବାକୁ କ'ଣ ଏପରି କୁହାଯାଏ । ଆଚ୍ଛା, କୁହ ତ ଦେଖି, ସେ କୌଣସି ଦେବତା, ବା ମନୁଷ୍ୟ ଥିଲେ ?"

ଉଷା କହିଲା—"ମୁଁ ତ ନିର୍ଣ୍ଣୟ କରିପାରୁ ନାହିଁ ଯେ, ସେ ଦେବତା, ଯକ୍ଷ କି ଗନ୍ଧର୍ବ ଥିଲେ ? କିମ୍ବା ମନୁଷ୍ୟ କିମ୍ବା ଭଗବାନ ଥିଲେ ?"

ଚିତ୍ରଲେଖା କହିଲା—"କିଛି ଚିନ୍ତା ନାହିଁ, ମୁଁ ମୋର ପଟ୍ଟିକାରେ ତିନି ଲୋକର ପ୍ରସିଦ୍ଧ ପ୍ରସିଦ୍ଧ ପୁରୁଷଙ୍କର ଚିତ୍ର ଅଙ୍କନ କରୁଛି, ତୁମେ ଦେଖିକରି ନିଜର ପ୍ରିୟତମଙ୍କୁ ଚିହ୍ନାଇ ଦିଅ ।"

ଉଷା କହିଲା—"ଆଚ୍ଛା, ଠିକ୍ ଅଛି, ଚିତ୍ର ଆଙ୍କ ।" ଏହା ଶୁଣି ଚିତ୍ରଲେଖା ନିଜ ପଟ୍ଟିକାରେ ଚିତ୍ର ଆଙ୍କିବା ପାଇଁ ନେଇ ଆସିଲା । ତାହାର ପଟ୍ଟିକା ଏପରି ଥିଲା ଯେ, ଚିତ୍ର ଆଙ୍କିବାକୁ ଆରମ୍ଭ କରିବା ମାତ୍ରେ ତାହା ସମ୍ପୂର୍ଣ୍ଣ ହୋଇ ଯାଉଥିଲା । ତା' ପରେ ଦ୍ୱିମାତ୍ର ଆଙ୍କ, କିମ୍ବା ତ୍ରିମାତ୍ର ଆଙ୍କ ଯେତେ ଚିତ୍ର ଯେତେ ଇଚ୍ଛା ସେତେ ଅଙ୍କା-ଯାଇ ପାରିବ ।

ଚିତ୍ରଲେଖା ଚିତ୍ର ଆଙ୍କିବାରେ ଅତ୍ୟନ୍ତ ପ୍ରବୀଣା ଥିଲା, ସେ ସେହି ପଟ୍ଟିକା ଉପରେ ସର୍ବପ୍ରଥମେ ଇନ୍ଦ୍ର, ବରୁଣ, କୁବେର, ଯମ, ଅଶ୍ୱିନୀ କୁମାର ଓ ଅନ୍ୟାନ୍ୟ ମୁଖ୍ୟ ମୁଖ୍ୟ ଦେବତାଙ୍କର ଚିତ୍ର ଆଙ୍କିଲା । ଉଷା କହିଲା—"ଏ ସବୁ କେହି ନୁହନ୍ତି ।" ତାହାପରେ ସେ ବଡ଼ ବଡ଼ ଜନ୍ମଜାତ ସିଦ୍ଧମାନଙ୍କର ଚିତ୍ର ଆଙ୍କିଲା ! ସେମାନଙ୍କ ମଧ୍ୟରୁ କେହି ନୁହେଁ ବୋଲି ଉଷା କହିବାରୁ ସେ ଚାରଣ, ପନ୍ନଗ, ଦୈତ୍ୟ, ବିଦ୍ୟାଧର, ଯକ୍ଷ ରାକ୍ଷସ ଓ ଅନ୍ୟାନ୍ୟ ଉପଦେବଙ୍କର ଚିତ୍ର ଆଙ୍କିଲା । ଉଷା ସେ ସମସ୍ତ ଚିତ୍ର ଦେଖି ମୁଣ୍ଡ ହଲାଇଲା । ଚିତ୍ରଲେଖା ସଙ୍ଗେ ସଙ୍ଗେ ସେଗୁଡ଼ିକୁ ଲିଭାଇ ଦେଇ ପୁନଶ୍ଚ ଆଙ୍କିବାକୁ ଲାଗିଲା । ଚିତ୍ର ଆଙ୍କିବାରେ ତାଙ୍କୁ କିଛିଏ ହେଲେ ବି ପରିଶ୍ରମ କରିବାକୁ ପଡ଼ୁ ନଥିଲା । ସେ ମନରେ ଯାହାଙ୍କୁ ଧ୍ୟାନ କରୁଥିଲା, ସେ ତାହା ଦୃଷ୍ଟି ସମ୍ମୁଖକୁ ଆସିଯାଉଥିଲେ । ସେ ସଙ୍ଗେ ସଙ୍ଗେ ତୂଳୀଧର ତାହା ଆଙ୍କି ଦେଉଥିଲା । ତା ଚିତ୍ରକୁ ଯଦି ବିଶ୍ୱକର୍ମା ଦେଖିଥାଆନ୍ତେ, ତେବେ ଆଶ୍ଚର୍ଯ୍ୟ ହୋଇ ଯାଉଥାଆନ୍ତେ । ସେ ଯେତେବେଳେ ମୁଖ୍ୟ ମୁଖ୍ୟ ଦେବ ଓ ଉପଦେବ ଆଦିଙ୍କ ଚିତ୍ର ଆଙ୍କି ସାରିଲା, ଉଷା ତାକୁ କହିଲା— "ଭଉଣୀ ! ମୋତେ ପ୍ରତୀତ ହେଉଛି, ସେ ନରଶ୍ରେଷ୍ଠ କୌଣସି ପୃଥିବୀର ରାଜକୁମାର ଅଟନ୍ତି । ମୁଁ ତାଙ୍କ ପଲକ ପଡ଼ିବା ଦେଖିଛି ।"

ଚିତ୍ରଲେଖା ହସି ହସି କହିଲା—ଏ କଥା ତୁମେ ମୋତେ ଆଗରୁ ନ କହିଲ କାହିଁକି ? ଆଚ୍ଛା, ଠିକ୍ ଅଛି । ଏବେ ଦେଖ ମୁଁ ପୃଥିବୀର ସମସ୍ତ ମୁଖ୍ୟ ମୁଖ୍ୟ ରାଜା ଓ ରାଜକୁମାରଙ୍କ ଚିତ୍ର ଆଙ୍କୁଛି ।" ଏହା କହି ସେ ସର୍ବପ୍ରଥମେ ସୂର୍ଯ୍ୟବଂଶର ଯେତେ ପ୍ରସିଦ୍ଧ ରାଜା ଓ ରାଜକୁମାର ଥିଲେ ସମସ୍ତଙ୍କ ଚିତ୍ର ଆଙ୍କିଲା । ଏହା ପରେ ଚନ୍ଦ୍ରବଂଶର, ଯାଦବମାନଙ୍କ ମଧ୍ୟରୁ ଉଗ୍ରସେନ ଓ ବସୁଦେବ ଆଦିଙ୍କର ଚିତ୍ର ଆଙ୍କିଲା । ଏହା ଦେଖି

ଉଷାର ଆଖି କ୍ରମେ ଚମକିବାରେ ଲାଗିଲା ! ଶେଷରେ ସେ ବଳରାମ ଓ ଶ୍ରୀକୃଷ୍ଣଙ୍କର ଚିତ୍ର ଆଙ୍କିଲା । ଭଗବାନ ଶ୍ରୀକୃଷ୍ଣଙ୍କର ଚିତ୍ରକୁ ଦେଖି ସେ ପରମ ଲଜ୍ଜିତା ହେଲା ଓ ମୁଣ୍ଡ ତଳକୁ କଲା । ଚିତ୍ରଲେଖା ଏହାଦେଖି ପଚାରିଲା—"ଏହି କି ତାଙ୍କର ଚିତ୍ର ? "ଉଷା ଲାଜକରି ମୁଣ୍ଡ ହଲାଇଲା । ଚିତ୍ରଲେଖା ଏହା ପରେ ପ୍ରଦ୍ୟୁମ୍ନଙ୍କ ଚିତ୍ର ଆଙ୍କିଲା । ତାହା ଦେଖି ଉଷା କହିଲା—"ମୋର ଏ ଚିତ୍ର ଦେଖି ସନ୍ଦେହ ହେଉଛି, ରୂପ ଆକୃତିରେ ତ ସେ ଏହିପରି ଥିଲେ; କିନ୍ତୁ ଏ ନୁହନ୍ତି ।" ତାହା ପରେ ଚିତ୍ରଲେଖା ଅନିରୁଦ୍ଧଙ୍କ ଚିତ୍ର ଆଙ୍କିଲା । ତାହା ଦେଖିବା ମାତ୍ରେ ଉଷା ଚମକି ପଡ଼ିଲା ଓ ସଙ୍ଗେ ସଙ୍ଗେ ତା ମୁହଁରୁ ବାହାରି ପଡ଼ିଲା, ହଁ ଏ ସେହି ରାଜକୁମାର । ଏହାଙ୍କୁ ମୁଁ ମୋର କାନ୍ତବୋଲି କହିଥିଲି । ଏହି ହିଁ ମୋ ଚିତ୍ତ ଚୋର ଅଟନ୍ତି ।

ଏହା ଶୁଣି ଚିତ୍ରଲେଖା ଚିତ୍ର ଆଙ୍କିବା ବନ୍ଦ କରିଦେଲା ଓ କହିଲା—ଏ ତ ହେଉଛନ୍ତି ଭଗବାନ ଶ୍ରୀକୃଷ୍ଣଙ୍କର ପୌତ୍ର ଓ କାମଦେବ ଅବତାର ପ୍ରଦ୍ୟୁମ୍ନଙ୍କ ପ୍ରଥମ ପୁତ୍ର । ଏହାଙ୍କୁ ପାଇବା ତ ଅତ୍ୟନ୍ତ କଠିନ ବ୍ୟାପାର । ତୁମ ପୁର ଯେପରି ପର୍ବତ ଘେର ମଧ୍ୟରେ ରହିଛି, ଏହାଙ୍କ ପୁରୀ ମଧ୍ୟ ସେହିପରି ସମୁଦ୍ର ଘେର ମଧ୍ୟରେ ରହିଛି । ତୁମ ପୁରକୁ ଯେପରି ପଶୁପତି ବିଶ୍ୱନାଥ ରକ୍ଷା କରୁଛନ୍ତି, ଏହାଙ୍କ ପୁରକୁ ସେହିପରି ପ୍ରେମାବତାର ଶ୍ରୀକୃଷ୍ଣ ଭଗବାନ ରକ୍ଷା କରୁଛନ୍ତି । ଶିବଙ୍କର ବିନା ଇଚ୍ଛାରେ ତୁମ ପୁରକୁ ଯେପରି ପବନ ବି ପ୍ରବେଶ କରିପାରେ ନାହିଁ, ଏହାଙ୍କ ପୁରୀକୁ ସେହିପରି ମନ ବି ଯାଇପାରେ ନାହିଁ ।"

ଉଷା କରୁଣ ସ୍ୱରରେ କହିଲା—"ତାହାହେଲେ କ'ଣ ତୁମେ ମୋର ଜୀବନ ଶେଷ କରିଦେବାକୁ ଉଦ୍ୟମ ହେବ ବୋଲି ଭାବୁଛ ? ଏ ପୁରୁଷଙ୍କୁ ମୁଁ ଯଦି ନପାଏ, ତାହାହେଲେ ଜୀବିତ ରହିପାରିବି ନାହିଁ ।" ଏହା କହୁ କହୁ ସେ ମୂର୍ଚ୍ଛିତ ହୋଇଗଲା ।

ଚିତ୍ରଲେଖା ତାକୁ ଧୈର୍ଯ୍ୟ ଧରିବାକୁ କହି କହିଲା—"ରାଜକୁମାରୀ ! ତୁମେ ଅଦୌ ଅଧୀର ହୁଅନା । ମୁଁ ତୁମ ମନୋରଥ ପୂର୍ଣ୍ଣ କରିବି । ତୁମେ ଶୀଘ୍ର ତୁମ କାନ୍ତଙ୍କୁ ଏହିଠାରେ ଦେଖିବ । ମୁଁ ମୋର ଯୋଗବଳରେ ଏହି ପ୍ରଦ୍ୟୁମ୍ନ ଆନନ୍ଦ ବର୍ଦ୍ଧନ ଅନିରୁଦ୍ଧଙ୍କୁ ଏଠାକୁ ନେଇ ଆସିବି ।"

ସୂତ କହିଲେ—"ମୁନିଗଣ ! ଏହା କହି ଯୋଗିନୀ ଚିତ୍ରଲେଖା ଆକାଶରେ ଉଡ଼ି ଉଡ଼ି ଯାଇ କିଛି ସମୟ ମଧ୍ୟରେ ଦ୍ୱାରକାପୁରୀରେ ପହଞ୍ଚିଗଲା । ଏହାପରେ ଯେପରି ସେ ଅନିରୁଦ୍ଧଙ୍କୁ ଉଡ଼ାଇ ଆଣିଲା, ସେହି କଥା ପ୍ରସଙ୍ଗ ମୁଁ ପରବର୍ତ୍ତୀ ଅଧ୍ୟାୟରେ ଆପଣମାନଙ୍କୁ କହିବି ।

## ଛପ୍ପୟ

ଉଷା ବୋଲୀ—"ନନ୍ଦନ ! ସ୍ୱପ୍ନ ମହିଁ ନର ଇକ ଆୟୋ ।
ମନ ମେରେ ଲୈ ଗୟୋ ତନକ ଅଧରାମୃତ ପ୍ୟାୟୋ ॥
ଜୋ ନ ମିଲେ ବହ ବୀର ଧୀର ହୃଦୟ ମହିଁ ନହିଁ ଧାରୁଁ ।
ତଜୁଁ ପ୍ରାନ ବିଷ ଖାଇ ଅଗିନ ମହିଁ ତନ କୁଁ ଜାରୁଁ ॥
ଚିତ୍ର ଚିତ୍ରଲେଖା ଲଖେ, ନର କିଂନର ସୁର ଅସୁର ବର ।
ଲଖି ଯଦୁବର ଅନିରୁଦ୍ଧ କୁଁ ବୋଲୀ—'ଜିହି ମମ ଚିତହର ॥



# ଚିତ୍ରଲେଖା ଦ୍ୱାରା ଅନିରୁଦ୍ଧ ଶୂନ୍ୟେ ଶୂନ୍ୟେ ଆନୟନ

ଚିତ୍ରଲେଖା ତମାଜ୍ଞାୟ ପୌତ୍ରଂ କୃଷ୍ଣସ୍ୟ ଯୋଗିନୀ ।
ଯଯୌ ବିହାୟସା ରାଜନ୍ ଦ୍ୱାରକାଂ କୃଷ୍ଣ ପାଳିତାମ୍ ॥
ତତ୍ର ସୁପ୍ତଂ ସୁପର୍ଯ୍ୟଙ୍କେ ପ୍ରାଦ୍ୟୁମ୍ନିଂ ଯୋଗମାସ୍ଥିତା ।
ଗୃହୀତ୍ୱା ଶୋଣିତପୁରଂ ସଖ୍ୟୈ ପ୍ରିୟମଦର୍ଶୟତ୍ ॥ *

(ଶ୍ରୀ. ଭା. ୧୦ ସ୍କ ୬୨ ଅ. ୨୨-୨୩ ଶ୍ଲୋକ)

---

* ଚନ୍ଦ୍ରଲେଖା ତ ସେହି ଦଣ୍ଡି । ବେଗେ ଦ୍ୱାରକାପୁରେ ପଶି ॥
ଅନିରୁଦ୍ଧର ନିଦ୍ରା କାଳେ । ହରିଲା ଯୋଗମାୟା ବଳେ ॥
ଶଯ୍ୟା ସହିତେ ଶୂନ୍ୟ ପଥେ । ଘେନିଣ ଚଳିଲା ତ୍ୱରିତେ ॥
ଗଗନମାର୍ଗେ ଅଦ୍ଧ ଖଣେ । ପ୍ରବେଶି ଶୋଣିତ ନଗରେ ॥
ଉଷା ଶୟନେ ଉରଣନ । ଜଗଇ ତୋଷ କଲା ମନ ॥
[ ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୬୨ ଅ ]

## ଛପ୍ପୟ

ସମ୍ମୁଖି କୃଷ୍ଣଙ୍କ ପୌତ୍ର ଚିତ୍ରଲେଖା ଧବସଇ ।
ଯୋଗ ଶକ୍ତି ତେଣିଂ ଉଡ଼ୀ ଦ୍ୱାରକା ଛନ ମହିଁ ଆଇ ॥
ଦେଖେ ଶ୍ରୀ ଅନିରୁଦ୍ଧ ସୁଖଦ ଶୈୟ୍ୟା ପେ ସୋବତ ।
ଶଶି ସମ କରତ ପ୍ରକାଶ କାମିନିନି କେ ମନ ମୋହତ ॥
ବିକଲ ପ୍ରିୟା କେ ପ୍ରେମ ମହିଁ, ଲଖି ବାଲ ହର୍ଷିତ ଭଇ ॥
ଶୈୟ୍ୟା ସହିତ ଉଠାଇ ତେହିଂ, ଶୋଣିତପୁର ମହିଁ ଲେ ଗଇ ॥

ପୂର୍ବ ଜନ୍ମ ପ୍ରଭାବରୁ ପ୍ରେମ ସମ୍ବନ୍ଧ ଉଭୟ ଯୁବକ ଯୁବତୀଙ୍କ ହୃଦୟରେ ଏକସଙ୍ଗେ ଜାଗ୍ରତ ହୁଏ ଓ ପ୍ରାରବ୍ଧ ସେହି ଦୁଇ ଜଣଙ୍କୁ ଏକତ୍ରିତ କରିଦିଏ । ଯେପର୍ଯ୍ୟନ୍ତ ଯାହାର ଯାହା ସହିତ ମିଳନ ସମ୍ବନ୍ଧ ପୂର୍ବ ନିର୍ଦ୍ଧାରିତ ହୋଇଥାଏ, ସେପର୍ଯ୍ୟନ୍ତ ସେ ତାହା ସହିତ ରହେ । ସମୟ ଅତିକ୍ରମ ହୋଇଗଲେ ସେ ପୃଥକ ହୋଇଯାଏ । ସମୟ ନ ଆସିବା ପର୍ଯ୍ୟନ୍ତ କାହାରି କାହା ସହିତ ମିଳନ ହୋଇପାରେ ନାହିଁ କିମ୍ବା ସମୟ ଚାଲିଯିବା ପରେ ଆଉ ଅଧିକ ସମୟ କେହି ତାହା ପାଖରେ ରହିପାରେ ନାହିଁ । ସମସ୍ତଙ୍କ ପାଇଁ ସମୟ ନିର୍ଦ୍ଧାରିତ ହୋଇଅଛି । ଯେତେବେଳେ ଯାହାର ମିଳନ ସମୟ ଆସେ, ସେତେବେଳେ ତାକୁ ହାତ ପାଦ ବାନ୍ଧି ବନ୍ଦୀକରି ରଖାଯାଏ, ତେବେ ବି ସେ ନିଜର ପ୍ରେମୀ ସହିତ ମିଳିତ ହେବ ହିଁ ହେବ । ସମୟ ନ ଆସିବା ପର୍ଯ୍ୟନ୍ତ ଗୋଟିଏ ଘରେ ଏକତ୍ର ରହୁଥିଲେ ମଧ୍ୟ ମିଳନ ସମ୍ଭବ ହେବ ନାହିଁ । ସଂଯୋଗ ବିଯୋଗ ଏ ସବୁ ପୂର୍ବ ଜନ୍ମର ସଂସ୍କାର ଉପରେ ନିର୍ଭର କରେ ।

ସୂତ କହିଲେ—ମୁନିଗଣ ! ଚିତ୍ରଲେଖା ଯେତେବେଳେ ବୁଝିପାରିଲା ଯେ, ମୋ ସଖୀ ଉଷାର ଯାହାଙ୍କଠାରେ ଆଶକ୍ତି, ସେ ହେଉଛନ୍ତି ଭଗବାନ ଶ୍ରୀକୃଷ୍ଣଙ୍କର ନାତି । ତେଣୁ ସେ ଯୋଗବଳରେ ଆକାଶ ମାର୍ଗରେ ଉଡ଼ି ଉଡ଼ି ଯାଇ ଦ୍ୱାରକା ପୁରୀରେ ପହଞ୍ଚିଲେ । ସେଠାରେ ସେ ସୁନ୍ଦର ସଜ୍ଜିତ ସୁଖଦ ଶଯ୍ୟା ଉପରେ ଶୟନ କରିଥିବା ଅନିରୁଦ୍ଧଙ୍କୁ ଦେଖିଲେ । ତାଙ୍କର ସର୍ବାଙ୍ଗ ସୁଗନ୍ଧିତ ପୁଷ୍ପମାଳା ଓ ଦିବ୍ୟ ଚନ୍ଦନ ଦ୍ୱାରା ଶୋଭା ପାଉଥିଲା । ସେ ସୁନ୍ଦର ରେଶମୀ ପୀତବାସ ପରିଧାନ କରିଥିଲେ । ଦିବ୍ୟ ପୁଷ୍ପ, ଚନ୍ଦନ ତଥା ଅନ୍ୟାନ୍ୟ ସୁଗନ୍ଧିତ ଦ୍ରବ୍ୟ ଦ୍ୱାରା ତାଙ୍କ ଶଯ୍ୟା ସୁବାସିତ ହେଉଥିଲା । ସେ କାହାକୁ ଚିନ୍ତା କରି ଅର୍ଦ୍ଧସୁପ୍ତାବସ୍ଥାରେ ପ୍ରଳାପ କରୁଥିଲେ ଓ ବିକଳ ହୋଇ ଛଟପଟ ହେଉଥିଲେ । ଚିତ୍ରଲେଖା ତାଙ୍କର ଆକୃତି ପ୍ରକୃତିରୁ ଅନୁଭବ କଲା, ଇଏ ମଧ୍ୟ କାହାରି ପାଇଁ ବ୍ୟାକୁଳ ହେଉଅଛନ୍ତି । ସମ୍ଭବତଃ ଏ ମଧ୍ୟ ଉଷାଙ୍କ ପାଇଁ ବିକଳ ହେଉଛନ୍ତି ।"

ଏହା ଚିନ୍ତା କରି ସେ ଶଯ୍ୟା ସହିତ ଅନିରୁଦ୍ଧଙ୍କୁ ଉଠାଇ ନେଲେ ଓ ତାଙ୍କୁ ଆକାଶ ମାର୍ଗରେ ଉଡ଼ାଇ ନେଇ ଶୋଣିତପୁରରେ ଯାଇ ପହଞ୍ଚିଲା । ଯଦି ଚ ଗଣେଶ ଦ୍ୱାର-ଦେଶରେ ବିରାଜମାନ ଥିଲେ, ଶିବ ସେହି ପୁରକୁ ରକ୍ଷା କରୁଥିଲେ ଓ ପବନ ମଧ୍ୟ ତାଙ୍କ ବିନା ଅନୁମତିରେ ପୁରି ମଧ୍ୟରେ ପ୍ରବେଶ କରି ପାରୁ ନଥିଲା, ତଥାପି ସେ ଚିତ୍ରଲେଖାର ଯିବା ପଥରେ ବିଘ୍ନ ସୃଷ୍ଟି କଲେ ନାହିଁ । ଚିତ୍ରଲେଖା କୁଶଳରେ ଅନିରୁଦ୍ଧଙ୍କୁ ନେଇ ଉଷାଙ୍କ ଅନ୍ତଃପୁରରେ ପହଞ୍ଚିଲା ।

ଉଷା ସେତେବେଳେ ଅନିରୁଦ୍ଧଙ୍କ ଚିନ୍ତାରେ ବ୍ୟାକୁଳ ହୋଇପଡ଼ିଥିଲେ । ତାଙ୍କର ଶରୀରଜ୍ଞାନ ନଥିଲା । ସେ ଦୀର୍ଘଶ୍ୱାସ ନେଉଥିଲେ । ଚିତ୍ରଲେଖା ତାଙ୍କୁ ଚେତା କରାଇଲା ଓ ଅନିରୁଦ୍ଧଙ୍କ ସହିତ ମିଳିତ କରାଇଲା । ଉଷା ଅନିରୁଦ୍ଧଙ୍କୁ ଦେଖି ପରମ ଆନନ୍ଦ ଅନୁଭବ କଲେ ଓ ଅନିରୁଦ୍ଧ ନିଜର ପ୍ରିୟାଙ୍କୁ ଚିହ୍ନି ପାରି ପରମ ପ୍ରମୁଦିତ ହେଲେ । ଉଭୟେ ପରସ୍ପର ପରସ୍ପରକୁ ଆପଣାର କରିନେଲେ । ସେ ଦୁହେଁ ଶାସ୍ତ୍ର ବିଧିରେ ଗାନ୍ଧର୍ବ ବିବାହ କରିନେଲେ ଓ ଉଭୟେ ସୁଖପୂର୍ବକ ରହି ଆନନ୍ଦରେ ବିହାର କରିବାକୁ ଲାଗିଲେ ।”

ଶୌନକ ପଚାରିଲେ—“ହେ ସୂତ ! ଏ କଥାରେ ଆମ୍ଭମାନଙ୍କର କିଛି ଶଙ୍କା ଉଠୁଛି । ପ୍ରଥମ ଶଙ୍କା ହେଲା, ସର୍ବଜ୍ଞ ଭଗବାନ ଦ୍ୱାରକାରେ ରହିଥିବା ସମୟରେ ଚିତ୍ରଲେଖାର କ'ଣ ଏପରି ସାମର୍ଥ୍ୟ ଥିଲା, ଯେ କି ସେ ରାତାରାତି ତାଙ୍କ ପୌତ୍ରକୁ ଉଡ଼ାଇ ଆଣି ପାରିଲା ? ଦ୍ୱିତୀୟ ଶଙ୍କା ଏହି ଯେ, ଆପଣ କହିଲେ କି, ଅନିରୁଦ୍ଧ ନିଜର ପ୍ରିୟାଙ୍କୁ ଚିହ୍ନି ପାରିଲେ । ଅନିରୁଦ୍ଧ ତ ଏ ପର୍ଯ୍ୟନ୍ତ ଉଷାଙ୍କୁ କେବେହେଲେ ଦେଖି ନଥିଲେ, ତାଙ୍କୁ ପୁଣି ଚିହ୍ନି ପାରିଲେ କିପରି ? ତୃତୀୟ ଶଙ୍କା ହେଲା—ଯେତେବେଳେ ସ୍ୱୟଂ ପଶୁପତି ବାଣାସୁର ପୁରର ରକ୍ଷକ ଥିଲେ, ପାର୍ବତୀ ଓ ଗଣେଶ ସେଠାରେ ଉପସ୍ଥିତ ଥିଲେ, ସେତେବେଳେ ଚିତ୍ରଲେଖା ଲୁଚି ଲୁଚି ଅନିରୁଦ୍ଧଙ୍କୁ କିପରି ନେଇ ଆସିଲା ? ଭଗବାନ ପଶୁପତି ତାକୁ ଏପରି ଅଧର୍ମ କାର୍ଯ୍ୟ କରିବାରେ ବାଧା ଦେଲେ ନାହିଁ କାହିଁକି ? ବାଣାସୁରକୁ ଏହାର ସୂଚନା ନ ଦେଲେ କାହିଁକି ?

ଏହା ଶୁଣି ସୂତ କହିଲେ—“ମହାରାଜ ! ଆପଣଙ୍କ ଏହି ତିନୋଟି ପ୍ରଶ୍ନର ଉତ୍ତର ମୁଁ ସଂକ୍ଷେପରେ ଦେଉଛି । ଭଗବାନଙ୍କର ଇଚ୍ଛା ବିନା ପତ୍ରଟିଏ ବି ହଲି ପାରେ ନାହିଁ । ଭଗବାନ ଯେଉଁ କାର୍ଯ୍ୟ ହେବାକୁ ଚାହାନ୍ତି ତାକୁ କେହି ଅଟକାଇ ପାରେ ନାହିଁ । ଦ୍ୱାରକାପୁରି ଓ ଶୋଣିତ ପୁରରେ ଭଗବାନ ଶ୍ରୀକୃଷ୍ଣ ଓ ଭଗବାନ ବିଶ୍ୱନାଥଙ୍କ ପ୍ରତିରୋଧ ନ କରିବାର ଏହା ହିଁ କାରଣ ! ଯେତେବେଳେ ବିଷ୍ଣୁ ଓ ଶମ୍ଭୁ ଉଭୟେ ମିଳି ଯାଆନ୍ତି, ସେତେବେଳେ ତ ଅକ୍ଳେଶରେ ସୃଷ୍ଟି ହୋଇଥାଏ । ବାସ୍ତବରେ ଏହା ଶଙ୍କର ଓ ସର୍ବଜ୍ଞ ଶ୍ରୀକୃଷ୍ଣଙ୍କ ଇଚ୍ଛାରେ ହିଁ ହୋଇଥିଲା । ଏ ସମ୍ବନ୍ଧରେ ଏକ ପୌରାଣିକ

କାହାଣୀ ଅଛି । ତାହା ମୁଁ ଆପଣମାନଙ୍କ ଆଗରେ କହୁଛି । ତାହା ଶୁଣିବା ମାତେ ଆପଣଙ୍କର ସମସ୍ତ ଶଙ୍କା ସମାଧାନ ହୋଇଯିବ ।

ଦିନେ ହିମାଳୟର ପୁଣ୍ୟ ଶିଖରରେ ପାର୍ବତୀଙ୍କ ସହିତ ଶିବ ସରସ କ୍ରୀଡ଼ା କରୁଥିଲେ, ସେହି ସମୟରେ ଦୈବ ଯୋଗକୁ ସଖୀଗଣଙ୍କ ସହିତ ଉପବନରେ ଭ୍ରମଣ କରୁଥିବା ବାଣାତନୟା ଉଷା ସେଠାରେ ଯାଇ ପହଞ୍ଚିଲା । ସେଠାରେ କୌଣସି ପୁରୁଷ ପ୍ରବେଶ କରିପାରୁ ନଥିଲେ, କାରଣ ତାହା ଥିଲା ସ୍ତ୍ରୀ ଲୋକମାନଙ୍କର କ୍ରୀଡ଼ାସ୍ଥଳୀ । କିନ୍ତୁ ଶଙ୍କର ତ ସମଗ୍ର କେଦାରଖଣ୍ଡର ଈଶ୍ୱର, ସେହି ସ୍ଥାନଟି ତାଙ୍କର କ୍ରୀଡ଼ା ଭୂମି, ତାଙ୍କୁ ବା କିଏ ଅଟକାଇ ପାରନ୍ତା ? ଉଷା ଯେତେବେଳେ ଶିବା ଓ ଶିବଙ୍କର ରମଣ ଦେଖିଲା, ସେତେବେଳେ ତା ମନରେ ପତିପ୍ରାପ୍ତିର ଇଚ୍ଛା ହେଲା । ସେ ଅତି ସୁନ୍ଦର ପତି ଲାଭକରିବା ପାଇଁ ଜଗଦମ୍ବିକା ଭବାନୀ ଶିବାଙ୍କୁ ଆରାଧନା କଲେ । ଭଗବତୀ ପାର୍ବତୀ ଉଷାର ଭକ୍ତିରେ ପ୍ରସନ୍ନ ହେଲେ ଓ ତାଙ୍କୁ ବର ଦେଲେ—"ତୋତେ ଅତି ସୁନ୍ଦର ପତି ଶୀଘ୍ର ଶୀଘ୍ର ମିଳିଯିବ ।"

ପାର୍ବତୀ ଜାଣିଥିଲେ ଯେ, ସାକ୍ଷାତ୍ କାମଦେବଙ୍କ ପୁତ୍ର ଅନିରୁଦ୍ଧ ଅତ୍ୟନ୍ତ ସୁନ୍ଦର । ତାଙ୍କ ସହିତ ଏହାର ବିବାହ ହେବା ନିଶ୍ଚିତ । କିନ୍ତୁ ବାଣାସୁରର କିଲ୍ଲା ଏପରି ଦୁର୍ଭେଦ୍ୟ ଯେ, ଏଥିରେ କାହାର ପ୍ରବେଶ ସମ୍ଭବ ନୁହେଁ । ପୁନଶ୍ଚ ସ୍ୱୟଂ ଶିବ ଏହି ପୁରକୁ ରକ୍ଷା କରୁଛନ୍ତି । ଏଥିପାଇଁ କୌଣସି ଉପାୟ କରିବା ଦରକାର । ଏହା ଭାବି ସେ ଅନିରୁଦ୍ଧଙ୍କୁ ସ୍ୱପ୍ନ ଦେଖାଇଦେଲେ ।

ଦିନେ ଅନିରୁଦ୍ଧ ନିଜର ସୁସଜ୍ଜିତ ଶଯ୍ୟାରେ ଶୟନ କରିଥିବା ସମୟରେ ସ୍ୱପ୍ନ ଦେଖିଲେ ଯେ, ଗୋଟିଏ ଅତି ସୁନ୍ଦରୀ ସୁକୁମାରୀ ରାଜକୁମାରୀ ତାଙ୍କ ଶଯ୍ୟା ନିକଟରେ ଠିଆ ହୋଇଛି । ତାହାର ସର୍ବାଙ୍ଗ ସୁବାସିତ, ଅଙ୍ଗ ପ୍ରତ୍ୟଙ୍ଗରୁ ସୌନ୍ଦର୍ଯ୍ୟ ଝରିପଡୁଛି । ସେ ଅମୂଲ୍ୟ ରତ୍ନାଭରଣରେ ବିଭୂଷିତା, ମଣିମୟ କୁଣ୍ଡଳର କାନ୍ତିରେ ତାହାର ଗଣ୍ଡସ୍ଥଳ ଉଲ୍ଲସିତ ହେଉଛି, ସେ ଅତି ସୂକ୍ଷ୍ମ ବସ୍ତ୍ର ପରିଧାନ କରିଛି, ପାଦରେ ନୂପୁରର ଧ୍ୱନି, କବରୀରେ କୁସୁମର ମାଳା, ମସ୍ତକରେ କସ୍ତୁରୀ, କୁଙ୍କୁମ ଯୁକ୍ତ ତିଳକ ଶୋଭାପାଉଛି, କଜ୍ଜଳଗାରରେ ସୁଶୋଭିତ ଅପଲକ ନୟନରେ ସେ ଚାହିଁ ରହିଛି । ତାହାର ନଖ, ପାଦତଳ ଆଳତାରଙ୍ଗରେ ରଞ୍ଜିତ । ସେ ଅନୁରାଗ-ଭରା ଦୃଷ୍ଟିରେ ଲଜ୍ଜାର ସହିତ ଅନିରୁଦ୍ଧଙ୍କୁ ଦେଖୁଛି ।

ଅନିରୁଦ୍ଧ ତାଙ୍କୁ ପଚାରିଲେ—"ଦେବୀ ! ତୁମେ କିଏ ? ତୁମେ ସ୍ୱର୍ଗର ଅପ୍ସରା ନା ମର୍ତ୍ତ୍ୟର ମାନବୀ କିମ୍ବା ବିଦ୍ୟାଧର କିଂପୁରୁଷ ବା ଗନ୍ଧର୍ବଙ୍କର କନ୍ୟା ?"

ରାଜକୁମାରୀଟି କହିଲା—"ପ୍ରଭୋ ! ମୁଁ ଦେବୀ, କିଂପୁରୁଷୀ ବା ଗନ୍ଧର୍ବୀ ନୁହେଁ । ମୁଁ ଶୋଣିତପୁରର ଅସୁରରାଜ ବାଣାଙ୍କର କନ୍ୟା ଉଷା । ଆପଣ ଯଦି ମୋତେ ସ୍ନେହ କରନ୍ତି, ତେବେ ମୋତେ ବିଧିବଦ୍ଧ ଭାବରେ ବିବାହ କରି ନିଅନ୍ତୁ । କାରଣ ଅଧର୍ମପୂର୍ବକ ରଖାଯାଉଥିବା ସମ୍ବନ୍ଧରୁ ସ୍ତ୍ରୀ ପୁରୁଷ ଉଭୟଙ୍କୁ ଘୋର ନରକରେ ପଡ଼ି ଯାତନା ଭୋଗିବାକୁ ପଡ଼େ । ଏଥିପାଇଁ ଆପଣ ଯାଇ ମୋର ପିତାଙ୍କ ଠାରୁ ମୋତେ ଯାଚଣା କରନ୍ତୁ ଅଥବା ଭଗବାନ ଶଙ୍କରଙ୍କୁ କୁହନ୍ତୁ । ଏହା କହି ସେହି କନ୍ୟା ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲା । ସେହି ସମୟରେ ଅନିରୁଦ୍ଧଙ୍କର ନିଦ ଭାଙ୍ଗିଗଲା । ସେ ସେହି କନ୍ୟାକୁ ସ୍ମରଣ କରି ମୂର୍ଚ୍ଛିତ ହୋଇଗଲେ, ବ୍ୟସ୍ତବ୍ୟସ୍ତ ହେବାକୁ ଲାଗିଲେ ଓ ଅନ୍ନଜଳ ସବୁକିଛି ଛାଡ଼ିଦେଲେ ।

ଏହା ଦେଖି ରୁକ୍ମିଣୀ, ଦେବକୀ, ଅନିରୁଦ୍ଧଙ୍କ ମାତା ରୁକ୍ମବତୀ ଏମାନେ ଭାରି ବ୍ୟସ୍ତବ୍ୟସ୍ତ ହୋଇପଡ଼ିଲେ । ଭଗବାନ ଶ୍ରୀକୃଷ୍ଣ ସମସ୍ତଙ୍କୁ ସାନ୍ତ୍ୱନା ଦେଲେ । କିଛି ହୋଇ ନାହିଁ, ସେ ପୁଅ । ଯଦି ତାର କିଛି ଅସୁବିଧା ହୋଇଥାଏ, ତେବେ ଏଇ ଦୁଇ ଚାରି ଦିନ ମଧ୍ୟରେ ଭଲ ହୋଇଯିବ । ଏହା କହି ସମସ୍ତଙ୍କୁ ସେ ବୋଧଶୋଧ କରିଦେଲେ । ସେ ରୁକ୍ମିଣୀଙ୍କୁ ଏକାନ୍ତରେ କହିଲେ—"ଦେଖ, ପାର୍ବତୀ ମୋ ପୁଅକୁ ପାଗଳ କରିଦେଲେ । ଏବେ ମୁଁ ବି ତାଙ୍କ ଭକ୍ତ ବାଣାସୁରର କନ୍ୟାକୁ ପାଗଳୀ କରି ଦେଉଛି । ଏହା କହି ଭଗବାନ ସେହି ଉଷାଙ୍କୁ ସ୍ୱପ୍ନରେ ଅନିରୁଦ୍ଧଙ୍କ ଦର୍ଶନ କରାଇ ଦେଲେ । ସେ ଅନିରୁଦ୍ଧଙ୍କୁ ଦେଖି ପାଗଳୀ ହୋଇଗଲା । ଏବେ ମହିରେ ଚନ୍ଦ୍ରଲେଖାକୁ ରଖାଗଲା । ଉଭୟ ପକ୍ଷ ଭକ୍ତ ଥିଲେ । ଏଥିପାଇଁ ଅନିରୁଦ୍ଧ ସହିତ ଭଗବାନ ସମୟର ବାହାର କଲେ ନାହିଁ କିମ୍ବା ଶିବ ଓ ତାଙ୍କ ଗଣମାନେ ପୁର ପ୍ରବେଶ ସମୟରେ କୌଣସି ଆପତ୍ତି କଲେ ନାହିଁ । ଉଭୟେ ମିଳିତଲେ ଓ ଆନନ୍ଦରେ "ଗୈାପର" ନାମକ ଖେଳ ଖେଳିବାକୁ ଲାଗିଲେ । ଅନିରୁଦ୍ଧ ତ ନିଜ ପ୍ରିୟାକୁ ପାଇ ପ୍ରସନ୍ନ ଥିଲେ । ଏଣେ ଭଗବାନଙ୍କର ଲକ୍ଷାଧିକ ପୁତ୍ର ପୌତ୍ର ଥିଲେ । ସେ ସମସ୍ତଙ୍କ କଥା ଚିନ୍ତା ଏତେ ଚିନ୍ତା କରୁ ନଥିଲେ କିମ୍ବା ପ୍ରତ୍ୟେକ ସେମାନଙ୍କର ହିସାବ ନେଉ ନଥିଲେ । ଯାହାର ଯେଉଁଣେ ଇଚ୍ଛା ସେ ସେଣେ ଚାଲିଯାଉଥିଲା । ଯେଉଁଠାରେ ସ୍ୱୟମ୍ବରର ସୂଚନା ପାଉଥିଲେ ସେଠାକୁ ଅନେକେ ଦୌଡ଼ି ଯାଉଥିଲେ । ଭଗବାନଙ୍କୁ କେହି ପଚାରିଲେ ସେ କହି ଦେଉଥିଲେ, ହଁ ସେମାନେ କେଉଁଠାକୁ ସ୍ୱୟମ୍ବରକୁ ଚାଲି ଯାଇଥିବେ, ସେମାନଙ୍କ ପାଇଁ ଏତେ ଚିନ୍ତା କାହିଁକି ?" ଏହା ଶୁଣି ସମସ୍ତେ ଚୁପ୍ ହୋଇ ଯାଆନ୍ତି । ଭଗବାନଙ୍କୁ ତ ସବୁ ଜଣାଥିଲା, ଏଥିପାଇଁ ସେ ନିଶ୍ଚିନ୍ତ ଥିଲେ । ବାଣାସୁର ଏଥିପାଇଁ ନିଶ୍ଚିତ ଥିଲା ଯେ, ଶିବ ହେଉଛନ୍ତି ତା ପୁରର ରକ୍ଷକ । ଏଥିପାଇଁ ଅନିରୁଦ୍ଧ ଚତୁର୍ମାସ୍ୟା ଚାରିମାସ ସେଠାରେ ବଡ଼ ସୁଖରେ କଟାଇଲେ । ସେ ପ୍ରେମରେ ଏପରି ନିମଗ୍ନ ହୋଇଯାଇଥିଲେ ଯେ, ଘର-ଦ୍ୱାର, କୁଟୁମ୍ବ, ପରିବାର ସମସ୍ତଙ୍କୁ ସେ ଭୁଲି ଯାଇଥିଲେ । ତାଙ୍କୁ ଏହା ବି ଜଣାପଡ଼ିଲା

ନାହିଁ ଯେ, କେତେବେଳେ ଦିନ ବା କେତେବେଳେ ରାତି ହେଉଛି । ସେହି ପରମ ସୁନ୍ଦର ସୁକୁମାର ମନୋଜ୍ଞ ବରକୁ ପାଇ ଉଷା ମଧ୍ୟ ଅତି ଆନନ୍ଦରେ କାଳ କାଟୁଥାଏ । ଅନିରୁଦ୍ଧଙ୍କର ଶୀଳ, ସ୍ୱଭାବ, ଔଦାର୍ଯ୍ୟ ଓ କ୍ରୀଡ଼ାପ୍ରିୟତା କାରଣରୁ ତାଙ୍କର ଅନୁରାଗ ତାଠାରେ ଶୁକ୍ଳପକ୍ଷର ଚନ୍ଦ୍ର ସମ ନିରନ୍ତର ବଢ଼ି ବଢ଼ି ଚାଲିଥାଏ । ଯେଉଁ ଅନ୍ତପୁରରେ ପୁରୁଷର ଛାୟା ବି ପଡ଼ିପାରୁ ନଥିଲା, ସେଠାରେ ଅନିରୁଦ୍ଧ ସର୍ବଦା ରହିବାକୁ ଲାଗିଲେ । ଉଷା ତାଙ୍କୁ ବହୁମୂଲ୍ୟ ବସ୍ତ୍ର, ମାଳା, ଚନ୍ଦନ, ଧୂପ, ଦୀପ ଓ ଆସନାଦି ଦେଇ ଓ ବିଭିନ୍ନ ପ୍ରକାରର ସୁମଧୁର ଖାଦ୍ୟ ସାମଗ୍ରୀ ଦେଇ ସର୍ବଦା ସନ୍ତୁଷ୍ଟ କରୁଥିଲେ । ତାଙ୍କ ସହିତ ହସି ହସି ମଧୁର ଆଳାପ କରୁଥିଲେ ଓ ନିରନ୍ତର ସେବା ଶୁଶ୍ରୂଷାରେ ନିରତ ଥିଲା । ଏହି ସେବା ଏପରି ବସ୍ତୁ ଯେ, ଏହା ଜଡ଼ ପାଷାଣରୁ ମଧ୍ୟ ଚୈତନ୍ୟମୟ କରିଦିଏ । ଏଥିପାଇଁ ଯଦୁଶ୍ରେଷ୍ଠ ଅନିରୁଦ୍ଧ ଉଷାର ସେବା ଓ ସମ୍ମାନରେ ତାହାର ବଶ ହୋଇଗଲେ । ଯେ କୌଣସି କଥା କେତେଦିନ ପର୍ଯ୍ୟନ୍ତ ଯତ୍ନପୂର୍ବକ ଗୋପନ ରଖିଲେ ମଧ୍ୟ ଦିନେ ନା ଦିନେ ନିଶ୍ଚୟ ତାହା ପ୍ରକାଶିତ ହୋଇଥାଏ । ଉଷାର ଅନ୍ତଃପୁରରେ ଯେଉଁ କଞ୍ଚୁକୀ ବୃଦ୍ଧ ପରିହାରମାନେ ଥିଲେ, ସେମାନେ ଯିବା ଆସିବା ସମ୍ବନ୍ଧରେ କେବେ କେବେ ରାଜକୁମାରୀଙ୍କୁ ଦେଖୁଥିଲେ ଓ ସନ୍ଦେହ ବି କରୁଥିଲେ । କାରଣ କୁମାରୀ ବ୍ରତରୁ ସ୍ଖଳିତ ହୋଇଥିବାର ସ୍ପଷ୍ଟ ଚିହ୍ନମାନ ଯେତେ ଲୁଚାଇବାକୁ ଚେଷ୍ଟା କଲେ ବି ତାହା ଲୁଚେ ନାହିଁ । ପୁନଶ୍ଚ ନିରନ୍ତର ପାଖରେ ରହୁଥିବା ଲୋକଙ୍କୁ ଲୁଚାଇବା ମଧ୍ୟ କଠିନ । ସମସ୍ତ ସମୟରେ ଦ୍ୱାରପାଳଙ୍କୁ ପୁରୁଷ ହସିଲା ଭଳି ହସ ସ୍ପଷ୍ଟ ଶୁଭୁଥିଲା । ସ୍ତ୍ରୀ ଓ ପୁରୁଷଙ୍କ ବାଣୀରେ ତ ପ୍ରଭେଦ ଥିବାର ସହଜରେ ଅନୁମାନ କରାଯାଉଥିଲା । ଏବେ ଦ୍ୱାରପାଳମାନେ ବିଶ୍ୱାସ କଲେ ଯେ, କନ୍ୟାର ଅନ୍ତଃପୁରରେ କୌଣସି ପ୍ରକାରେ କୌଣସି ପୁରୁଷ ପ୍ରବେଶ କରିଛି । ସେମାନେ ଏହା ଭାବିଲେ; କିନ୍ତୁ ଭୟ କଲେ ଯେ, ଏପରି ଘଟଣା ଯେପରି ନ ଘଟିଥାଉ ଯଦି ମହାରାଜ ଜାଣିବାକୁ ପାଇବେ, ତେବେ ଆମ୍ଭମାନଙ୍କୁ ସେ ସନ୍ଦେହ କରି ଶୂଳରେ ଚଢ଼ାଇ ଦେବେ । ତେଣୁ ଆମେ ପ୍ରଥମେ ଯାଇ ଏହାର ସୂଚନା ଦେଇ ଦେବା ଉଚିତ । ପୁନଶ୍ଚ ଲୁଚାଇଲେ ଯଦି ଏହା ସତ୍ୟ ନ ହୋଇଥାଏ, ତେବେ ଓଲଟି ଆମ ଉପରେ ଦୋଷ ଲଦି ହୁଆଯିବ । ତେଣୁ ସତ୍ୟାସତ୍ୟ ଉପରେ ଦୃଢ଼ ନିଶ୍ଚିତ ହୋଇଯିବା ଉଚିତ ।" ଏହା ଚିନ୍ତାକରି ସେମାନେ ଅନ୍ୱେଷଣ କରିବାକୁ ଲାଗିପଡ଼ିଲେ । ଦିନେ ସେମାନେ ଅନିରୁଦ୍ଧଙ୍କୁ ପ୍ରତ୍ୟକ୍ଷରେ ଦେଖି ପାରିଲେ । ସଙ୍ଗେ ସଙ୍ଗେ ସେମାନେ ଧାଇଁ ଯାଇ ବାଣାସୁରଙ୍କୁ କହିଲେ—"ପ୍ରଭୋ ! ଆମ୍ଭମାନଙ୍କୁ କ୍ଷମା କରନ୍ତୁ । ଗୋଟିଏ ବଡ଼ ଅଶୁଭ ସମାଚାର ନେଇ ଆମ୍ଭେମାନେ ଆସିଛୁ ।"

ବାଣାସୁର ପଚାରିଲା—"କି ସମାଚାର ? ଶୀଘ୍ର ପ୍ରକାଶ କର ।"

ଅତ୍ୟନ୍ତ ଭୟଭୀତ ହୋଇ ଜଣେ ବୃଦ୍ଧ ଦ୍ୱାରପାଳ କହିଲା—"ପ୍ରଭୋ ! ଆପଣଙ୍କ ଅବିବାହିତା କୁମାରୀର ଆଚରଣ ଆମ୍ଭମାନଙ୍କ କୁଳକୁ କଳଙ୍କିତ କଲାଭଳି ଦେଖିଲୁ ।"

ଏହାଶୁଣି ବାଣାସୁର ଚିନ୍ତିତ ହୋଇଗଲା । ସେ ସଙ୍ଗେ ସଙ୍ଗେ ପଚାରିଲା— କାହିଁକି ! କ'ଣ ହେଲା ! କ'ଣ ଘଟିଛି ମୋତେ ସ୍ପଷ୍ଟରୂପେ ସମସ୍ତ କଥା କୁହ ।"

ଦ୍ୱାରପାଳ କହିଲା—"କ'ଣ କହିବୁଁ ମହାରାଜ ! ପ୍ରତୀତ ହେଉଛି, କନ୍ୟାର ଅନ୍ତଃପୁରରେ କୌଣସି ପୁରୁଷ ପ୍ରବେଶ କରିଛି ।"

ବାଣାସୁର କ୍ରୋଧାନ୍ୱିତ ହୋଇ କହିଲା—"ତୁମେ ସବୁ କେଉଁଠିକି ଯାଇଥିଲ ? ତୁମ୍ଭେମାନେ ଜଗିଥିବା ଅବସ୍ଥାରେ ଏପରି ଅନର୍ଥ ଘଟିଲା କିପରି ?"

ଦ୍ୱାରପାଳ ଡରି ଡରି କହିଲା—"ପ୍ରଭୋ ! ଆମ୍ଭେମାନେ ତ ଖୁବ୍ ସାବଧାନରେ ନିରନ୍ତର କନ୍ୟାର ଅନ୍ତଃପୁର ରକ୍ଷା କରୁଥିଲୁ । ଆମେ ରହିଥିବାରୁ କନ୍ୟାକୁ ଅନ୍ୟ କେହି ଦେଖିବା ତ ଦୂରର କଥା, କେହି ତାଙ୍କ ଘରର ଦ୍ୱାର ଆଡ଼କୁ ଚାହିଁବା ମଧ୍ୟ ସମ୍ଭବ ହୋଇନାହିଁ । କିନ୍ତୁ ଏହି ଚୋର କିପରି ଅନ୍ତଃପୁର ମଧ୍ୟକୁ ପ୍ରବେଶ କଲା ଓ କାହାଦ୍ୱାରା ଏହି କାର୍ଯ୍ୟ ସମ୍ଭବ ହେଲା, ଆମ୍ଭେମାନେ ତାହା କହିପାରୁ ନାହୁଁ । ଆମ ବୁଦ୍ଧି କିଛି କାମ କରୁ ନାହିଁ ।

ବାଣାସୁର କହିଲା—"ଆରେ ! ଯେ କେହି ପ୍ରବେଶ କରୁ ନା କାହିଁକି, ସେ ଦ୍ୱାରଦେଇ ତ ଅନ୍ତଃପୁରକୁ ପ୍ରବେଶ କରିଥିବ ? ତୁମ୍ଭେମାନେ କେହି କ'ଣ ତାକୁ ଦେଖି ପାରିଲ ନାହିଁ ?"

ଦ୍ୱାରପାଳ କହିଲା—"ପ୍ରଭୋ ! ଯଦି ଦ୍ୱାରଦେଶରେ କେହି ପ୍ରବେଶ କରି ଥାଆନ୍ତି, ବୋଲି ଭାବୁଛନ୍ତି ତେବେ ଆପଣ ଆମକୁ ଜୀବନରେ ମାରି ଦିଅନ୍ତୁ ବା ଯାହା ଉଚିତ୍ ଦଣ୍ଡ ଦେବେ ଦିଅନ୍ତୁ । ଆମ୍ଭେମାନେ ଦୃଢ଼ତାର ସହିତ କହିପାରୁ ଯେ, ଦ୍ୱାରଦେଶ ଦେଇ ମନୁଷ୍ୟ କଣ କୌଣସି ପକ୍ଷୀ ମଧ୍ୟ ତେବେ ଭିତରକୁ ପ୍ରବେଶ କରି ନାହିଁ ।"

ଏହା ଶୁଣି ବାଣାସୁର ଅତି ଆଶ୍ଚର୍ଯ୍ୟ ହେଲା । ସେ ଯେତିକି ବିସ୍ମିତ ହେଲା ତତୋଧିକ କ୍ରୋଧାନ୍ୱିତ ହେଲା । ସେ ଦ୍ୱାରପାଳଙ୍କୁ କହିଲା—"ଅଚ୍ଛା, ଚାଲ ଏବେ ଦେଖିବା, ସେ ଏପରି କେଉଁ ସାହସୀ ପୁରୁଷ ? କାହାର ଗଣ୍ଡିରେ ଦୁଇଟି ମୁଣ୍ଡ ?

ସୂତ କହିଲେ—"ମୁନିଗଣ ! ଏହା କହି ବାଣାସୁର ହସ୍ତରେ ଶୂଳଧରି ସେହି ଦ୍ୱାରପାଳମାନଙ୍କ ସହିତ କନ୍ୟାର ଅନ୍ତଃପୁର ଆଡ଼େ ଅଗ୍ରସର ହେଲା । ଏବେ

ଶ୍ୱଶୁର ଜ୍ୱାଇଁଙ୍କ ମଧ୍ୟରେ ଯେଉଁ ଭକ୍ତି ବାଡ଼ର୍ଦ୍ଧ, ଵଚସା ଆଦି ହେବ ତାହା ମୁଁ ପରବର୍ତ୍ତୀ ପ୍ରସଙ୍ଗରେ ଆପଣମାନଙ୍କୁ କହିବି ।

## ଛପ୍‌ପୟ

ଶୋଣିତପୁର ମହଁ ଆଇ ସଖୀ କୁଁ କୁମର ଦଖାୟୋ ।
କୁମାର ମୁଦିତ ଅତି ଭଇ ସୁଧର ବର ପ୍ରିୟତମ ପାୟୋ ॥
ଖାନ, ପାନ, ସ୍ରକ୍, ଧୂପ, ଦୀପ ତେଁ ପଡି ସମ୍ମାନେ ।
ଉଷା ସଁଗ ଅନିରୁଦ୍ଧ ନହୀଂ ଦିନ ବୀତତ ଜାନେ ॥
ଗର୍ଭବତୀ ଉଷା ଭଇ, ଦ୍ୱାରପାଲ ସବ ଜାନ ଲେଂ ।
ବାଣାସୁର ତେଂ କହେଂୟା ଜବ, ଚଲେୟା ଅସୁର ସର ତାନିକେ ॥



## ବାଣାସୁର ଦ୍ୱାରା ଅନିରୁଦ୍ଧଙ୍କର ବନ୍ଧନ

ତଂ ନାଗପାଶୈର୍ବଲିନନ୍ଦନୋ ବଲୀ,
ଘ୍ନନ୍ତଂ ସ୍ୱସୈନ୍ୟଂ କୁପିତୋ ବବନ୍ଧ ହ
ଉଷା ଭୃଶଂ ଶୋକବିଷାଦ ବିହ୍ୱଳା,
ବଦ୍ଧଂ ନିଶମ୍ୟାଶ୍ରୁ କଳାକ୍ଷ୍ୟରୌଦିଷୀତ୍ ॥ *

(ଶ୍ରୀ: ଭା: ୧୦ସ୍କ: ୬୨ ଅ: ୩୫ ଶ୍ଳୋକ)

* ଶସ୍ତ୍ରରେ ନ ପାରିଲା ଜିଣି । ମନେ ବିଚାରେ ନୃପମଣି ॥
ଦେଖିଣ ଅନିରୁଦ୍ଧ ରଥ । ନାଗ ପାଶରେ ମହାରଥୀ ॥
ବଳିନନ୍ଦନ ବେଗେ ବାନ୍ଧେ । ବନ୍ଧନ ଦେଖି ଉଷା କାନ୍ଦେ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ: ୬୨ ଅ.)

## ଛପ୍ପୟ

ଆଇ ଅସୁର ନେ ଲକ୍ଷ୍ୟ ହୋଇ ଶସ୍ତ୍ର ନିଖିଲ ଛାଡ଼ିଲେ ।
ଅତି ସୁନ୍ଦର ମନ ହରଣ ସୁଧର କର ଅତିଶୟ ପ୍ରକାଶେ ।।
ଇଚ୍ଛିକ ବଚନ କଟୁବଚନ ନ ଯଦୁନନ୍ଦନ ସୁନି ଘବରାଏ ।
ତବଇ ସୈନିକ ସମରେ ସାଜ ସଜି ଲଢ଼ିବେ ଆସେ ।।
ନେଇ ପରଘ ଅନିରୁଦ୍ଧ ଚଳି, ଲଢ଼ନ ଲଗେ ସୈନିକ ଉପରେ ।
ପ୍ରବଳ ପ୍ରହାର ନ ସହି ସକେ, କଛୁ ଭଗେ କଛୁ ଗିର ମରେ ।।

ବାଲ୍ୟକାଳରେ ମାତାଙ୍କ ପ୍ରତି ଅଧିକ ସ୍ନେହ ହୋଇଥାଏ, ବଡ଼ ହୋଇଗଲା ପରେ ଝିଅ ଭଉଣୀଙ୍କୁ ଓ ବୃଦ୍ଧାବସ୍ଥାରେ କନ୍ୟାମାନଙ୍କୁ ଅଧିକ ସ୍ନେହ କରେ । ଏଥିପାଇଁ ପିଲାମାନେ ମାତାଙ୍କୁ ଅନୁଚିତ ସମ୍ମାନ ପ୍ରଦର୍ଶନ କରନ୍ତି । ଯଦି ମାତାଙ୍କୁ କେବେ କେହି କୁବାକ୍ୟ କହିଦିଅନ୍ତି, ତାହାହେଲେ ସେମାନେ ତାଙ୍କୁ ମାରିଦେବାକୁ କମ୍ବା ନିଜେ ମରିଯିବାକୁ ତତ୍ପର ହୋଇଯାଆନ୍ତି । ଯୁବାବସ୍ଥାରେ ଭଉଣୀ ପ୍ରତି ଆଦର ବଢ଼ିଥାଏ । ସେତେବେଳେ ଭଉଣୀ ସମ୍ବନ୍ଧରେ କେହି କିଛି କୁବାକ୍ୟ ଯଦି କହିଦିଏ, ତେବେ ତାହା ତାଙ୍କୁ ଅତିଶୟ ଅପମାନ ବୋଧହୁଏ । ବୃଦ୍ଧ ହେବା ପରେ କନ୍ୟାର ପ୍ରତିଷ୍ଠା ପାଇଁ ଖୁବ୍ ଧ୍ୟାନ ଦେବାକୁ ପଡ଼େ । କନ୍ୟା ଯେତେବେଳେ ବଡ଼ ହୋଇଯାଏ, ତାକୁ ସର୍ବଦା ଚକ୍ଷୁଶୂଳ ହୋଇଥାଏ । ସେ କୌଣସି ପ୍ରକାରେ ସମ୍ମାନର ସହିତ ଘରୁ ପର ଘରକୁ ବିଦା ହୋଇଯାଉ, ଏହି ଚିନ୍ତା ସର୍ବଦା ଲାଗିରହେ । ପିତା ମାତାଙ୍କ ପାଇଁ କନ୍ୟା ସମ୍ବନ୍ଧୀୟ କୌଣସି ନିନ୍ଦା ସୂଚକ କଥା ଅତ୍ୟନ୍ତ ମର୍ମାନ୍ତିକ ପୀଡ଼ା ସଦୃଶ । ଏହିସବୁ ପରିସ୍ଥିତିରେ କ୍ରୋଧବଶ ହୋଇ ସେମାନେ ଯାହା କିଛି କରନ୍ତି ତାହା ଅତ୍ୟଧିକ ହୋଇପଡ଼େ ।

ସୂତ କହିଲେ—"ମୁନିଗଣ ! କୁମାରୀ ଅବସ୍ଥାରେ ନିଜର କନ୍ୟା ଗର୍ଭବତୀ ହୋଇଥିବାର ଶୁଣି ବାଣାସୁରର ଲୋମେ ଲୋମେ କ୍ରୋଧର ଜ୍ୱାଳା ନିର୍ଗତ ହେବାକୁ ଲାଗିଲା । ସେ ହଠାତ୍ ସଙ୍ଗେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ କନ୍ୟାର ଅନ୍ତଃପୁରରେ ଯାଇ ପହଞ୍ଚିଗଲା । ସେଠାରେ ସେ ସର୍ବାଙ୍ଗରେ ଚନ୍ଦନ ବୋଳିହୋଇ, ସୁନ୍ଦର ମାଳା ପକାଇ ତାମ୍ବୁଳ ଭକ୍ଷଣ କରି ନିଜ ପ୍ରିୟା ସହିତ "ଦ୍ୟୁତ ଖେଳ" ଖେଳୁଥିବା ସମୟରେ ଅନିରୁଦ୍ଧଙ୍କୁ ସୁନ୍ଦର ମୃଦୁଳ ଆସନ ଉପରେ ବସିଥିବାର ଦେଖିଲା । ବାଣାସୁରର ହଠାତ୍ ଆବିର୍ଭାବ ଦେଖି ଉଷା ଲଜ୍ଜିତ ହେଲା ଓ ସଙ୍ଗେ ସଙ୍ଗେ ସେଠାରୁ ଉଠିଯାଇ ଅନ୍ୟ ଏକ କୋଠରିକୁ ଚାଲିଗଲା । କ୍ରୋଧରେ ଲାଲ ଲାଲ ଆଖି କରି ବାଣାସୁର କହିଲା—"ଅରେ କୁଳାଙ୍ଗାର, କପଟୀ, ଧୂର୍ତ୍ତ ତୁ କିଏ ଓ କିପରି ଏଠାକୁ ଆସିଲୁ ?"

ଏହା ଶୁଣି ଅନିରୁଦ୍ଧଙ୍କର କ୍ରୋଧ ଜାତ ହେଲା ଓ ସେ କହିଲେ—"ମୁଁ ତୋ ଜ୍ୱାଇଁ । ମୁଁ ଚନ୍ଦ୍ରବଂଶୀ, ଯାଦବଶ୍ରେଷ୍ଠ ବସୁଦେବ ମୋର ବୃଦ୍ଧ ପ୍ରପିତାମହ, ଶ୍ରୀକୃଷ୍ଣ ଭଗବାନ ମୋର ପିତାମହ, କାମାବତାର ଭଗବାନ ପ୍ରଦ୍ୟୁମ୍ନ ମୋର ପିତା ଓ ମୋ ନାମ ଅନିରୁଦ୍ଧ ।"

ଏହା ଶୁଣି ଅସୁର ଅବହେଳା ଓ ଘୃଣା ପ୍ରକାଶ କରି ଅଟ୍ଟହାସପୂର୍ବକ କହିଲା——"ଯାଦବ ହିଁ ଏପରି ନୀଚ ଧର୍ମ ବିରୁଦ୍ଧ କାର୍ଯ୍ୟ କରିପାରନ୍ତି । ତୁମ୍ କୁଳର ଲୋକମାନଙ୍କର ଚରିତ୍ର ତ ଜଗତ୍ପ୍ରସିଦ୍ଧ । ପ୍ରଥମେ ତୁ ତୋ ବାପର ଚରିତ୍ର ଶୁଣ, ଯାହାଠାରୁ କି ତୋ ଭଳି ନୀଚ କୁଳାଙ୍ଗାର କାମୁକ ଅଧାର୍ମିକ ପୁତ୍ର ଜନ୍ମ ହୋଇଛୁ । ଶମ୍ବରାସୁରର ପତ୍ନୀ ମାୟାବତୀ ତୋ ବାପକୁ ଲାଳନ ପାଳନ କରିଥିଲା । ତା ସହିତ ଏହି ଦୁଷ୍ଟ ଏହି ପ୍ରକାର ଅନୁଚିତ ସ୍ଥାପନ କରିଥିଲା । ଛଳରେ ସେ ଅସୁରକୁ ମାରି ତାହାର ପତ୍ନୀକୁ ହରଣ କରି ନେଲା । ଏପରି କାମୀ ଓ ବିଶ୍ୱାସଘାତୀ ଠାରୁ ତୋ ଭଳି ପୁତ୍ର ଜନ୍ମ ହେବା ସ୍ୱାଭାବିକ । ତୋର ଅଜା କଥା ତ ବିଶ୍ୱ ବିଦିତ । ସେ ତ ଚୋର-ଜାରଶିଖାମଣି ରୂପେ ସର୍ବତ୍ର ପ୍ରସିଦ୍ଧ । ତା'ର ତ ବାପ ମା'ର ଠିକ୍ ନାହିଁ । ମଥୁରାରେ ସେ ନିଜକୁ କ୍ଷତ୍ରିୟ ବୋଲି କହୁଥିଲା । ବୃନ୍ଦାବନରେ ବୈଶ୍ୟବୃତ୍ତିରେ ଜୀବନ ବିତାଉଥିବା ଅହିର (ଗଉଡ଼) ନନ୍ଦର ପୁତ୍ର ରୂପେ ସେ ପ୍ରସିଦ୍ଧ । ଏବେ ବି ତାକୁ ସମସ୍ତେ ନନ୍ଦନନ୍ଦନ, ଯଶୋଦା ସୁତ ବୋଲି କହୁଛନ୍ତି । କେହି କେହି ମଧ୍ୟ ବାସୁଦେବ କହୁଛନ୍ତି । ବୃନ୍ଦାବନରେ ଥିଲାବେଳେ ସେ ନନ୍ଦର ଗୋରୁ ଚରାଉଥିଲା । ସେଠାରେ ସେ ଗୋପୀମାନଙ୍କ ସହିତ ଯାହା ଯାହା ଆଚରଣ କରିଥିବା, ତାହା ସଂସାରରେ ସମସ୍ତଙ୍କୁ ଜଣା । ସେଠାରୁ ଯେତେବେଳେ ସେ ମଥୁରା ଆସିଲା, ସେତେବେଳେ ନିଜର ମାମୁଁଙ୍କୁ ମାରିଦେଲା । ଗୋଟିଏ କୁଜା ଦାସୀ ସହିତ ସେଠାରେ ସେ ଅବୈଧ ସମ୍ବନ୍ଧ ସ୍ଥାପନ କଲା । ଗୋଟିଏ ଦୁର୍ବଳ ନରକାସୁରକୁ ସେଠାରେ ଛଳେ ବଳେ ମାରି ସେଠାରୁ ରାଜକନ୍ୟାମାନଙ୍କୁ ଅପହରଣ କରିନେଲା । ଶିଶୁପାଳ ଓ ରୁକ୍ମୀ ବଳହୀନ ହୋଇଥିବାରୁ ତାଙ୍କୁ ବାନ୍ଧି ରୁକ୍ମିଣୀଙ୍କୁ ହରଣ କଲା ଓ ନରକାସୁରକୁ ମାରିଦେଲା । ସତ୍ରାଜିତ ସୂର୍ଯ୍ୟଙ୍କ ଭକ୍ତ ଥିଲା, ତାକୁ ମାରି ତାଙ୍କ ମଣି ହରଣ କଲା । ବୃଦ୍ଧ ଋକ୍ଷକୁ ବାନ୍ଧି ତାହାର କନ୍ୟାକୁ ନେଇ ଆସିଲା । ଇନ୍ଦ୍ର ତ ତାହାର ଭାଇ ଥିଲା; କିନ୍ତୁ ସେ ନିଜ ସ୍ତ୍ରୀର ବଶୀଭୂତ ହୋଇ ତା ସହିତ ଯୁଦ୍ଧ କରି ସ୍ୱର୍ଗରୁ କଳ୍ପବୃକ୍ଷ ନେଇ ଆସିଲା । ତାହାର ବାପ ବସୁଦେବ ଥିଲା ଅତ୍ୟନ୍ତ ଭୀରୁ । ସେ ନିଜର ପୁତ୍ର ମାନଙ୍କୁ ମରାଇ ଦେଲା ଓ ଚୋରଙ୍କ ଭଳି କୃଷ୍ଣକୁ ଗୋକୁଳ ନେଇ ଆସିଥିଲା । ତାହାର ଭଉଣୀ କୁନ୍ତୀ କୁମାରୀ ଅବସ୍ଥାରେ ହିଁ ପୁତ୍ର ଜନ୍ମ କରିଥିଲା । ପରେ ଆଉ ଆଉ ସେ ଅନ୍ୟଦ୍ୱାରା ପୁତ୍ର ଉତ୍ପନ୍ନ କରାଇଥିଲା । ସେ ତାହାର ପାଞ୍ଚପୁଅଙ୍କୁ ଗୋଟିଏ ସ୍ତ୍ରୀ ସହିତ ବିବାହ କରାଇଥିଲା । ବସୁଦେବର ଗୋଟିଏ ପୁତ୍ର କୃଷ୍ଣ ସର୍ବତ୍ର ଗୋପୀଜନ ବଲ୍ଲଭ ନାମରେ

ପ୍ରସିଦ୍ଧ ଓ ଅନ୍ୟ ପୁତ୍ର ବଳରାମ ଯେ କି ନରନ୍ତର ମଦ୍ୟ ପାନରେ ମତ୍ତ । ସେ ନିଜର ସାନ ଭାଇ କୃଷ୍ଣର ସ୍ତ୍ରୀ ଯମୁନାକୁ କ୍ରୀଡ଼ା ପାଇଁ ଡାକୁଥିଲା । ତୁମର ତ ବଂଶ ଚରିତ ଏହି ପ୍ରକାର । କିନ୍ତୁ ଏବେ ତୁ ଅତି ବିପଦ ସ୍ଥାନରେ ଆସି ପହଞ୍ଚି ଯାଇଛୁ । ଏଠାରେ ମୁଁ ତୋତେ ଏବେ ନ ମାରି ବନ୍ଦୀ କରି ରଖିବି, ତୋ ପକ୍ଷର ଯେଉଁ ଯାଦବ ଏଠାକୁ ତୋତେ ଉଦ୍ଧାର କରିବାକୁ ଆସିବେ ତାଙ୍କୁ ମୁଁ ପ୍ରଥମେ ଯମାଳୟକୁ ପଠାଇ ଦେବି । ନୀଚ ଲୋକ ହୋଇ ମୋ ପ୍ରତିଷ୍ଠାରେ ତୁମେ ସବୁ କଳଙ୍କ ଲଗାଇବାକୁ ଅପଚେଷ୍ଟା କରୁଛ । ମୋ ମୁଣ୍ଡ ଉପରେ ପାଦ ରଖି ତୁ ଲୁଚିଛସି ମୋତେ ଅପମାନିତ କରିଛୁ । ମୁଁ ତୋତେ ଓ ତୋର ସମସ୍ତ ପରିବାରକୁ ଏହାର ଫଳ ଚଖାଇବି ।"

ଏହା ଶୁଣି ଅନିରୁଦ୍ଧ ଗାମ୍ଭିର୍ଯ୍ୟ ପ୍ରଦର୍ଶନ ପୂର୍ବକ କହିଲେ—"ଅସୁର ରାଜ ! ତୁ ଅଜ୍ଞାନ ବଶତଃ ମୂର୍ଖଙ୍କ ଭଳି ଏପରି କଥା କହୁଛୁ । ମୋର ପିତାଙ୍କୁ ତୁ ଜାଣିନାହୁଁ । ସେ ହେଉଛନ୍ତି ବ୍ରହ୍ମାଙ୍କ ପୁତ୍ର କାମଦେବ । ଶିବଙ୍କ ଶାପରେ ସେ ଅନଙ୍ଗ ହୋଇ ଯାଇଥିଲେ ଓ ତାଙ୍କ ପତ୍ନୀଙ୍କ ପ୍ରାର୍ଥନାରେ ଶିବଙ୍କ ଦୟାରେ ପୁନଃ ଶରୀର ଧାରଣ କରିଥିଲେ । ଯାହାଙ୍କୁ ତୁ ସମ୍ବରାସୁର ପତ୍ନୀ ବୋଲି କହୁଛୁ, ସେହି ମାୟାବତୀ ପ୍ରକୃତରେ କାମଦେବଙ୍କ ପତ୍ନୀ ରତି ଅଟନ୍ତି । ସେ ନିଜର ପ୍ରକୃତ ରୂପକୁ ଗୋପନ ରଖିଥିଲେ ଓ ଏକ ଛାୟା ରୂପରେ ଶମ୍ବରାସୁର ମହଲରେ ତାକୁ ମୋହିତ କରିବା ପାଇଁ ରହୁଥିଲେ । ଯେପରି ପ୍ରକୃତ ସୀତା ଅଗ୍ନିରେ ନିଜକୁ ଗୋପନ ରଖିଥିଲେ ଓ ତାଙ୍କର ମାୟା ପ୍ରତିକୃତିକୁ ରାବଣ ହରାଇ ନେଇଥିଲା । ସେହିପରି ରତିଦେବୀ ନିଜର ଶତ୍ରୁକୁ ମାରି ନିଜର ପ୍ରକୃତ ପତିଙ୍କ ପାଖକୁ ଚାଲି ଆସିଥିଲେ ।

ତୁ ମୋର ପିତାମହ ଶ୍ରୀକୃଷ୍ଣଙ୍କୁ ଯେଉଁ ଲାଞ୍ଛିତ ବାକ୍ୟ କହୁଛୁ ସେ ସବୁ ମିଥ୍ୟା । ସେ ତ ସ୍ୱୟଂ ପୁରାଣ ପୁରୁଷ ପରମେଶ୍ୱର ଅଟନ୍ତି । ଭକ୍ତଙ୍କୁ ଦିଆଯାଇଥିବା ବରକୁ ଯଥାର୍ଥ କରିବା ପାଇଁ ସେ ଧରାବକ୍ଷରେ ଅବତୀର୍ଣ୍ଣ ହୋଇଛନ୍ତି । ଯେଉଁ ଭକ୍ତ ତାଙ୍କଠାରୁ ଯାହା ଚାହୁଁଛି, ସେ ତାକୁ ସେହି ସେହି ବସ୍ତୁ ପ୍ରଦାନ କରୁଛନ୍ତି । ତାଙ୍କ ପକ୍ଷେ କୌଣସି ବସ୍ତୁ ଅଦେୟ ନୁହେଁ । ତାଙ୍କ ପାଇଁ କୌଣସି ବିଧି ନିଷେଧ ନାହିଁ । ସେ କୌଣସି କର୍ମ ବନ୍ଧନରେ ପଡ଼ନ୍ତି ନାହିଁ । ସେ ବନ୍ଧନ ଓ ମୁକ୍ତି ଏ ଉଭୟର ଊର୍ଦ୍ଧ୍ୱରେ । ତାଙ୍କର କେହି ଶତ୍ରୁ ନୁହନ୍ତି କି ମିତ୍ର ବି ନୁହନ୍ତି । ତୁ ତାଙ୍କ ବଡ଼ ଭାଇଙ୍କୁ ମଦ୍ୟପାନକାରୀ ବୋଲି ଯାହା କହୁଛୁ, ବାସ୍ତବରେ ତାହା ମଦ୍ୟ ନୁହେଁ, ତାହା ଏକ ପୁଷ୍ପର ରସ । କୁନ୍ତୀ ଓ ଦ୍ରୌପଦୀଙ୍କ ସମ୍ବନ୍ଧରେ ତୁ ଯାହା ଯାହା କହିଲୁ ସେ ସବୁ ମିଥ୍ୟା । ତାଙ୍କର ତ କନ୍ୟାପଣ ନଷ୍ଟ ହୋଇ ନାହିଁ । ଏହାଙ୍କର ସନ୍ତାନ ଧର୍ମସାକ୍ଷିରେ ଦେବତାଙ୍କ ସହିତ ହୋଇଥିଲା । ତଥାପି ତ ଏମାନେ ପ୍ରାତଃ ସ୍ମରଣୀୟ । ଭଗବାନ ସ୍ୱୟଂ ଗୋଲକବାସୀ । କୋଟି କୋଟି ଗୋପ ଗୋପୀ ଓ ଗୋସମୂହ ତାଙ୍କ ସଙ୍ଗେ ଆସିଥିଲେ । ସେ ଏମାନଙ୍କର ଅଧୀଶ୍ୱର, ସ୍ୱାମୀ । ତାଙ୍କ ଅତର୍କ୍ୟ ଲୀଳା ସମ୍ବନ୍ଧରେ ତୋ ଭଳି ଅସୁର ପ୍ରକୃତିର ଲୋକ କ'ଣ ବୁଝିବ ?

ମୋର ବାପ ବୁଝିଥିଲା, ବାପର ବାପ ଓ ତାଙ୍କ ବାପ ସେହି ପରମେଶ୍ୱରଙ୍କ ମହତ୍ତ୍ୱ ଜାଣିଥିଲେ । ଏହି ଉଷା ଧର୍ମତଃ ମୋର ପତ୍ନୀ । ମୁଁ ଶାସ୍ତ୍ର ନିର୍ଦ୍ଦେଶରେ ଏହାର ସମ୍ମତିରେ ଏହା ସହିତ ଗାନ୍ଧର୍ବ ବିବାହ କରିଅଛି । ଏଥିରେ ଅଧର୍ମ, ଅନ୍ୟାୟର ପ୍ରଶ୍ନ ନାହିଁ ।"

ସୂତ କହିଲେ—ମୁନିଗଣ ! ଅନିରୁଦ୍ଧ ଓ ବାଣାସୁରଙ୍କ ମଧ୍ୟରେ ଏହିପରି ବାକ୍ ବିନିମୟ ଚାଲିଥାଏ, ଏହି ସମୟରେ ବାଣାସୁରର ମନ୍ତ୍ରୀ କୁଷ୍ମାଣ୍ଡ ବିରାଟ ସୈନ୍ୟବାହିନୀ ଧରି କ୍ରୋଧରେ ସେଠାରେ ଆସି ପହଞ୍ଚିଲେ ଓ ଦାନ୍ତକାମୁଡ଼ି ଅତି କ୍ରୋଧରେ କହିଲା—"ରାଜନ ! ଏହି ଦୁର୍ବିନୀତ ବାଳକ ଆମ ବଂଶର ଅପମାନ କରିଛି । ଏଥିପାଇଁ ଆପଣ ତା ସହିତ ଏପରି କଥାବାର୍ତ୍ତା କ'ଣ କରୁଛନ୍ତି ? ଏହାକୁ ତ ସଙ୍ଗେ ସଙ୍ଗେ ବାନ୍ଧିପକାଇ ମାରିଦେବା ଉଚିତ୍ ।" ମନ୍ତ୍ରୀ ଏହା କହିବା ମାତ୍ରେ ବାଣାସୁର ତାଙ୍କୁ ଯୁଦ୍ଧ କରିବାକୁ ଅନୁମତି ଦେଇଥିଲେ । ସଙ୍ଗେ ସଙ୍ଗେ ସୈନ୍ୟମାନେ ମାର, କାଟ, ଜୀବିତ ଧରିନିଅ, ତାକୁ ପଳାଇବାକୁ ଦିଅନାହିଁ । ଏହିପରି କହି ଶୂଳ, ପରିଘ, ଭୁଷୁଣ୍ଡୀ ଓ ବାଣ ଆଦି ଧରି ଆକ୍ରମଣ କରିଦେଲେ ।

ସେମାନଙ୍କୁ ଆକ୍ରମଣ କରିବାର ଦେଖି ପ୍ରଦ୍ୟୁମ୍ନ ତନୟ ଅନିରୁଦ୍ଧ ଟିକିଏ ହେଲେ ବି ବିଚଳିତ ହେଲେ ନାହିଁ । ସେ ଏକ ପରିଘ ଉଠାଇ ଶତ୍ରୁମାନଙ୍କ ଉପରକୁ କୁଦି ପଡ଼ିଲେ । ଏବେ ସୈନିକମାନଙ୍କର ହାଲିକା ଶୁଖିଗଲା । ବହୁତ ସୈନ୍ୟ ମରିଗଲେ, ଅନେକଙ୍କର ହାତ ଗୋଡ଼ ଭାଙ୍ଗିଗଲା । କେହିହେଲେ ଅନିରୁଦ୍ଧଙ୍କ ପ୍ରହାରକୁ ସହ୍ୟ କରି ପାରିଲେ ନାହିଁ । ଅନ୍ୟ ସମସ୍ତେ ଯୁଦ୍ଧ ନକରି ଭୟରେ ପଳାଇ ଗଲେ । କେତେକ ସୈନ୍ୟ ଅନିରୁଦ୍ଧଙ୍କୁ ଧରନେବାକୁ ଉଦ୍ୟତ ହେଉଥିଲେ; କିନ୍ତୁ ସେମାନେ ତାଙ୍କୁ ଧରି ପାରିଲେ ନାହିଁ । ଯେପରି ଏକ ବଡ଼ ବରାହ କୁକୁର ପଲକୁ ମାରି ଘଉଡ଼ାଇ ଦିଏ, ସେହିପରି ବାଣାସୁରର ସମସ୍ତ ସୈନ୍ୟଙ୍କୁ ମାରି ଘଉଡ଼ାଇ ଦେଲେ ।

ବାଣାସୁର ଅନିରୁଦ୍ଧଙ୍କର ଯୁଦ୍ଧ କୌଶଳ ଦେଖି ଅତି ଆଶ୍ଚର୍ଯ୍ୟ ହୋଇଗଲା । ତାଙ୍କୁ ମନେ ମନେ ବହୁତ ପ୍ରଶଂସା କଲା ଓ ପ୍ରସନ୍ନ ବି ହେଲା । ସେ ଭାବିଲା ଇଏ ମୋ କନ୍ୟାର ପତି ହେବାପାଇଁ ଯୋଗ୍ୟ । କିନ୍ତୁ ଯୁଦ୍ଧ ନକରି, ବଳ ପ୍ରଦର୍ଶନ ନ କରି ଯଦି ମୁଁ ଏହାଙ୍କୁ କନ୍ୟା ଦେଉଛି, ତେବେ ସର୍ବତ୍ର ମୋର ଅପଯଶ ହେବ । ଏହା ଚିନ୍ତାକରି ସୈନିକ ପଳାଇ ସିବାରୁ ବାଣାସୁର ନିଜେ ଆସିଲା, ସେ ସଙ୍ଗେ ସଙ୍ଗେ ନାଗପାଶରେ ଅନିରୁଦ୍ଧଙ୍କୁ ବାନ୍ଧି ପକାଇଲା । ଅନିରୁଦ୍ଧ ମଧ୍ୟ ସମ୍ମାନ ପ୍ରଦର୍ଶନପୂର୍ବକ ବନ୍ଧନ ସ୍ୱୀକାର କଲେ । ଏହିପରି ପ୍ରଦ୍ୟୁମ୍ନ ପୁତ୍ରଙ୍କୁ ବାନ୍ଧି ଅସୁର ନିଜ ପୁରକୁ ନେଇଗଲା । ମହଲ ମଧ୍ୟକୁ ନେଇଯାଇ ଏକ ଅତ୍ୟନ୍ତ ସୁରକ୍ଷିତ ସ୍ଥାନରେ ତାଙ୍କୁ ମୂଳବଧାରେ ବନ୍ଦୀ ରୂପେ ରଖିଲା ।

ଅନିରୁଦ୍ଧଙ୍କୁ ଯେତେବେଳେ ଉଷାଙ୍କ ପିତା ନାଗପାଶରେ ବାନ୍ଧି ନେଇ ଯାଉଥିଲା, ସେତେବେଳେ ଉଷା ଝରକାବାଟେ ତାହା ଦେଖି ଅତ୍ୟନ୍ତ ବ୍ୟାକୁଳ ହେଉଥିଲା । ଯେତେବେଳେ ସେ ତା ଆଖି ଆଗରୁ ଅଦୃଶ୍ୟ ହୋଇଗଲେ, ସେତେବେଳେ ସେ ଅତ୍ୟନ୍ତ ବିଷାଦ କାରଣରୁ କାନ୍ଦି କାନ୍ଦି ବିହ୍ୱଳ ହୋଇଗଲା ଓ ଅଚେତ ହୋଇ ଭୂମି ଉପରେ ଢଳି ପଡ଼ିଲା ।

ଏଣେ ଅନିରୁଦ୍ଧ ଯେତେବେଳେ ବର୍ଷା ଋତୁମାସ ବିତିଗଲା ପରେ ବି ଘରକୁ ନ ଫେରିଲେ, ସେତେବେଳେ ତାଙ୍କ ବନ୍ଧୁ ବାନ୍ଧବ ଶୋକ କରିବାକୁ ଲାଗିଲେ । ସମସ୍ତେ ଚିନ୍ତିତ ହୋଇ ଅନିରୁଦ୍ଧଙ୍କ ଆଗମନକୁ ବାଟଗୃହି ବସିଲେ । ଏହି ସମୟରେ ବୀଣା ବଜାଇ ବଜାଇ, ହରିଗୁଣ ଗାଇ ଗାଇ ନାରଦ ଦ୍ୱାରକାରେ ଯାଇ ପହଞ୍ଚିଗଲେ । ପ୍ରତୀତ ହେଉଥିଲା, ସେ ବର୍ଷା ଋତୁମାସ ଯେପରି ସ୍ୱର୍ଗର ଊର୍ଦ୍ଧ୍ୱଲୋକରେ ଯାଇ ଭ୍ରମଣ କରୁଥିଲେ । ଗୃହସ୍ଥମାନେ ଦେବର୍ଷି ଜାଣି ଦ୍ୱାରକା ଆସୁ ନଥିଲେ । ନାରଦଙ୍କୁ ଦେଖିବା ମାତ୍ରେ ସମସ୍ତେ ଖୁସିହେଲେ । ତାଙ୍କୁ ଘେରିଯାଇ ସମସ୍ତେ କହିବାକୁ ଲାଗିଲେ— "ମହାରାଜ ! ଅନିରୁଦ୍ଧ କେଉଁଠି ଅଛନ୍ତି ଆପଣ କହିପାରିବେ କି ? ଆମ୍ଭେମାନେ ଚାରିମାସ ହେଲା ତାଙ୍କୁ ଦେଖିନାହୁଁ । ଆପଣ ଯଦି ତାଙ୍କ ଖବର ପାଇଥାଆନ୍ତି ତାହାହେଲେ ଜଣାନ୍ତୁ ।"

ନାରଦ କହିଲେ—"ଆରେ ! ସେ ତ କେବାଟନାଅଙ୍କ ନିକଟସ୍ଥ ବାଣାସୁରର ଶୋଣିତ ପୁରରେ ବନ୍ଦୀ ହୋଇ ରହିଛି ।"

ସୂତ କହିଲେ—"ମୁନିଗଣ : ଏହା ଶୁଣି ଯାଦବ ମାନଙ୍କର କ୍ରୋଧର ସୀମା ରହିଲା ନାହିଁ । ସେମାନେ ସଙ୍ଗେ ସଙ୍ଗେ ଶୋଣିତପୁର ଯିବାପାଇଁ ବ୍ୟଗ୍ର ହୋଇଉଠିଲେ । ଏବେ ସେମାନେ ଯେପରି ଶୋଣିତପୁର ଯାତ୍ରା କରିବେ ସେହି କଥା ମୁଁ ପରବର୍ତ୍ତୀ ପ୍ରସଙ୍ଗରେ କହିବି ।"

## ଛପ୍ପୟ

ମହା ବଳୀ ତବ ବାଣ କୋପ କରି ଆପଣ୍ଟୁ ରନ ମହଁ ।
କରେଂ ଯୁଦ୍ଧ ଅନିରୁଦ୍ଧ ନ ଶଂକା କୀହୀ ମନ ମହଁ ॥
ସହସ୍ର ବାହୁନେ ନାଗପାଶ ମହଁ ବାଁଧେ ଲଲ ।
ପଞ୍ଚକୋ ବନ୍ଧନ ନିରଖି ଭଇ ଅତି ବିହ୍ୱଲ ବାଲ ॥
ଇତ ନାରଦ ଦ୍ୱାରବତୀ, ଆଇେଂ କହ୍ୟୋ ବୃତ୍ତାନ୍ତ ଜବ ।
ସୁନତ କୁପିତ ଯାଦବ ଭଏ୍ଁ, ଚଲେ ସେନ ସଜି ତୁରତ ସବ ॥

●

# ହରି-ହର ଯୁଦ୍ଧ

ବାଣାର୍ଥେ ଭଗବାନ୍ ରୁଦ୍ରଃ ସସୁତୈଃ ପ୍ରମଥୈର୍ବୃତଃ ।
ଆରୁହ୍ୟ ନନ୍ଦିବୃଷଭଂ ଯୁଯୁଧେ ରାମକୃଷ୍ଣୟୋଃ ॥ *

(ଶ୍ରୀ: ଭା: ୧୦ ସ୍କ: ୬୩ ଅ: ୬ ଶ୍ଳୋକ)

## ଛପ୍ପୟ

ରାମ, କୃଷ୍ଣ, ପ୍ରଦ୍ୟୁମ୍ନ, ସାମ୍ବ ଆଦିକ ସବ ଆୟେ ।
ଶୋଣିତପୁର କୁଁ ଘେର ଶଂଖ ଅରୁ ପଣବ ବଜାୟେ ॥
ମୁନ ପୁର ରକ୍ଷକ ଶମ୍ଭୁ ଷଡ଼ାନନ ସବ ଗନ ଗନପତ ।
କରନ ଯୁଦ୍ଧ ମିଲଚଲେ ଭିଡ଼େ ରନ ଭୟୋ ବିକଟ ଅତ ॥
କାର୍ତ୍ତିକେୟ ପ୍ରଦ୍ୟୁମ୍ନ ତେଂ, ସାତ୍ୟକ ବାଣାସୁର ଲଡ଼ତ ।
ଭିଡ଼େ ଶମ୍ଭୁ ଶ୍ରୀକୃଷ୍ଣ ତେଂ, ଅଦଭୁତ ନରଲୀଲା କରତ ॥

ଭଗବାନ ନିଜର ଭକ୍ତଙ୍କୁ ସୁଖଦେବା ନିମିତ୍ତ ଏପରି ସବୁ ସରସ ସାରଗର୍ଭିତ ଲୀଳା କରନ୍ତି, ଯାହା ପଢ଼ିଲେ ଶୁଣିଲେ ତାଙ୍କ ନିଜ ଜନ ସହଜେ ପ୍ରେମବିହ୍ୱଳ ହୋଇ ରୋଦନ କରିବାକୁ ଲାଗନ୍ତି ଓ ଅଜ୍ଞ ମାୟା ମୋହିତ ହୋଇ ତାଙ୍କ ଚରିତ ଉପରେ ସନ୍ଦେହ କରିବାକୁ ଲାଗନ୍ତି । ତାଙ୍କୁ ନିନ୍ଦା କରନ୍ତି । ଯେପରି ଶ୍ରେଷ୍ଠ ପିଲା ଦର୍ପଣରେ ନିଜ ମୁଖକୁ ଦେଖି ତା ସହିତ ମଧୁର, ହାସ୍ୟ, ଭୟାନକ, ରୌଦ୍ର ଓ ସାରଗର୍ଭିତ ସଙ୍କେତ କରି କରି କ୍ରୀଡ଼ା କରେ, ସେହିପରି ଭଗବାନ ମଧ୍ୟ ନିଜେ ବିଭିନ୍ନ ରୂପରେ ବିଭିନ୍ନ

---

* ବୃଷଭ ପୃଷ୍ଠେ ବସି ହର । ମିଳିଲେ ସହି ଚକ୍ରଧର ॥
ଶଙ୍କର ଗଣ ଅପ୍ରମିତ । ରଣ ଆବୋରି ପଥ ପଥ ॥
ଶୂନ୍ୟେ ଦେଖନ୍ତି ଦିଗପାଳ । କୃଷ୍ଣ ଶଙ୍କର ରଣ ଗୋଳ ॥
ଦୁର୍ଲଭ ହରିହର ରଣ । ଶୁଣନ୍ତେ ହେମ ହରଷଣ ॥

(ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କନ୍ଧ : ୬୮ ଅ.)

ପ୍ରକାରର କ୍ରୀଡ଼ା କରିଥାଆନ୍ତି । ତାଙ୍କଠାରେ ରାଗ ଦ୍ୱେଷ ନଥାଏ । ରାଗଦ୍ୱେଷ ଆଦି ତ ଅଜ୍ଞାନର ଚିହ୍ନ । ଶ୍ରୀହରି ତ ନିତ୍ୟ ଜ୍ଞାନସ୍ୱରୂପ ଅଟନ୍ତି ।

ସୂତ କହିଲେ—"ମୁନିଗଣ ! ଯାଦବମାନେ ଯେତେବେଳେ ଏହା ଜାଣିଲେ ଯେ, ବାଣାସୁରର ବନ୍ଦୀଗୃହରେ ତାଙ୍କ ଅନିରୁଦ୍ଧ ବନ୍ଦୀ ହୋଇ ରହିଛି, ସେତେବେଳେ ସେମାନେ ଭୀଷଣ କ୍ରୋଧାନ୍ୱିତ ହେଲେ । ସମସ୍ତେ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ଚତୁରଙ୍ଗିଣୀ ସେନା ପ୍ରସ୍ତୁତ କରି ପାହାଡ଼କୁ ଡାଙ୍ଗିବା ପାଇଁ ଶୋଣିତ ପୁରରେ ଯାଇ ପହଞ୍ଚିଗଲେ । ଭଗବାନ ଶ୍ରୀକୃଷ୍ଣ, ବଳରାମ, ପ୍ରଦ୍ୟୁମ୍ନ, ସାତ୍ୟକି, ଗଦ, ସାମ୍ବ, ସାରଣ-ନନ୍ଦ, ଉପନନ୍ଦ ଓ ଭଦ୍ର ଆଦି ସମସ୍ତ ଯାଦବଶ୍ରେଷ୍ଠ ଅନିରୁଦ୍ଧଙ୍କୁ ଉଦ୍ଧାର କରିବା ପାଇଁ ବାଣାସୁର ସହିତ ଯୁଦ୍ଧ କରିବାକୁ ବାହାରି ପଡ଼ିଲେ, ସେମାନଙ୍କ ସହିତ ବାର ଅକ୍ଷୋହିଣୀ ସେନା ଥିଲେ । ଏହି ସୁଶ୍ରୃଙ୍ଖଳା ସେନା ତ ଶ୍ରୀକୃଷ୍ଣଙ୍କ ପୁତ୍ର ପୌତ୍ରାଦିଙ୍କର ଥିଲେ । ସେମାନେ ଶୋଣିତ ପୁରରେ ପହଞ୍ଚି ବାଣାସୁରର ସମସ୍ତ ପୁରୀକୁ ଚତୁର୍ଦ୍ଦିଗରୁ ଘେରିଗଲେ ।

ଯାଦବମାନେ ଭୁଷୁଣ୍ଡି ଓ ଶତଘ୍ନି ସାହାଯ୍ୟରେ ତାହା ପୁରର ସୁଦୃଢ଼ ମେଘନାଦ ପାଚେରୀକୁ ଭାଙ୍ଗି ପକାଇଲେ ଓ ନଗର ଭିତରେ ପ୍ରବେଶ କଲେ । ସେଠାକୁ ଯାଇ ସେମାନେ ରାଜାଙ୍କର ଉଦ୍ୟାନ ଉପବନକୁ ନଷ୍ଟଭ୍ରଷ୍ଟ କରିବାକୁ ଆରମ୍ଭ କରିଦେଲେ । ରାଜାଙ୍କର ଅଟ୍ଟାଳିକା ଓ ପ୍ରଧାନ ଦ୍ୱାର (ଗୋପୁର)ର ଗମ୍ବୁଜକୁ ଭାଙ୍ଗି ପକାଇଲେ । ସିଂହଦ୍ୱାରକୁ ବିଧ୍ୱସ୍ତ କରିଦେଲେ । ବାଣାସୁର ଯେତେବେଳେ ଏହି ସମାଚାର ଶୁଣିଲା, ସେତେବେଳେ ସେ ବୀର ଅସୁର ସୈନ୍ୟଙ୍କୁ ନେଇ ଯାଦବମାନଙ୍କ ସହିତ ଯୁଦ୍ଧ କରିବାକୁ ବାହାରି ପଡ଼ିଲା । ନଗରର ବାହାରକୁ ଆସି ସେ ଭଗବାନ ଭବାନୀପତିଙ୍କ ପାଦପଦ୍ମରେ ପ୍ରଣାମ କରି ତାଙ୍କୁ ପ୍ରାର୍ଥନା କଲା ଯେ—"ପ୍ରଭୋ ! ଆଜି ତୋର ଆବଶ୍ୟକ ପଡ଼ିଛି, ମୋତେ ଆଜି କେବଳ ଆପଣ ହିଁ ଭରସା । ଶତ୍ରୁଙ୍କ କବଳରୁ ଆପଣ ଆଜି ମୋ ପୁରକୁ ରକ୍ଷା କରନ୍ତୁ ।" ଶିବ ହସି ହସି କହିଲେ—"ଆରେ ଭାଇ ! ଯିଏ ସାରା ଜଗତର ରକ୍ଷକ, ତାଙ୍କଠାରୁ ତୋତେ ରକ୍ଷା କରିବାକୁ କିଏ ବା ସମର୍ଥ ହୋଇପାରିବ ? ମୁଁ ଯେତେବେଳେ ତୋତେ ବର ଦେଇଛି ଓ ତୋ ପୁର ରକ୍ଷା ଭାର ବହନ କରିଛି, ତଥାପି ଯଥାଶକ୍ତି ତୋତେ ସାହାଯ୍ୟ କରିବି । ତୁ ତୋର ସୈନ୍ୟମାନଙ୍କୁ ନେଇ ରଣଭୂମିକୁ ଚାଲ । ମୁଁ ମଧ୍ୟ ମୋର ଅନୁଚର, ଭୂତ, ପ୍ରେତ, ପିଶାଚ, ପ୍ରମଥ, ଗୁହ୍ୟକ, ଡାକିନୀ, ସାକିନୀ, ଯାତୁଧାନ, ବେତାଳ, ବିନାୟକ, ମାତୃଗଣ, କୁଷ୍ମାଣ୍ଡ ଓ ବ୍ରହ୍ମରାକ୍ଷସାଦିଙ୍କୁ ନେଇ ଯାଉଛି । ମୋର ପୁତ୍ର ଗଣପତି ଓ ଷଡ଼ାନନ ମଧ୍ୟ ମୂଷା ଓ ମୟୂର ଉପରେ ବସି ଯୁଦ୍ଧ କରିବାକୁ ଯିବେ । ମୁଁ ନନ୍ଦୀ ବୃଷଭ ଉପରେ ବସି ଯାଉଛି । ମୁଁ ଶ୍ରୀକୃଷ୍ଣଙ୍କ ସହିତ ଘୋର ଯୁଦ୍ଧ କରିବି ।" ଏହା ବାଣାସୁର ଶୁଣି ପରମ ସନ୍ତୋଷ ହେଲା । ସେ ରଣ ଶଙ୍ଖ ବଜାଇ ବାହାରିଲା । ସେ ଯେତେବେଳେ

ଯାଦବଙ୍କର ଏତେ ସୈନ୍ୟଙ୍କୁ ଦେଖିଲା, ସେତେବେଳେ ଖୁବ୍ ଖୁସି ହେଲା । ସେ ଭାବିଲା, ଆଜି ବହୁଦିନ ପରେ ଯୁଦ୍ଧର ସୁଯୋଗ ମୋତେ ମିଳିଗଲା । ସେ ଯାଦବସେନା ସମ୍ମୁଖରେ ନିୟମ ଅନୁସାରେ ନିଜ ସେନାଙ୍କୁ ଠିଆ କରାଇଲା । ସାତ୍ୟକି ସମସ୍ତ ଯାଦବସେନା ସଂଚାଳନ କରୁଥିଲେ । ବାଣାସୁର ନିଜେ ଅନ୍ୟପଟେ ନିଜ ସେନା ସଂଚାଳନ କରୁଥିଲା । ଶ୍ରୀକୃଷ୍ଣ ଗରୁଡ଼ ପୃଷ୍ଠରେ ବସି ନିଜର ଶାର୍ଙ୍ଗ ଧନୁ ଧାରଣ କରି ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇ ରହିଥିଲେ । ଏହି ସମୟରେ ଶଙ୍କର ମଧ୍ୟ ନିଜର ପୁତ୍ର ଓ ଗଣଙ୍କୁ ସଙ୍ଗରେ ନେଇ ରଣଭୂମିରେ ଆସି ପହଞ୍ଚିଗଲେ । ବାଣାସୁର ଭଗବାନ ବୃଷଭଧ୍ୱଜଙ୍କୁ ବିନୀତ ଭାବରେ କହିଲା—"ବିଭୋ ! ଆପଣ କେବଳ ଶ୍ରୀକୃଷ୍ଣଙ୍କ ସହିତ ଯୁଦ୍ଧ କରନ୍ତୁ । ମୁଁ ସାତ୍ୟକିକୁ ମାରି ଯାଦବସୈନ୍ୟଙ୍କୁ ସେନାନାୟକ ବିହୀନ କରିଦେବି ।"

ଶିବ କହିଲେ—"ଭଲ ! ତୁ ମୋତେ ଯାହା କହିବୁ ମୁଁ ତାହା କରିବି । ମୋର କ'ଣ କେବେ ସ୍ୱତନ୍ତ୍ରତା ଅଛି ? ମୁଁ ପରା ଭକ୍ତର ବଶ । ଭକ୍ତ ମୋତେ ଯେପରି ନଚାନ୍ତି ମୁଁ ସେପରି ନାଚେ ।" ଏହା କହି ଶଙ୍କର ଶାର୍ଙ୍ଗ ଧନୁ ଭଗବାନ ଶ୍ୟାମସୁନ୍ଦରଙ୍କୁ ଆକ୍ରମଣ କରିଦେଲେ । ଭଗବାନ ଶଙ୍କରଙ୍କର ଜ୍ୟେଷ୍ଠପୁତ୍ର ଷଡ଼ାନନ ଶ୍ରୀକୃଷ୍ଣଙ୍କ ଜ୍ୟେଷ୍ଠପୁତ୍ର ପ୍ରଦ୍ୟୁମ୍ନଙ୍କ ସହିତ ଯୁଦ୍ଧ କରିବାକୁ ତତ୍ପର ହୋଇଗଲେ । ବାଣାସୁରର ଦୁଇଟି ପ୍ରବଳପରାକ୍ରମୀ ସେନାପତି କୁମ୍ଭାଣ୍ଡ ଓ କୂପକର୍ଣ୍ଣ ବଳରାମଙ୍କ ସହିତ ଯୁଦ୍ଧ କରିବାକୁ ଲାଗିଲେ । ବାଣାସୁରର ଏକ ପୁତ୍ର ଭଗବାନଙ୍କ ପୁତ୍ର ସାମ୍ବ ସହିତ ଯୁଦ୍ଧ କଲା । ସାତ୍ୟକି ଓ ବାଣାସୁରଙ୍କ ମଧ୍ୟରେ ଘୋର ଯୁଦ୍ଧ ଚାଲିଲା । ଏହିପରି ପ୍ରତ୍ୟେକେ ନିଜ ନିଜର ସମକକ୍ଷ ଯୋଦ୍ଧାଙ୍କୁ ବାଛି ସେମାନଙ୍କ ସହିତ ଯୁଦ୍ଧ କରିବାକୁ ଲାଗିଲେ । ତୁମୁଳ ଯୁଦ୍ଧ ଚାଲିଲା । ଏହା ଥିଲା ଏକ ଅଭୂତପୂର୍ବ ଯୁଦ୍ଧ । ସେହି ପରିହାସମୂଳକ ଯୁଦ୍ଧକୁ ଦେଖିବାପାଇଁ ବ୍ରହ୍ମାଦି ଦେବଗଣ, ସିଦ୍ଧ, ଚାରଣ, ଗନ୍ଧର୍ବ, ଅପ୍ସରା, ମୁନି, ଋଷି ଓ ଯକ୍ଷରାକ୍ଷସ ବିମାନରେ ବସି ଆସିଥିଲେ ! ବିମାନ ଭିଡ଼ରେ ସମଗ୍ର ଆକାଶମଣ୍ଡଳ ପୂର୍ଣ୍ଣ ହୋଇ ଯାଇଥିଲା !

ଶିବ ନିଜର ପର୍ବତାକାର ବୃଷଭ ଉପରେ ଚଢ଼ି ଶ୍ରୀକୃଷ୍ଣଙ୍କ ଆଡ଼କୁ ଅଗ୍ରସର ହେଉଥିଲେ । ତାଙ୍କ ପଛରେ ଭୂତ, ପ୍ରେତ, ପିଶାଚ, ଗୁହ୍ୟକ, ରାକ୍ଷସ, ଡାକିନୀ, ଶାକିନୀ, ଯୋଗିନୀ ତଥା ଅନ୍ୟାନ୍ୟ ପ୍ରମଥାଦିଗଣ ହା ହା, ହୁ ହୁ ରବ କରି, କିଳିକିଳା ରବ କରି ଧାଇଁଥିଲେ । ଶିବ ତାଙ୍କର ଆଜଗବ ଧନୁରେ ବାଣ ଚଢ଼ାଇ ଭଗବାନଙ୍କ ଉପରକୁ ନିକ୍ଷେପ କଲେ । ଭଗବାନ ମଧ୍ୟ ନିଜର ଶାର୍ଙ୍ଗ ଧନୁରେ ବାଣ ଚଢ଼ାଇ ପିନାକପାଣିଙ୍କୁ ପ୍ରହାର କଲେ । ଏହାଦ୍ୱାରା ଶିବଙ୍କର ବାଣ ବ୍ୟର୍ଥ ହୋଇଗଲା । ପୁନଶ୍ଚ ଏକ ସଙ୍ଗେ ବହୁତ ବାଣ ମାରି ତାଙ୍କ ଭୂତପ୍ରେତ ପିଶାଚ ଆଦି ଗଣମାନଙ୍କୁ ମାରିଦେଲେ ଓ କେତେକଙ୍କୁ ଘଉଡ଼ାଇ ଦେଲେ । ଏହାଦେଖି ତ୍ରିପୁରାରି କ୍ରୋଧରେ ଜର୍ଜରିତ ହୋଇ ଶ୍ରୀକୃଷ୍ଣଙ୍କ ଉପରକୁ ବ୍ରହ୍ମାସ୍ତ୍ର ଛାଡ଼ିଲେ । ଭଗବାନ ଶ୍ରୀକୃଷ୍ଣ ମଧ୍ୟ

ବ୍ରହ୍ମାସ୍ତ୍ର ପ୍ରୟୋଗ କରି ତାହା ବ୍ୟର୍ଥ କରିଦେଲେ । ତାହାପରେ ଶିବ ବାୟବ୍ୟାସ୍ତ୍ର ଛାଡ଼ିଲେ । ଶ୍ୟାମସୁନ୍ଦର ପର୍ବତାସ୍ତ୍ର ଛାଡ଼ି ତାକୁ ବି ବ୍ୟର୍ଥ କରିଦେଲେ । ଶିବ ଏଥିରେ ରାଗିଯାଇ ଅଗ୍ନେୟାସ୍ତ୍ର ଛାଡ଼ିଲେ, ସର୍ବତ୍ର ପ୍ରଚଣ୍ଡ ଅଗ୍ନି ପ୍ରଜ୍ଜ୍ୱଳିତ ହେବାକୁ ଲାଗିଲା । ଜଣାପଡ଼ିଲା ସତେ ଯେପରି,ତାହା ସମସ୍ତ ଜଗତକୁ ଗ୍ରାସ କରି ପକାଇବ । ଏହା ଦେଖି ଘନଶ୍ୟାମ ପର୍ଜନ୍ୟାସ୍ତ୍ର ଛାଡ଼ିବା ଦ୍ୱାରା ଏପରି ବର୍ଷା ହେଲା ଯେ, ସମସ୍ତ ସ୍ଥାନରୁ ଅଗ୍ନି ନିର୍ବାପିତ ହୋଇଗଲା । ବ୍ରହ୍ମାସ୍ତ୍ର, ବାୟବ୍ୟାସ୍ତ୍ର ତଥା ଆଗ୍ନେୟାସ୍ତ୍ର ବ୍ୟର୍ଥ ହୋଇଯିବାରୁ ଶିବ ନିଜର ପାଶୁପତାସ୍ତ୍ର ଛାଡ଼ିଲେ । ଏହା ଦେଖି ଭଗବାନ ଶ୍ରୀକୃଷ୍ଣ ସଙ୍ଗେ ସଙ୍ଗେ ନିଜର ନାରାୟଣାସ୍ତ୍ର ଛାଡ଼ି ତାକୁ ବ୍ୟର୍ଥ କରିଦେଲେ । ନିଜର ସମସ୍ତ ଅସ୍ତ୍ର ବ୍ୟର୍ଥ-ହୋଇଯିବାର ଦେଖି ଶିବ ଚକିତ ହୋଇପଡ଼ିଲେ । ସଙ୍ଗେ ସଙ୍ଗେ ଭଗବାନ ତାଙ୍କ ଉପରକୁ ଜୃମ୍ଭଣାସ୍ତ୍ର ପ୍ରୟୋଗ କରିଦେଲେ । ଏବେ ଶିବଙ୍କ ହାଇ ଉପରେ ହାଇ ଆସିଲା, ତାଙ୍କୁ ନିଦ ଲାଗିଲା । ସେ ଅସ୍ତ୍ରଶସ୍ତ୍ର ଚଳାଇବାକୁ ଭୁଲିଗଲେ । ନିଦ ଆସିଯିବାରୁ ସେ ଶୋଇଗଲେ । ଭଗବାନ ଶ୍ରୀକୃଷ୍ଣ ଭାବିଲେ—"ଶିବ ଆରାମରେ ଶୋଇ ଥାଆନ୍ତୁ ।" ଏହା ଚିନ୍ତାକରି ସେ ଆଗେଇ ଯାଇ ବାଣ, ଖଡ୍ଗ ଓ ଅନ୍ୟାନ୍ୟ ଅସ୍ତ୍ର ଦ୍ୱାରା ଅସୁର ସୈନ୍ୟମାନଙ୍କୁ ସଂହାର କରିବାକୁ ଲାଗିଲେ । ଭଗବାନଙ୍କ ଅସ୍ତ୍ର ଶସ୍ତ୍ରର ଆଘାତକୁ ସହି ନ ପାରି ବାଣାସୁରର ସୈନ୍ୟମାନେ ଛତ୍ରଭଙ୍ଗ ହେଲେ । ଏଣେ ପ୍ରଦ୍ୟୁମ୍ନଙ୍କ ବାଣରେ କାର୍ତ୍ତିକେୟଙ୍କ ଅଙ୍ଗ କ୍ଷତ ବିକ୍ଷତ ହୋଇଗଲା । ତେଣୁ ସେ ନିଜର ବାହନ ମୟୂର ଉପରେ ବସି ଉଡ଼ି ପଳାଇଗଲେ । ଅସୁର ସେନାର ପ୍ରସିଦ୍ଧ ବୀର କୁମ୍ଭାଣ୍ଡ ଓ କୂପକର୍ଣ୍ଣ ଏ ଦୁହିଁଙ୍କୁ ବଳରାମ ଲଙ୍ଗଳ ମୂନରେ ଭିଡ଼ିଆଣି ମୂଷଳରେ ମାରି ଅଚେତ କରିଦେଲେ । ନିଜର ସେନାନାୟକ ଦୁହିଁଙ୍କୁ ମୂର୍ଚ୍ଛିତ ହୋଇଯିବାର ଦେଖି ଅନ୍ୟାନ୍ୟ ସୈନ୍ୟ ଯୁଦ୍ଧକ୍ଷେତ୍ର ଛାଡ଼ି ପଳାଇଗଲେ । ସୈନ୍ୟମାନେ ପଳାଇଯିବାର ଦେଖି ବାଣାସୁର ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇଗଲା । ସେ ଚିନ୍ତାକଲା—"ଏହି ଶ୍ରୀକୃଷ୍ଣ ହିଁ ଯାଦବଙ୍କର ପ୍ରାଣ । ସେ ଯେଉଁଠାରୁ ବାହାରିଯାଏ, ସେଠାରେ ପ୍ରାଣ ଚାଲିଯାଏ । କୃଷକ ଯେପରି ଶସ୍ୟ କାଟି କାଟି ଚାଲିଥାଏ, ଏ ସେହିପରି ସୈନ୍ୟଙ୍କୁ ମାରି ମାରି ଚାଲିଛି । ମୁଁ ସର୍ବପ୍ରଥମେ ତାଙ୍କୁ ହିଁ ପରାସ୍ତ କରେ ।" ଏହା ଚିନ୍ତାକରି ସେ ଭଗବାନ ଶ୍ରୀକୃଷ୍ଣଙ୍କ ଉପରେ ଖାପଣ ରାଗିଯାଇ ସାତ୍ୟକି ସହିତ ଯୁଦ୍ଧ କରିବା ବନ୍ଦ କରିଦେଇ ନିଜ ରଥକୁ ଭଗବାନ ଶ୍ରୀକୃଷ୍ଣଙ୍କ ଆଡ଼କୁ ଦଉଡ଼ାଇ ନେଲା । ସାତ୍ୟକି ବୁଝିପାରିଲେ ଏବେ ଠିକ୍ ଯଥା ସ୍ଥାନରେ ଯାଇ ପହଞ୍ଚି ଯାଇଛି । ତେଣୁ ସେ ଆଉ ବାଣାସୁରର ପଛରେ ଗୋଡ଼ାଇଲେ ନାହିଁ । ଅନ୍ୟ ଯୋଦ୍ଧାମାନଙ୍କ ସଙ୍ଗେ ଲଢ଼ିଲେ ।

ବାଣାସୁରର ସହସ୍ର ବାହୁ ଥିଲା । ପାଞ୍ଚଶହ ହାତରେ ପାଞ୍ଚଶହ ଧନୁ ଥିଲା ଓ ପ୍ରତ୍ୟେକ ଧନୁରେ ସେ ଦୁଇ ଦୁଇ ବାଣ ଯୋଖିଥିଲା । ସେହିପରି ଏକ ସହସ୍ର ବାଣ

ଏକ ସଙ୍ଗେ ସେ ଅନ୍ୟ ପାଞ୍ଚଶହ ହାତରେ ଭିଡ଼ି ଶ୍ୟାମସୁନ୍ଦରଙ୍କ ଉପରକୁ ଛାଡ଼ିଲା । ଭଗବାନ ଶ୍ରୀକୃଷ୍ଣ ପ୍ରଥମରୁ ଏଥିପାଇଁ ସାବଧାନ ହୋଇଯାଇଥିଲେ । ସେ ନିଜ ଧନୁରେ ଚନ୍ଦ୍ରାକାର ବାଣ ଚଢ଼ାଇ ଏପରି ପ୍ରୟୋଗ କଲେ ଯେ, ତାହାର ସମସ୍ତ ବାଣ କଟିଗଲା ଓ ହାତରେ ଧରିଥିବା ସମସ୍ତ ଧନୁ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଗଲା । ଏହା ପରେ ଭଗବାନ ଆଉ କେତେକ ବାଣ ଏକ ସଙ୍ଗେ ଛାଡ଼ି ଅସୁରର ସାରଥୀ ଓ ଅଶ୍ୱଙ୍କୁ ମାରିଦେଲେ ଓ ତାହାର ରଥକୁ ଭାଙ୍ଗି ଧୂଳିସାତ୍ କରିଦେଲେ । ସେ ଏହାପରେ ଅତ୍ୟନ୍ତ ଉତ୍ସାହର ସହିତ ନିଜର ପାଞ୍ଚଜନ୍ୟ ଶଙ୍ଖ ବଜାଇଲେ ।

ମହଲର ଅଟ୍ଟାଳିକା ଉପରୁ ବାଣାସୁରର ମାତା ସବୁ ଦେଖୁଥିଲା । ସେ ଯେତେବେଳେ ଦେଖିଲା ଶ୍ରୀକୃଷ୍ଣ ଏବେ ତା ପୁଅର ପ୍ରାଣ ନେଇଯିବେ, ସେ ସଙ୍ଗେ ସଙ୍ଗେ ତଳକୁ ଓହ୍ଲାଇ ଆସି ନିଜର ଲମ୍ବା ଲମ୍ବା ବାଳ ମୁକୁଳା କରି ରଣଭୂମି ମଧ୍ୟରେ ପ୍ରବେଶ କଲା । ଏହାପରେ ନିଜ ଅଙ୍ଗରୁ ସମସ୍ତ ବସ୍ତ୍ର କାଢ଼ି ପକାଇଲା । ନଗ୍ନାବସ୍ଥାରେ ସେ ଯାଇ ଭଗବାନଙ୍କ ଆଗରେ ଠିଆ ହୋଇଗଲା । ନଗ୍ନାବସ୍ଥାରେ ସ୍ତ୍ରୀ ଲୋକଙ୍କୁ ଦେଖିଲେ ପାପ ଲାଗେ । ଭଗବାନ ତାକୁ ଏପରି ଦେଖିବାରୁ ପାପ ଲାଗିଲା ବୋଲି ଚିନ୍ତା କରି ସେ ତା ଆଡ଼ୁ ମୁହଁ ବୁଲାଇ ନେଲେ । ସେ ବାଣାସୁର ଆଡ଼କୁ ମଧ୍ୟ ଚାହିଁଲେ ନାହିଁ । ବାଣାସୁରକୁ ଏତିକବେଳେ ସୁଅବସର ମିଳିଗଲା । ସେ ରଥ ଓ ଧନୁହୀନ ହୋଇଯାଇଥିଲା । ତେଣୁ ସଙ୍ଗେ ସଙ୍ଗେ ସେ ନଗର ଭିତରକୁ ଚାଲିଗଲା ଓ ସେଠାକୁ ଯାଇ କିଛି ସମୟ ବିଶ୍ରାମ କଲା ।

ଏଣେ ଶିବଙ୍କର ଅଳସ ଭାଙ୍ଗି ଯିବାରୁ ସେ ଉଠି ଦେଖିଲେ ତାଙ୍କର ଭୂତ, ପ୍ରେତ, ପିଶାଚ ଓ ଅନ୍ୟାନ୍ୟ ଶିବଗଣ ଶ୍ରୀକୃଷ୍ଣଙ୍କ ପ୍ରବଳ ପ୍ରହାରରେ କ୍ଷତବିକ୍ଷତ ହୋଇ ପଡ଼ିଛନ୍ତି । ଏହା ଦେଖି ସେ ନିଜର ତ୍ରିଶିର ନାମକ ଉଷ୍ଣ ଜ୍ୱରକୁ ଛାଡ଼ିଲେ । ସେହି ଜ୍ୱରର ତିନି ଶିର ଥିଲା ଓ ତିନିଟି ପାଦ ଥିଲା । ସେହି ମହା ପ୍ରବଳ ଜ୍ୱର ଦଶଦିଗକୁ ଦଗ୍ଧ କରି ଦାମୋଦରଙ୍କ ଆଡ଼କୁ ଧାଇଁଲା । ଭଗବାନ ଶ୍ରୀକୃଷ୍ଣ ଯେତେବେଳେ ଶିବଙ୍କ ବାଣ ଉଷ୍ଣଜ୍ୱରକୁ ନିଜ ଆଡ଼କୁ ଆସୁଥିବାର ଦେଖିଲେ, ସେତେବେଳେ ସେ ତାହାର ପ୍ରତିରୋଧ କରିବା ପାଇଁ ନିଜର ଶୀତଜ୍ୱର ନାମକ ବାଣକୁ ଛାଡ଼ିଲେ । ଏବେ ଉଭୟ ଜ୍ୱର ନିଜ ନିଜ ମଧ୍ୟରେ ଧକ୍କା ଖାଇଲେ । ଉଭୟଙ୍କ ମଧ୍ୟରେ ଘମାଘୋଟ ଯୁଦ୍ଧ ଲାଗିଲା । ଶେଷରେ ବୈଷ୍ଣବ ଜ୍ୱର ମାହେଶ୍ୱର ଜ୍ୱରକୁ ତଳକୁ ଚାପି ଦେଲା । ଏବେ ଶିବଙ୍କ ଜ୍ୱର ଚିତ୍କାର କରିବାକୁ ଲାଗିଲା । ସେ ଯେତେବେଳେ ଜାଣିଲା ଶ୍ରୀକୃଷ୍ଣଙ୍କ ନିକଟରେ ଶରଣ ପଶିବା ବ୍ୟତୀତ ଆଉ ଅନ୍ୟଗତି ନାହିଁ, ସେତେବେଳେ ସେ ଅତ୍ୟନ୍ତ ବିନମ୍ରର ସହିତ ଦୁଇହାତ ଯୋଡ଼ି ତାଙ୍କୁ ସ୍ତୁତି କରିବାକୁ ଲାଗିଲେ ଓ ତାଙ୍କ ଶରଣ ଭିକ୍ଷା କଲା ।

ତ୍ରିଶିର ଉଷ୍ଣଜ୍ୱର ଉପସ୍ଥିତ ହୋଇ କହିଲା—"ପ୍ରଭୋ ! ଆପଣ ଅନନ୍ତଶକ୍ତି-ସମ୍ପନ୍ନ ଅଟନ୍ତି । ଆପଣ ଚରାଚର ବିଶ୍ୱ ହୃଦୟରେ ଅବସ୍ଥାନ କରୁଥିବା ଅନ୍ତର୍ଯାମୀ ।

ଆପଣଙ୍କଠାରୁ ବଳି ବା ଆପଣଙ୍କ ସମାନ ଅନ୍ୟ କେହି ନାହାନ୍ତି । ଆପଣ ଅଦ୍ୱିତୀୟ, ଜ୍ଞାନ ସ୍ୱରୂପ । ସଂସାରର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର କାରଣ ହିଁ ଆପଣ । ଏଥିପାଇଁ ଆପଣଙ୍କୁ ଜାଣିବାକୁ କେହି ସକ୍ଷମ ନୁହନ୍ତି । କେବଳ ବେଦବାକ୍ୟ ଦ୍ୱାରା ଆପଣ ଲକ୍ଷିତ ହୁଅନ୍ତି । ଆପଣ ସମସ୍ତ ବିକାରହୀନ ଶୁଦ୍ଧ ସତ୍ୱମୟ ପରଂବ୍ରହ୍ମ ଅଟନ୍ତି । ଆପଣଙ୍କ ପାଦପଦ୍ମରେ ମୁଁ ବାରମ୍ବାର ପ୍ରଣାମ କରୁଛି ।

ହେ ପ୍ରଭୋ ! ସଂସାରରେ ଯାହା କିଛି ବିଦ୍ୟମାନ, ସେ ସମସ୍ତ ଆପଣଙ୍କ ଦ୍ୱାରା ସୃଷ୍ଟି । ଆପଣ ହିଁ ସଂସାରର ଆଦିକାରଣ । ଆପଣ ଏ ସଂସାରର ବୃକ୍ଷାଦି ସକଳର ବୀଜ ସ୍ୱରୂପ । କାଳ, ଦୈବ, କର୍ମ, ଜୀବ, ସ୍ୱଭାବ, ଭୂତ, ସୂକ୍ଷ୍ମ ଶରୀର; ସୂକ୍ଷ୍ମ ଅହଂକାର ହସ୍ତ, ପାଦ, ବାକ୍, ଗୁହ୍ୟ, ଉପସ୍ଥ, ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ତ୍ୱକ୍, ପୃଥିବୀ, ତେଜ, ବାୟୁ ଓ ଆକାଶ । ଏ ସମସ୍ତର ଯେଉଁ ସଙ୍ଘାତରୂପ ଲିଙ୍ଗଦେହ ତଥା ଏହି ଲିଙ୍ଗଦେହ ଯେଉଁ କର୍ମବୀଜରୁ ଜାତ ହୁଏ ଓ ବୃଦ୍ଧିପ୍ରାପ୍ତ ହୁଏ, ଏସବୁ ଆପଣଙ୍କର ମାୟାର ହିଁ ପରିଣାମ । ଯଦ୍ୟପି ଏ ସମସ୍ତ ଆପଣଙ୍କ ଅଧିଷ୍ଠାନରୁ ସୃଷ୍ଟ ତଥାପି ଆପଣ ଏ ସମସ୍ତରୁ ସର୍ବଥା ପୃଥକ୍ ରହନ୍ତି ଓ ନିରନ୍ତର ନିର୍ଲେପ ଭାବରେ ଅବସ୍ଥାନ କରନ୍ତି । ଆପଣ ଶରଣାଗତବତ୍ସଳ ଅଶରଣର ଶରଣ ହୋଇଥିବାରୁ ହେ ଶ୍ୟାମସୁନ୍ଦର ! ଆପଣଙ୍କ ପାଦପଦ୍ମରେ ମୁଁ ଶରଣ ଭିକ୍ଷା କରୁଛି ।

ହେ ସର୍ବାତ୍ମନ୍ ! ଆପଣ ଅଜ, ଅବ୍ୟକ୍ତ ଅନାଦି ଓ ଅରୂପ ଅଟନ୍ତି । ତଥାପି ଲୀଳାପାଇଁ ଆପଣ ଅନେକ ରୂପ ଧାରଣ କରନ୍ତି, ଏକରୁ ବହୁ ହୁଅନ୍ତି । ଅପଣ ଏହି ପ୍ରପଞ୍ଚକୁ ଚଳାଇ ରଖିବା ପାଇଁ, ସୁରଗଣ ଓ ସାଧୁଜନଙ୍କ ପରିତ୍ରାଣ ପାଇଁ ଏବଂ କୁମାର୍ଗଗାମୀ ହିଂସାପ୍ରିୟ ଅସୁରଙ୍କ ସଂହାର କରିବା ପାଇଁ ଲୋକ ମର୍ଯ୍ୟାଦା ରକ୍ଷାକରିବା କାରଣରୁ ସମୟ ସମୟରେ ଧରାବକ୍ଷରେ ଅବତୀର୍ଣ୍ଣ ହୁଅନ୍ତି ଓ ସଂସାରକୁ ଶାନ୍ତିର ମାର୍ଗ ଦର୍ଶାଇ ଥାଆନ୍ତି । ଆପଣଙ୍କର ଏହି ଅଦ୍ଭୁତ ଅବତାର ମଧ୍ୟ ଭୂଭାର ହରଣ କରିବା ନିମନ୍ତେ ହୋଇଅଛି । ତେଣୁ ହେ ଭକ୍ତବତ୍ସଳ ! ମୁଁ ଅଜ୍ଞାତରେ ଆପଣଙ୍କ ନିକଟରେ ଯେଉଁ ଅପରାଧ କରିଛି, ମୋତେ ସେଥିପାଇଁ କ୍ଷମା କରନ୍ତୁ ।"

ଏହା ଶୁଣି ଶ୍ୟାମସୁନ୍ଦର ହସି ହସି କହିଲେ—"ହେ ମାହେଶ୍ୱର ଜ୍ୱର ! ତୁମେ କ'ଣ କହୁଛ ? କାହିଁକି ତୁମେ ମୋର ଏପରି ଲମ୍ବା ଚୌଡ଼ା ସ୍ତୁତି କରିବାରେ ଲାଗିଛ ? ତୁମେ ତୁମ ନିଜର କ'ଣ ପ୍ରୟୋଜନ କୁହ ?"

ମାହେଶ୍ୱର ଜ୍ୱର କହିଲା—ପ୍ରଭୋ ! ମୁଁ ଆପଣଙ୍କର ଏହି ଶୀତ, ଉଷ୍ଣ, ଅତି ଉଲ୍ବଣ ଦୁଃସହ ଜ୍ୱର ଯୋଗୁଁ ସନ୍ତପ୍ତ ହେଉଅଛି । ଏହି ଶୀତ ତାପ ମୋତେ ତାପିତ କରୁଅଛି । ଆପଣଙ୍କ ସମ୍ମୁଖରେ ରହି ଏହା ଉତ୍ତପ୍ତ ହେଉ ନାହିଁ । କାରଣ

ଦେହଧାରୀମାନଙ୍କୁ ତାପ ସେ ପର୍ଯ୍ୟନ୍ତ ଅସ୍ତବ୍ୟସ୍ତ କରୁଥାଏ, ଯେପର୍ଯ୍ୟନ୍ତ ସେମାନେ ଆଶା ବା କାମନା ପାଶରେ ଆବଦ୍ଧ ହୋଇ ରହିଥାଆନ୍ତି । ଯେତେବେଳେ ସେମାନେ ଆପଣଙ୍କର ଶରଣାଗତ ହୁଅନ୍ତି, ସେତେବେଳେ ସେମାନଙ୍କର ତ୍ରିବିଧ ତାପ ଚିରଦିନ ପାଇଁ ଲୋପ ପାଇଯାଏ । ଯେଉଁବ୍ୟକ୍ତି ଆପଣଙ୍କ ଠାରେ ଶରଣାଗତ, ସେ ସମସ୍ତ ତାପ, ସନ୍ତାପରୁ ଚିରଦିନ ପାଇଁ ମୁକ୍ତ ପାଏ, ତେଣୁ ଆପଣଙ୍କ ଶରଣ ନେବା ପରେ ମୋର ତାପ କାହିଁକି ଦୂର ହେଉ ନାହିଁ ?"

ତ୍ରିଶିର ମାହେଶ୍ୱର ଜ୍ୱରର ଏ ପ୍ରକାର ସ୍ତୁତିରେ ମନ୍ଦମନ୍ଦ ହସି ମାଧବ କହିଲେ —"ହେ ତ୍ରିଶିର ଜ୍ୱର ! ତୁ ପ୍ରାଣୀମାନଙ୍କୁ ତୃତୀୟ ଦିନ ଶୀତ ସହିତ ଧରୁ । ତୁ ପ୍ରାଣୀଙ୍କୁ ଧରିବା ମାତ୍ରେ ପ୍ରାଣୀମାନଙ୍କ ଶରୀର ତାତିଯିବ । ମୁଁ ତୋର ସ୍ତୁତିରେ ପ୍ରସନ୍ନ ହୋଇଛି । ତୁ ଏଣିକି ମୋ ଜ୍ୱରକୁ (ବୈଷ୍ଣବ ଜ୍ୱରକୁ) ଭୟ କରିବୁ ନାହିଁ । କେବଳ ସେତିକି ନୁହେଁ, ଯେଉଁ ବ୍ୟକ୍ତି ଶ୍ରଦ୍ଧା ଓ ଭକ୍ତି ସହିତ ତୋର ଓ ଆମ୍ଭର ଏହି ସମ୍ବାଦକୁ ସ୍ମରଣ କରିବେ, ସେମାନେ ତୋତେ ବି ଭୟ କରିବେ ନାହିଁ ।"

ସୂତ କହିଲେ—"ମୁନିଗଣ ! ଭଗବାନଙ୍କ ଠାରୁ ଏପରି ବରପାଇ ତ୍ରିଶିର ମାହେଶ୍ୱର ଜ୍ୱର ଭଗବାନଙ୍କ ପାଦପଦ୍ମରେ ପ୍ରଣାମ କରି ନିଜ ସ୍ଥାନକୁ ଚାଲିଗଲା । ଏହି ସମୟ ଭିତରେ ଶେଣିତ ପୁରରୁ ନୂତନ ରଥ ଓ ନୂତନ ଉତ୍ସାହ ନେଇ ବାଣାସୁର ପୁନର୍ବାର ଭଗବାନ ବାସୁଦେବଙ୍କ ସହିତ ଲଢ଼ିବାକୁ ଆସିଲା । ଏବେ ଦୁଇଜଣଙ୍କ ମଧ୍ୟରେ ଯେପରି ଭୟଙ୍କର ଯୁଦ୍ଧ ହେବ, ତାହା ମୁଁ ପରବର୍ତ୍ତୀ ଅଧ୍ୟାୟରେ ବର୍ଣ୍ଣନା କରିବି ।"

## ଛପ୍ପୟ

ବ୍ରହ୍ମ, ବାୟୁ ଅରୁ ଅନଲ ଅସ୍ତ୍ର ତ୍ରିପୁରାରି ଛୋଡ଼େ ।
ଜୋଡ଼ ତୋଡ଼କେ ଛୋଡ଼ ଶ୍ୟାମନେ ସବହୀ ତୋଡ଼େ ॥
ଜୃମ୍ଭଣାସ୍ତ୍ର ହର ଛୋଡ଼ ଲବାଇଂ ଜମୁହାଇ ପୁନ ।
ଆୟୋ ତବହି ବାଣ ଭଗତ ଅପନୀ ସେନା ସୁନ ॥
ଆଇ କୃଷ୍ଣ ତେଂ ଭିଡ଼ ଗୟୋ, ହର ହୟ ସାରଥି ମାରକେଁ ।
କରେଯା ବରଥ ତବ ମାତ ଲଖି, ଖଡ଼ୀ ନଗନ ହ୍ୱେ ଆଇ କେଂ ॥



# ଅନିରୁଦ୍ଧ ଉଷା ଚରିତ ସମାପ୍ତି

ଇତି ଲବ୍ଧାଭୟଂ କୃଷ୍ଣଂ ପ୍ରଣମ୍ୟ ଶିରସାସୁରଃ ।
ପ୍ରାଦ୍ୟୁମ୍ନିଂ ରଥମାରୋପ୍ୟ ସବଧ୍ୱା ସମୁପାନୟତ୍ ॥
ଅକ୍ଷୌହିଣ୍ୟା ପରିବୃତଂ ସୁବାସଃସମଲଙ୍କୃତମ୍ ।
ସପତ୍ନୀକଂ ପୁରସ୍କୃତ୍ୟ ଯଯୌ ରୁଦ୍ରାନୁମୋଦିତଃ ॥ *

( ଶ୍ରୀ : ଭା ୧୦ ସ୍କ. ୬୩ ଅ. ୫୦-୫୧ ଶ୍ଲୋକ )

## ଛପ୍ପୟ

ନଗ୍ନ ନାରୀ କୁଁ ଦେଖି ନୟନ ମୁଦି ପୀଛେଁ ଫେରେ ।
ବାଣ ଗୟୋ ପୁର ମାହିଁ ଶମ୍ଭୁ ସନ୍ମୁଖ ହ୍ୱଇ ହେରେ ॥
ଛୋଡ଼୍ୟା ଶିବଜ୍ୱର ଉଷ୍ଣ ଶୀତ ଜ୍ୱର ଆଇ ଦବାୟୋ ।
କରୀ କୃଷ୍ଣ କୀ ବିନୟ ଉଷ୍ଣ ଜ୍ୱର ପିଂଡ ଛୁଡ଼ାୟୋ ॥
ବାଣ ଆଇ ହରି ସଂଗ ଲଡ଼୍ୟା, ହାରେ୍ୟା ସବ ସେନା ମରୀ ।
କର କାଟନ ଲଗେ ହରୀ, ଆଇ ଶମ୍ଭୁ ଇସ୍ତୁତି କରୀ ॥

---

* ଅଭୟ ହେଉ ଏ ଅସୁର । ଏମନ୍ତ କୃଷ୍ଣ ଦେଲେ ବର ॥
ଏମନ୍ତ କୃଷ୍ଣ ବାକ୍ୟ ଶୁଣି । ଅସୁର ନମେ ଚକ୍ରପାଣି ॥
ବଜାଇ ନାନା ବାଦ୍ୟ ରଙ୍ଗେ । ଉଷାକୁ ଅନିରୁଦ୍ଧ ସଙ୍ଗେ ॥
ରଥେ ବସାଇ ବଳି-ବଳା । କୃଷ୍ଣ ସମୀପେ ଆଣି ଦେଲା ॥
ଉଷା ସହିତେ ଅନିରୁଦ୍ଧ । ଦେଇ ନମିଲେ କୃଷ୍ଣ ପାଦ ॥
ଯାଦବ ବଳ ମଧ୍ୟେ ହରି । ବରକନ୍ୟାଙ୍କୁ ରଥେ ଧରି ॥
ରୁଦ୍ରଙ୍କୁ କରି ନମସ୍କାର । ଦ୍ୱାରକା ବିଜେ ଦାମୋଦର ॥

( ଭାଗବତ : ଜଗନ୍ନାଥ ଦାସ ୧୦ମ ସ୍କଃ ୬୮ ଅ: ]

ଦୁଇ ସହୋଦର ଭାଇ ନାଟକରେ ଖେଳ କରନ୍ତି, ଉଭୟେ ପକ୍ଷ ବିପକ୍ଷ ହୋଇ ଲଢ଼ନ୍ତି, ଜଣେ ଅନ୍ୟ ଜଣକୁ ମାରେ, ଧକ୍‌କା ଦିଏ, ଗାଲିଗୁଲଜ କରେ । କିନ୍ତୁ ନାଟକ ସମାପ୍ତ ହୋଇଗଲେ ଉଭୟେ ହସଖୁସି ହୋଇ ପ୍ରେମରେ ମିଶି ଯାଆନ୍ତି ଓ ନିଜ ନିଜ ମଧ୍ୟରେ କଥାବାର୍ତ୍ତା ହୁଅନ୍ତି । କହନ୍ତି କୁହ ତ ଭାଇ ଅଭିନୟ କିପରି ହେଲା ? ସେହିପରି ଭଗବାନ୍ ହିଁ ବ୍ରହ୍ମା, ବିଷ୍ଣୁ, ଶିବ ଓ ସୁର ଅସୁର ଆଦି ରୂପ ହୋଇ କ୍ରୀଡ଼ା କରି-ଥାଆନ୍ତି । ପରସ୍ପର ମଧ୍ୟରେ ଯୁଦ୍ଧ କରନ୍ତି । ଅଜ୍ଞାନୀ ବୁଝେ ଯେ, ଏମାନେ ବାସ୍ତବରେ ଯୁଦ୍ଧ କରୁଛନ୍ତି । ଯେଉଁ ମାୟାର ଆଶ୍ରୟରେ ଏହିସବୁ ଅଭିନୟ ହେଉଅଛି । ସେଥିରେ ବାସ୍ତବିକତା ଆସିବ କେଉଁଠୁ ? ଏହା ତ ଭଗବାନଙ୍କର ବିନୋଦ । ହରିହର ପରସ୍ପର ମଧ୍ୟରେ ଅଭିନ୍ନ । କ୍ରୀଡ଼ା ନିମନ୍ତେ ସେ ଭିନ୍ନ ଭିନ୍ନ ଦିଶା ପଡ଼ନ୍ତି ଓ ନିଜ ନିଜ ମଧ୍ୟରେ ଯୁଦ୍ଧରୂପୀ କ୍ରୀଡ଼ା ଆଦି କରନ୍ତି । ଜଣେ ଅନ୍ୟ ଜଣଙ୍କୁ ହରାଇ ଦିଅନ୍ତି ସତ; କିନ୍ତୁ ସେମାନଙ୍କ ମଧ୍ୟରେ ହାରିବା ଜିତିବା ମିଥ୍ୟା । ସେ ତ ସ୍ୱୟଂ ଅଜିତ ଓ ଅପରାଜିତ ଅଟନ୍ତି ।

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ଯେତେବେଳେ ଭଗବାନଙ୍କଠାରୁ ଆଭୟ ପାଇ ମହେଶ୍ୱର ଜ୍ୱର ଚାଲିଗଲା, ସେତେବେଳେ ବାଣାସୁର ପୁନଃ ରଥରେ ଚଢ଼ି ଯୁଦ୍ଧ କରିବା ନିମିତ୍ତ ଭଗବାନଙ୍କ ସମ୍ମୁଖକୁ ଆସିଲା । ଏଥର ସେ ନୂତନ ରଥ ନବୀନ ଅସ୍ତ୍ରଶସ୍ତ୍ର ଓ ନବୀନ ଉତ୍ସାହ ନେଇ ରଣଭୂମିରେ ପଦାର୍ପଣ କଲା । ଆସିବା ମାତ୍ରେ ସେ ନିଜର ସହସ୍ର ଭୁଜରେ ଚକ୍ରପାଣି ଭଗବାନଙ୍କୁ ନାନା ପ୍ରକାର ଦିବ୍ୟାସ୍ତ୍ର ନିକ୍ଷେପ କଲା । ଭଗବାନଙ୍କ ଉପରେ ବାଣ ବର୍ଷା ହେବାକୁ ଲାଗିଲା । ବର୍ଷା ହେଲେ ସୁମେରୁ ଯେପରି ଟିକିଏ ହେଲେ ବିଚଳିତ ହୁଏ ନାହିଁ, ଭଗବାନ ସେହିପରି ତାହାର ଅସ୍ତ୍ରଶସ୍ତ୍ର ଭୟରେ ଟିକିଏ ହେଲେ ବି ବିଚଳିତ ହେଲେ ନାହିଁ । ଭଗବାନ ଯେତେବେଳେ ଦେଖିଲେ, ଅସୁର ଆଦୌ ଅଟକୁ ନାହିଁ, ନିରନ୍ତର ଅସ୍ତ୍ର କ୍ଷେପଣ କରିବାରେ ଲାଗିଛି, ସେତେବେଳେ ସେ ଚିନ୍ତା କଲେ—"ଏବେ ଏହା ସହିତ ମୁଁ ଅଧିକ ସମୟ ଅସ୍ତ୍ର ଯୁଦ୍ଧ ନାହିଁକି କରିବି । ଯେଉଁ ବାହୁମାନଙ୍କରେ ସେ ଅସ୍ତ୍ରଶସ୍ତ୍ର କ୍ଷେପଣ କରୁଛି, ସେଗୁଡ଼ିକୁ ତ ମୂଳରୁ କାଟିଦେଲେ କାମ ସରିଯିବ । ବାଂଶ ନ ଥିଲେ ବାଂଶୋଋ କିପରି ବାଜିବ ? ଏହା ଚିନ୍ତାକରି ଭଗବାନ ତାହାର ବିଶାଳ ବିଶାଳ ବାହୁଗୁଡ଼ିକୁ ମୂଳରୁ କାଟିବାରେ ଲାଗିଲେ । ଦୂରରେ ଥାଇ ଭକ୍ତବତ୍ସଳ ଶଙ୍କର ଏହା ଦେଖୁଥିଲେ । ଯେତେବେଳେ ସେ ଦେଖିଲେ ଯେ ଭଗବାନ ତ ଆଉ ନ ଅଟକି ବାଣ ବୃଷ୍ଟି କରି ବାଣାସୁରର ବାହୁଗୁଡ଼ିକୁ ବୃକ୍ଷ ଶାଖା ଭଳି କାଟି ପକାଉଛନ୍ତି, ସେତେବେଳେ ସେ ସଙ୍ଗେ ସଙ୍ଗେ ଚକ୍ରପାଣି ଭଗବାନ ଶ୍ରୀକୃଷ୍ଣଙ୍କ ସମ୍ମୁଖକୁ ଗଲେ ଓ ଅତ୍ୟନ୍ତ ନମ୍ରତାର ସହିତ ହାତଯୋଡ଼ି ତାଙ୍କ ସ୍ତୁତି କରିବାକୁ ଲାଗିଲେ । ସେ କହିଲେ—"ପ୍ରଭୋ ! ଆପଣ ତ ପରମ ଜ୍ୟୋତି ସ୍ୱରୂପ, ସର୍ବବ୍ୟାପକ, ଅଜ, ଅନାଦି, ଅଚ୍ୟୁତ, ନିର୍ବିକାର, ନିର୍ଲେପ, ନିରଞ୍ଜନ ଓ ନିତ୍ୟ ଅଟନ୍ତି । ଏ ସମସ୍ତ ପ୍ରପଞ୍ଚ ଆପଣଙ୍କ

ସତ୍ତ୍ୱରୁ ହିଁ ସତ୍ୟଭଳି ପ୍ରତୀତ ହେଉଅଛୁ ।" ଏହିପରି ବହୁତ ସମୟ ଧରି ଶୁଦ୍ଧଜ୍ଞାନସ୍ୱରୂପଙ୍କ ବହୁ ଲମ୍ବାଚୌଡ଼ା ସ୍ତୁତି କରିସାରି ଶିବ କହିଲେ—"ପ୍ରଭୋ ! ଏ ବାଣାସୁର ମୋର ଭକ୍ତ, ଏହାକୁ ମୁଁ ଅଭୟବର ପ୍ରଦାନ କରିଛି, ଆପଣ ମୋ ପ୍ରାର୍ଥନା ଶୁଣନ୍ତୁ । ଆପଣ ଯେପରି ଏହାର ପ୍ରପିତାମହ ପ୍ରହ୍ଲାଦଙ୍କୁ ଅଜର ଅମରତା ପ୍ରଦାନ କରି ଅଭୟ କରି ଦେଇଛନ୍ତି, ସେହିପରି ଏହାକୁ ମଧ୍ୟ ଅଭୟ କରି ଦିଅନ୍ତୁ । ଏହାକୁ ମାରନ୍ତୁ ନାହିଁ । ଇଏ ମଧ୍ୟ ଆପଣଙ୍କ କୃପା ଲାଭ କରି ନିର୍ଭୟ ହୋଇଯାଉ ।"

ଏହା ଶୁଣି ଭଗବାନ ଶ୍ରୀକୃଷ୍ଣ ହସି ହସି କହିଲେ—ଶଙ୍କର ! ଆପଣ ଧନ୍ୟ । କାହିଁକି ନ ହେବେ ପ୍ରଭୋ ! ଆପଣ ତ ସହଜେ ଭୋଳାନାଥ । ଆପଣଙ୍କ ହୃଦୟ ଦୟା ଓ ଅନୁଗ୍ରହରେ ପରିପୂର୍ଣ୍ଣ । ହେ ଶମ୍ଭୋ ! ଯାହାକୁ ଆପଣ ଅଭୟ କରି ଦେଇଛନ୍ତି, ମୁଁ ବା ତାକୁ ମାରିବି କିପରି ? ମୁଁ ତ ଆପଣଙ୍କ ବଚନର ଅନୁସାରେ ହିଁ ଏହାର ଅଭିମାନକୁ ଚୂର୍ଣ୍ଣ କରିବାକୁ ଆସିଥିଲି । ଏହାର ନିଜ ଶକ୍ତିପ୍ରତି ବହୁତ ଅଭିମାନ ହୋଇଯାଇଥିଲା । ସେ ଏ ସଂସାରରେ ନିଜଠାରୁ ବଳଶାଳୀ କାହାକୁ ଦେଖୁ ନଥିଲା । ଆପଣଙ୍କ ସହିତ ସେ ଯୁଦ୍ଧ କରିବାକୁ ବି ଉଦ୍ୟତ ହୋଇଥିଲା । କହୁଥିଲା, ମୋର ଏ ହାତଗୁଡ଼ିକ ଭାରସ୍ୱରୂପ ମୁଁ କେବଳ ବହନ କରୁଛି । ଏ ହାତଗୁଡ଼ିକରୁ ଯୁଦ୍ଧ କରିବା ପାଇଁ ସର୍ବଦା ଗଲୁ ଉଠୁଛି, ଆପଣଙ୍କ ବ୍ୟତୀତ ମୁଁ ଅନ୍ୟ କାହାରିକୁ ମୋ ସମକକ୍ଷ ଯୋଦ୍ଧା ଦେଖୁନାହିଁ ।" ସେତେବେଳେ ଆପଣ କହିଥିଲେ ନା, ମୋ ଭଳି ଜଣେ ଦିନେ ନା ଦିନେ ଆସି ତୋର ଗର୍ବକୁ ଖର୍ବ କରିବ ?" ମୁଁ ତ କେବଳ ଆପଣଙ୍କ ଆଜ୍ଞା ପାଳନ କରୁଅଛି ।"

ଶିବ କହିଲେ—"ମହାରାଜ ! ଏଇଟା ତ ମୂର୍ଖଟାଏ । ଯାହାକୁ ଥରେ ନିଜର କରି ଅଙ୍ଗୀକାର କରାଯାଏ, ତାହାର ଯେତେ ଅପରାଧ ହେଲେ ବି ବଡ଼ଲୋକ ତାହା କ୍ଷମା କରି ଦିଅନ୍ତି ।"

ଭଗବାନ୍ କହିଲେ—"ହଁ, ଆପଣ ଠିକ୍ କଥା କହୁଛନ୍ତି । ମୁଁ ମଧ୍ୟ ଏହାକୁ ମାରିବାକୁ ଇଚ୍ଛା କରୁ ନାହୁଁ । ଇଏ ମୋର ପରମଭକ୍ତ ବିରୋଚନ ନନ୍ଦନ ଦାନବୀର ମହାରାଜ ବଳିଙ୍କର ପୁଅ । ବଳିକୁ ମୁଁ ହପଟିବାର ଅଭୟ ପ୍ରଦାନ କରିଅଛି । ପୁନଶ୍ଚ ମୁଁ ତାହାର ପୁଅକୁ କିପରି ମାରି ପାରିବି ? ଏହାର ପ୍ରପିତାମହ ପ୍ରହ୍ଲାଦଙ୍କୁ ମଧ୍ୟ ମୁଁ ବର ଦେଇଥିଲି ଯେ, ତୋ ବଂଶର କାହାରିକୁ ମୁଁ ମାରିବି ନାହିଁ ।"

ଶଙ୍କର କହିଲେ—"ମହାରାଜ ! ଏହାକୁ ମାରିବା କିଣ ବଡ଼ କଥା ? ଆପଣ ଗେଣ୍ଡୁଫୁଲ ଡାଳପରି ତ ଏହାର ବାହୁଗୁଡ଼ିକୁ କାଟୁଅଛନ୍ତି ।

ଭଗବାନ ହସି ହସି କହିଲେ—"ଆଚ୍ଛା ଶଙ୍କର ! ଆପଣ ତ ଭୋଳାନାଥ, ଆଗପଛ କଥା ତ ଆପଣ ଚିନ୍ତା କରନ୍ତି ନାହିଁ । କଥାରେ ଅଛି "ଗର୍ଜିଗଲେ ସିଦ୍ଧି ମିଳେ ।"

ଆପଣଙ୍କ ନିକଟକୁ ଯିଏ ଆସେ, ତାକୁ ଆଖି ପିଛୁଳାକେ ବର ଦେଇ ଦିଅନ୍ତି, କହନ୍ତୁ ନା ଚନ୍ଦ୍ରାକର, ଏହାକୁ ତ ଆପଣ ସନ୍ତାନ ଭଳି ବର ଦେଇଦେଲେ । କ୍ଷୁଧା ନିବାରଣ ପାଇଁ ବିନା ଏଗୁଡ଼ିକ ସେ ବ୍ୟବହାର କରିବ ? ଏହି ସହସ୍ର ବାହୁରେ ସେ ଉପଦ୍ରବ ବ୍ୟତୀତ ଆଉ କ'ଣ ବା କରିବ ? ଏଥିପାଇଁ ମୁଁ ଏହାର ଅଯଥାରେ ଝୁଲୁଥିବା ବାହୁଗୁଡ଼ିକୁ କାଟି ପକାଉଛି । ଏବେ ଆଉ ଚାରୋଟି ମାତ୍ର ବାହୁ ତାହାର ରହିଗଲା । ସେ ଅଜର ଓ ଅମର ହେବ ଏବଂ ତାହାର ଏହି ଚାରୋଟି ବାହୁକୁ କେହି ଆଉ କାଟି ପାରିବେ ନାହିଁ । ଏହି ଚତୁର୍ଭୁଜ ବାଣାସୁର ଆପଣଙ୍କ ପାର୍ଷଦମାନଙ୍କ ମଧ୍ୟରେ ମୁଖ୍ୟ ହେବ । ଆଉ ତାହାର କୌଣସି ପ୍ରକାର ଭୟ ରହିବ ନାହିଁ ।"

ଏହା ଶୁଣି ଶିବ ପ୍ରସନ୍ନ ହେଲେ । ସେ ସଙ୍ଗେ ସଙ୍ଗେ ବାଣାସୁରକୁ ଏକ ଦିବ୍ୟ ସ୍ତୋତ୍ର ବତାଇଦେଲେ । ସେହି ସ୍ତୋତ୍ରରେ ସେ ବାସୁଦେବ ଭଗବାନଙ୍କୁ ସ୍ତୁତି କଲା ଓ ନତମସ୍ତକ ହୋଇ ତାଙ୍କ ପାଦ ପଦ୍ମରେ ପ୍ରଣାମ କଲା । ଭଗବାନ ବାସୁଦେବ ମଧ୍ୟ ତାକୁ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ଦେଖିଲେ ଓ ଅଭୟ ପ୍ରଦାନ କଲେ । ଏବେ ତ ସନ୍ଧି ହୋଇଗଲା । ଶଙ୍କରଙ୍କ ଯୋଗୁଁ ବାଣାସୁରର ସମସ୍ତ ଇଚ୍ଛା ପୂର୍ଣ୍ଣ ହେଲା । ତାହାର କନ୍ୟାକୁ ଉତ୍ତମ ଘର ବର ମିଳିଗଲା । ସେ ନଗରକୁ ଯାଇ ଦିବ୍ୟ ରଥ ସଜାଇଲା, ସ୍ନାନାଦି କରାଇ ଦିବ୍ୟ ବସ୍ତ୍ରାଭୂଷଣ ପିନ୍ଧାଇ ଉଷା ସହିତ ଅନିରୁଦ୍ଧଙ୍କୁ ସେହି ରଥରେ ବସାଇଲା । ଆଗେ ଆଗେ ବାଦ୍ୟ ବଜାଇ ବାଦ୍ୟକାରମାନେ ଚାଲିଲେ । ଅତି ଆନନ୍ଦର ସହିତ ସେ ବର-କନ୍ୟାଙ୍କୁ ନେଇ ଭଗବାନଙ୍କ ସେବାରେ ସମୁପସ୍ଥିତ ହେଲା । ଯୌତୁକ ସ୍ୱରୂପ ସେ ବହୁତ ହାତୀ, ଘୋଡ଼ା, ରଥ, ସୁବର୍ଣ୍ଣ, ମଣି, ମୁକ୍ତା, ବସ୍ତ୍ର,ଆଭୂଷଣ, ଗନ୍ଧ, ଚନ୍ଦନ, ମୃଗଚର୍ମ, କମ୍ବଳ, ଶାଲ, ଦାସ, ଦାସୀ ଓ ଅନ୍ୟାନ୍ୟ ଗୃହୋପଯୋଗୀ ସମସ୍ତ ସାମଗ୍ରୀ ଦେଲା । ଏହି ସମସ୍ତ ବସ୍ତୁ ଗ୍ରହଣ କରି ଓ ଶିବଙ୍କଠାରୁ ଅନୁମତି ନେଇ ଯାଦବ ସୈନ୍ୟଙ୍କ ସହିତ ଶ୍ୟାମସୁନ୍ଦର ନିଜ ପୁରୀକୁ ଫେରି ଆସିଲେ । ଅନିରୁଦ୍ଧଙ୍କୁ ନୂତନ ପତ୍ନୀଙ୍କ ସହିତ ଦେଖି ଦ୍ୱାରକାବାସୀ ଆନନ୍ଦିତ ହେଲେ । ସମସ୍ତେ ମିଶି ତେଜସ୍ୱୀ ଭଗବାନଙ୍କ ଓ ନବବଧୂ ସହିତ ଅନିରୁଦ୍ଧଙ୍କୁ ଅତ୍ୟନ୍ତ ସ୍ୱାଗତ ସତ୍କାର କଲେ । ସମସ୍ତ ପୁରବାସୀ ଭଗବାନଙ୍କ ସହିତ ବରବଧୂଙ୍କୁ ଆଗରେ ଚଳାଇ ପଛରେ ଜୟ ଜୟକାର ଧ୍ୱନି କରି ଚାଲିଲେ । ବେଦଜ୍ଞ ବ୍ରାହ୍ମଣ ଆଗେ ଆଗେ ବେଦ ପାଠ କରି ଚାଲିଥିଲେ । ଶଙ୍ଖ, ଢୋଲ, ଦୁନ୍ଦୁଭି ଆଦି ବହୁ ପ୍ରକାରର ବାଦ୍ୟ ବାଜୁଥିଲା । ସ୍ଥାନେ ସ୍ଥାନେ ସ୍ୱାଗତ ତୋରଣମାନ କରାଯାଇ ଶୋଭାବର୍ଦ୍ଧନ କରୁଥିଲା । ରାଜପଥରେ ଚୌଛକ ଓ ଶ୍ରେଷ୍ଠ ଶ୍ରେଷ୍ଠ ଗଳି ରାସ୍ତାରେ ସୁଗନ୍ଧିତ ଜଳ ପିଚକାରୀ ଦ୍ୱାରା ସିଞ୍ଚନ କରାଯାଉଥିଲା । ଆଡ଼ମ୍ବର ସହକାରେ ସଜା ସଜି ହୋଇଥିବା ଦ୍ୱାରବତୀ ନଗରୀରେ ସମସ୍ତେ ପ୍ରବେଶ କଲେ ।

ସୂତ କହିଲେ—ମୁନିଗଣ ! ମୁଁ ଆପଣମାନଙ୍କୁ ଅତି ସଂକ୍ଷେପରେ ଅନିରୁଦ୍ଧ ଓ ଉଷାଙ୍କ ବିବାହ ପ୍ରସଙ୍ଗ କହିଲି । ଏହି କଥା ପ୍ରସଙ୍ଗରେ ଶିବ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ

ହୋଇଥିବା ଯୁଦ୍ଧ ଭଗ୍ନସ୍ତରେ ମଧ୍ୟ କହିଲି । ଶିବ ଓ ଶ୍ରୀକୃଷ୍ଣ ଏ ଦୁହେଁ ଅଭିନ୍ନ । ଏକ ଈଶ୍ୱର ଦୁଇ ରୂପରେ ପ୍ରକାଶିତ ହୋଇଅଛନ୍ତି । ଏହାଙ୍କ ମଧ୍ୟରେ ହୋଇଥିବା ଯୁଦ୍ଧ ଅସଲରେ ବାସ୍ତବ ନୁହେଁ, ତାହା ଲୋକଦେଖାଣିଆ ନଥିଲା । ମାନବଲୀଳା ପ୍ରଦର୍ଶନ ହିଁ ଥିଲା ଏହାର ମୂଳ ଉଦ୍ଦେଶ୍ୟ । ଏହି ହରିହରଯୁଦ୍ଧ ଦ୍ୱିବ୍ୟ ଯୁଦ୍ଧର ପରମ ପବିତ୍ର ପ୍ରସଙ୍ଗକୁ ଯେଉଁ ବ୍ୟକ୍ତି ପ୍ରେମପୂର୍ବକ ଶ୍ରବଣକରନ୍ତି, ସେମାନଙ୍କର ପରାଜୟ କେବେ ହୁଏନାହିଁ । ଯେଉଁ କୁମାରୀ ଏହି ପ୍ରସଙ୍ଗକୁ ଶ୍ରବଣ କରେ ତାକୁ ସୁନ୍ଦର ସୁସ୍ଥ ସବଳ ବର ମିଳେ । ଯେଉଁ ବିବାହିତା ସ୍ତ୍ରୀଲୋକମାନେ ଏହା ଶ୍ରବଣ କରନ୍ତି, ସେମାନେ ପୁତ୍ରବତୀ ହୁଅନ୍ତି । ନିର୍ଦ୍ଧନ ଶୁଣିଲେ ଧନ ରତ୍ନ ଲାଭ କରେ ଓ ଯେଉଁ ଭକ୍ତ ଏହା ଶୁଣନ୍ତି ତାଙ୍କୁ ଭଗବାନଙ୍କର ଅହୈତୁକୀ ଭକ୍ତି ଲାଭ ହୁଏ । ଯେଉଁ ଶୂର ବୀର ପ୍ରାତଃକାଳରେ ଶଯ୍ୟା ତ୍ୟାଗ କରି ଏହି ପ୍ରସଙ୍ଗ ପାଠ କରନ୍ତି, ତାଙ୍କର କେବେହେଲେ ପରାଜୟ ହୁଏ ନାହିଁ ।

ଏହା ଶୁଣି ଶୌନକ କହିଲେ—"ହେ ସୂତ ! ଭଗବାନଙ୍କର ସମସ୍ତ ଲୀଳା ଅତ୍ୟନ୍ତ ମଧୁର ଓ ସରସ । କୃପା କରି ଆଉ ଏପରି ଏକ ଲୀଳା ଆମ୍ଭମାନଙ୍କୁ ଶୁଣାନ୍ତୁ । ଦ୍ୱାରକାପୁରୀରେ ରହି ଭଗବାନ ଆଉ କେଉଁ ପ୍ରସିଦ୍ଧ ଲୀଳା କରିଥିଲେ, ତାହା ଶୁଣିବା ପାଇଁ ଆମ୍ଭେମାନେ ଇଚ୍ଛା କରୁଛୁ ।"

ସୂତ କହିଲେ—"ଭଗବାନ, ଯେପରି ଅନନ୍ତ, ତାଙ୍କର ଲୀଳା ମଧ୍ୟ ସେହିପରି ଅନନ୍ତ । ସେ ବ୍ରହ୍ମଣ୍ୟ ଦେବ । ସେ ସ୍ୱୟଂ ଅବତୀର୍ଣ୍ଣ ହୋଇ ବ୍ରାହ୍ମଣଙ୍କୁ ସମ୍ମାନିତ କରନ୍ତି ଓ ନିଜର ପୁତ୍ର ପୌତ୍ରଙ୍କୁ ମଧ୍ୟ ଏହି ଶିକ୍ଷା ଦିଅନ୍ତି । ଆଗାମୀ ପ୍ରସଙ୍ଗରେ ଭଗବାନ ଯେପରି ମହାରାଜ ନୃଗଙ୍କୁ ଉଦ୍ଧାର କରିଥିଲେ ଓ ସେହି ପ୍ରସଙ୍ଗରେ ନିଜର ପୁତ୍ର ପୌତ୍ରଙ୍କୁ ଯେପରି ଶିକ୍ଷା ଦେଇଥିଲେ ସେହି ନୃଗୋଦ୍ଧାର କଥା ମୁଁ ଆପଣମାନଙ୍କୁ କହିବି । ଆପଣମାନେ ମନଯୋଗ ସହକାରେ ତାହା ଶ୍ରବଣ କରିବେ ।"

## ଛପ୍‌ପୟ

ଇସ୍ଥିତ ସୁତ ହରି ହଁସେ ବାଣ ପୈ ଦୟା ଦିଖାୟୀ ।
ଅଜର ଅମର କରି ଦୟୋ ପ୍ରତିଜ୍ଞା ପ୍ରଥମ ନିଭାୟୀ ॥
ଭୟୋ ବାପକୁଁ ଜ୍ଞାନ ଲଇ ବର ବଧୂ ଦିଖାୟେ ।
ପାଇ ଦାନ ସମ୍ମାନ ସକଲ ଯାଦବ ହରଷାୟେ ॥
ହୁଇ ହରତେଂ ଅନୁମତି ଲଇ, ପୁରୀ ଦ୍ୱାରକା ଚଲି ଦୟେ ।
ବଧୂ ସହିତ ଅନିରୁଦ୍ଧ ଲଖି, ଅତି ପ୍ରସନ୍ନ ସବ ଜନ ଭୟେ ॥



# ନୃଗୋଦ୍ଧାର କଥା

ନୃଗୋ ନାମ ନରେନ୍ଦ୍ରୋଽହ ମିକ୍ଷ୍ୱାକୁତନୟଃ ପ୍ରଭୋ ।
ଦାନଷ୍ୱାଖ୍ୟାୟମାନେଷୁ ଯଦି ତେ କର୍ଣ୍ଣମସ୍ପୃଶମ୍ ॥ *

( ଶ୍ରୀଃ ଭା. ୧୦ ମ ସ୍କନ୍ଧ. ୬୪ ଅଃ ୧୦ମ ଶ୍ଳୋକ)

## ଛପ୍ପୟ

ସ୍ୱୟଂ ସୂତ ପୁନ କହେଁ—"ଚରିତ ନୃଗ ନୃପଣ ସୁନାଉଁ ।
କୈସେ ହରି ଉଦ୍ଧାର କରେଯା ସୋଉ ବୃତ୍ତ ବତାଉଁ ॥
ଯଦୁକୁଲ କେ କଛୁ କୁମର ଗୟେ ଖେଲନ ବନ ମାହୀଁ ।
ଲଗୀ ପ୍ୟାସ ଇକ ଲଖେଯା କୂପ ଜଲ ତାମେଂ ନାହୀଂ ॥
ପରବତ ସମ ଗିରଗିଟ ପରେଯା, ତାହି ନିକାରତ . ଦୟୁଗଣ ।
ନାହିଁ ନିକସେଯା ତବ ଆଇ ତହଁ, କରେଯା ପ୍ରକଟ ହରି ତାସୁ ଯଶ ॥

ଭଗବାନଙ୍କର ସ୍ୱଭାବ ହେଉଛି, ସେ ନିଜର ଭକ୍ତଙ୍କୁ ସର୍ବଦା ବଡ଼ କରିବା । ନିଜର ଆଶ୍ରିତଙ୍କର ପ୍ରଶଂସା ଯେତେ କଲେ ମଧ୍ୟ ସେ ପରିତୋଷ ଲାଭ କରିପାରନ୍ତି ନାହିଁ । କେବଳ ଭଗବାନଙ୍କର ନାହିଁକ, ତାଙ୍କ ଭକ୍ତମାନଙ୍କର ସ୍ୱଭାବ ମଧ୍ୟ ଠିକ୍ ସେହିପରି । ଭକ୍ତମାନେ ସମସ୍ତଙ୍କୁ ସମ୍ମାନ ପ୍ରଦର୍ଶନ କରନ୍ତି । ଯେ ଅନ୍ୟଙ୍କୁ ସମ୍ମାନ ନ ଦିଏ ସେ ଭକ୍ତ ନୁହେଁ । ନିଜେ ଅମାନୀ ରହି ଅନ୍ୟଙ୍କୁ ମାନ ଦେବା ହିଁ ଭକ୍ତଙ୍କ ଲକ୍ଷଣ । ଭଗବାନ ତ ଜଗତ୍ପୂଜ୍ୟ; କିନ୍ତୁ ସେ ମଧ୍ୟ ବ୍ରାହ୍ମଣଙ୍କୁ ନିଜର ଦେବତା ବୋଲି ମାନନ୍ତି ।

---

* ମୋର ନାମ ନୃଗରାଜା ମୁହିଁ । ଇକ୍ଷ୍ୱାକୁ ବଂଶେ ଜାତ ହୋଇ ॥
ଜଗତ ମଧ୍ୟେ ଯେତେ ଦାନୀ । ତାହାଙ୍କ ମଧ୍ୟେ ମୁଁ ଅଗ୍ରଣୀ ॥
ତୁ ତାହା ଅଛୁ ଭଲେ ଜାଣି । ମୁଁ କି କହିବି ପରମାଣି ॥

[ ଭାଗବତ : ଜଗନ୍ନାଥ ଦାସ : ୧୦ମ ସ୍କ. ୬୧ ଅ. ]

ସୂତ କହିଲେ—"ମୁନିଗଣ ! ଦିନକର କଥା, ସାମ୍ବ, ପ୍ରଦ୍ୟୁମ୍ନ, ଚାରୁଭାନୁ ଓ ଗଦ ଆଦି ବହୁ ଯଦୁବଂଶୀୟ ରାଜକୁମାର ବନ ଉପବନରେ ବିହାର କରି କରି ଅନେକ ଦୂର ପର୍ଯ୍ୟନ୍ତ ଚାଲିଯାଇଥିଲେ । ଯଦି ବା ଏମାନେ ବଡ଼ ହୋଇ ଯାଇଥିଲେ, ଏମାନଙ୍କର ପୁଅ ନାତି ସବୁ ହୋଇଥିଲେ; କିନ୍ତୁ ଏମାନଙ୍କର ପିତା, ପିତାମହ ଆଦି ଜୀବିତ ଥିଲେ । ଏଥିପାଇଁ ଏମାନଙ୍କୁ କୁମାର କୁହାଯାଉଥିଲା । ଅନେକ ଦୂର ପଥ ଚାଲିଯାଇ ଥିବାରୁ ସେଠାରେ ଏମାନଙ୍କୁ ଖୁବ ଶୋଷ ହେଲା । ସେମାନେ ଏଣେ ତେଣେ ଜଳ ଖୋଜିବାକୁ ଲାଗିଲେ । କେତେକ ଦୂର ଯିବାପରେ ଏମାନେ ଏକ ବିରାଟ ବାମ୍ପୀ ଦେଖିଲେ । ତା' ଭିତରକୁ ଏମାନେ ଚାହିଁ ଦେଖନ୍ତି ତ ଏକ ପାହାଡ଼ ସଦୃଶ ଜୀବ ସେହି ବାମ୍ପୀରେ ପଡ଼ିଛି । ସେମାନେ ଏତେବଡ଼ ଜୀବ ପୂର୍ବରୁ କେବେ ଦେଖି ନଥିଲେ । ସେମାନେ ଭାବିଲେ—"ଏହି ଜୀବ କେଉଁଠାରୁ ଚାଲି ଆସି ଏହି ବାମ୍ପୀରେ ପଡ଼ିଯାଇଛି । ଏହାକୁ ଟାଣି ବାହାର କରିବା ।" ଏହା ବିଚାର କରି ସେମାନେ ପାଣି ପିଇବା କଥା ଭୁଲିଯାଇ ତାକୁ ବାମ୍ପୀରୁ ବାହାର କରିବାକୁ ଚେଷ୍ଟା କଲେ । ସେମାନଙ୍କର ସେହି ଜୀବଠାରେ ଦୟା ହୋଇଥିଲା ଯେ, ଯଦି ବହୁତ ଏପରି ବାମ୍ପୀ ଭିତରେ ସେ ପଡ଼ିରହେ, ତାହାହେଲେ ନିଶ୍ଚୟ ମରିଯିବ । ଆହୁରି ମଧ୍ୟ ସେମାନେ ଏଥିପାଇଁ ଆଶ୍ଚର୍ଯ୍ୟ ହୋଇଥିଲେ ଯେ ଜୀବଟି ସୁବର୍ଣ୍ଣଭଳି ଅତି ଉଜ୍ଜ୍ୱଳ ଦେଖାଯାଉଛି, ତେଣୁ ତାହା ସାଧାରଣ ଜୀବ ନୁହେଁ । ତେଣୁ ସେମାନେ ତାକୁ ବାମ୍ପୀରୁ କାଢ଼ି ଦେଖିବା ପାଇଁ ସେମାନଙ୍କର ଆଗ୍ରହ ବଢ଼ିଗଲା । ପ୍ରଥମେ ସେମାନେ ଯାଇ ଷଣ ଦ୍ୱାରା ପ୍ରସ୍ତୁତ (ଝଣପଟ ରସି) ବଡ଼ ବଡ଼ ମୋଟା ଦଉଡ଼ି ନେଇ ଆସିଲେ । ସେଥିରେ ସେହି ଜୀବକୁ ବାନ୍ଧି ପଦାକୁ ବାହାର କରିବାକୁ ଚେଷ୍ଟା କଲେ । ଯେତେବେଳେ ସେ ବାହାରି ନ ପାରିଲା, ସେତେବେଳେ ଚର୍ମ ନିର୍ମିତ ସୁଦୃଢ଼ ରସି ନେଇ ଆସି ସେଥିରେ ଯେତେ ଆବଶ୍ୟକ ସେତେ ଯୋଡ଼ି ତାକୁ ବାହାରକୁ ଟାଣି ଆଣିବାକୁ ଚେଷ୍ଟା କଲେ । କିନ୍ତୁ ସେ ଜନ୍ତୁ କୌଣସି ଉପାୟରେ ବାମ୍ପୀରୁ ବାହାରି ପାରିଲା ନାହିଁ ।

ଶେଷରେ କେତେକ ରାଜକୁମାର ଦୌଡ଼ି ଦୌଡ଼ି ଯାଇ ଭଗବାନଙ୍କୁ ଏହି ଘଟଣା ଜଣାଇଲେ । ସେମାନେ ଯାଇ ଅତି ବିସ୍ମୟ ସହକାରେ କହିଲେ—"ହେ ପ୍ରଭୋ ! ଗୋଟିଏ ଅତି ଅଦ୍ଭୁତ କଥା । ଆମ୍ଭେମାନେ ବନବିହାର କରୁ କରୁ ଏକ ଉପବନରେ ଯାଇ ପହଞ୍ଚି ଦେଖିଲୁ ସେଠାରେ ବାମ୍ପୀ ଭିତରେ ଏକ ସୁବର୍ଣ୍ଣ ସଦୃଶ ଜାଜ୍ଜ୍ୱଲ୍ୟମାନ ପାହାଡ଼ ଭଳି ସ୍ଥୂଳକାୟ ଏକ ଗିରଗିଟ ଜୀବ ପଡ଼ିଛି । ଆମ୍ଭେମାନେ ତାକୁ ବାମ୍ପୀ ଭିତରୁ କାଢ଼ିବା ପାଇଁ ଅନେକ ଚେଷ୍ଟା କଲୁ; କିନ୍ତୁ ତାକୁ ବାହାର କରିପାରିଲୁ ନାହିଁ । ତାହାର ଶରୀର ଲହୁଣୀ ଭଳି ଚିକ୍‌କଣ । ମୁଖ ଉପରେ କଣ୍ଟା କଣ୍ଟା ଚିହ୍ନ, ସେ ଅତି ରହସ୍ୟମୟ

ଢଙ୍ଗରେ ଆଖି ମିଟି ମିଟି କରୁଛି । ଆମ୍ଭେମାନେ ସେହି ଜୀବ ସମ୍ବନ୍ଧରେ ଜାଣିବା ପାଇଁ ଅତ୍ୟନ୍ତ କୌତୂହଳୀ ହୋଇପଡ଼ୁଛୁ ଯେ, ଏହା କି ପ୍ରକାର ଜୀବ ?"

ପିଲାମାନଙ୍କର ଏପରି ଆଗ୍ରହ ଦେଖି ଭଗବାନ ରଥରେ ବସି ସେମାନଙ୍କ ସହିତ ସେଠାକୁ ଗଲେ । ସେ ତାକୁ ଦେଖି ହସି ହସି ପିଲାମାନଙ୍କୁ କହିଲେ—"ଛି, ଛି, ତୁମ୍ଭେମାନେ ଏହି ସାମାନ୍ୟ ଜୀବକୁ ଦାମ୍ଫୀରୁ ବାହାର କରି ପାରିଲ ନାହିଁ ?" ଏହା କହି ସେ ନିଜର ବାମ ହାତ ଦାମ୍ଫୀ ଭିତରକୁ ବଢ଼ାଇ ତାକୁ ସଙ୍ଗେ ସଙ୍ଗେ ବାହାର କରିଦେଲେ । ଭଗବାନଙ୍କ ପଙ୍କଜ କରକମଳ ସ୍ପର୍ଶରେ ସେ ତାହାର ଶରୀର ଶୀଘ୍ର ତ୍ୟାଗ କରିଦେଇ ଏକ ଦିବ୍ୟ ରୂପ ବିଶିଷ୍ଟ ଦେବତା ପାଲଟିଗଲା । ସେତେବେଳେ ତାଙ୍କର ତେଜପୂର୍ଣ୍ଣ ଆଲୋକରେ ଦଶଦିଗ ଆଲୋକିତ ହୋଇଗଲା । ତପ୍ତ ସ୍ୱର୍ଣ୍ଣ ଭଳି ତାଙ୍କର ସୁନ୍ଦର ଶରୀର ଧାଇଁ ଧାଇଁ ହୋଇ ଦିଶୁଥାଏ । ବହୁମୂଲ୍ୟ ବସ୍ତ୍ର ଓ ଦିବ୍ୟାଭ ଦିବ୍ୟ ଆଭୂଷଣ ତାଙ୍କ ଅଙ୍ଗର ଶୋଭାକୁ ବଢ଼ାଉଥାଏ । ଅମ୍ଳାନ ପୁଷ୍ପର ସୁରଭିତ ମାଳା ସେ ପିନ୍ଧି ଥାଆନ୍ତି ଓ ହାତଯୋଡ଼ି ବିନୀତ ଭାବରେ ଭଗବାନଙ୍କ ସମ୍ମୁଖରେ ଠିଆ ହୋଇ ଥାଆନ୍ତି ।

ଭଗବାନଙ୍କୁ ତ ସମସ୍ତ ଜଣା, ତାଙ୍କ ନିକଟରେ ତ କୌଣସି କଥା ଅଜ୍ଞାତ ରହେ ନାହିଁ; କିନ୍ତୁ ସର୍ବସାଧାରଣଙ୍କୁ କିପରି ଏହି ଘଟଣାର ସମସ୍ତ ତଥ୍ୟ ଜଣାଇବେ ଯେ, କେଉଁ କାରଣରୁ ଏହାଙ୍କୁ ଏ ଅଧମ ଯୋନି ପ୍ରାପ୍ତ ହେଲା ।" ଏଥିପାଇଁ ଭଗବାନ ତାଙ୍କୁ ପଚାରିଲେ—"ହେ ମହାଭାଗ ! ଆପଣ କିଏ ? ଆପଣ ତ କୌଣସି ଶ୍ରେଷ୍ଠ ଦେବତାଙ୍କ ଭଳି ପ୍ରତୀତ ହେଉଛନ୍ତି ? କାରଣ ଆପଣଙ୍କର ରୂପ ଅତ୍ୟନ୍ତ ମନୋହର । ଏ ପର୍ଯ୍ୟନ୍ତ ତ ଆପଣ ଏହି ଅଧମ ଯୋନିରେ ଥିଲେ । ଏବେ ସଙ୍ଗେ ସଙ୍ଗେ ଦେବତା ହୋଇଗଲେ କିପରି ? ଆପଣ ଦେଖିବାକୁ ବଡ଼ ଭବ୍ୟ ଜଣାପଡୁଛନ୍ତି । କେଉଁ ଅପରାଧରୁ ଆପଣ ଏହି ଅଧମ ଯୋନି ପ୍ରାପ୍ତ ହୋଇଥିଲେ ? ଆପଣଙ୍କର ଓଜଃ, ତେଜ, ରୂପ ଓ ସୌନ୍ଦର୍ଯ୍ୟକୁ ଦେଖି ଏପରି ପ୍ରତୀତ ହେଉଛି ଯେ, ଆପଣ ଏହି ଯୋନି ପ୍ରାପ୍ତ ହେବାର ଯୋଗ୍ୟ ହୋଇ ନ ଥିବେ ? ଆପଣ ଏପରି କି ଅପରାଧ କରିଥିଲେ ଯେ, ଯେଉଁଥିପାଇଁ ଏହି ଗୋହିଲା ଏଣ୍ଡୁଅ ଯୋନିପ୍ରାପ୍ତ ହୋଇଥିଲେ ? ତାହା ପୁଣି ସାଧାରଣ ଗୋହିଲା ଏଣ୍ଡୁଅ ନୁହେଁ । ଏ ପ୍ରକାର ବିରାଟ ଡହଳ ଡାହାଳ ଗୋହିଲା ଏଣ୍ଡୁଅ ତ ମୁଁ ପୂର୍ବରୁ କେବେ ଦେଖି ନଥିଲି ? ଏବେ ତ ଆପଣ ଦେବତା ହୋଇ ଯାଇଛନ୍ତି ? ପୂର୍ବଜନ୍ମର ସମସ୍ତ ଘଟଣା ଆପଣଙ୍କର ନିଶ୍ଚୟ ମନେ ପଡ଼ୁଥିବ । ଯଦି ମୋ ନିକଟରେ ଏହା ଗୋପନ ରଖିବାକୁ ଉଚିତ୍ ମନେ ନ କରନ୍ତି, ତାହାହେଲେ ମୋତେ ଆପଣଙ୍କର ପୂର୍ବ ପରିଚୟ ଦେଇ ସମସ୍ତ ବୃତ୍ତାନ୍ତ ମୋ ଆଗରେ କୁହନ୍ତୁ ।"

ଭଗବାନଙ୍କର ଏ ପ୍ରକାର ପ୍ରଶ୍ନ ଶୁଣି ସେହି ଦେବତାରୂପୀ ପୁରୁଷ ସୂର୍ଯ୍ୟସମ ନିଜର ତେଜସ୍ୱୀ ମୁକୁଟଯୁକ୍ତ ମସ୍ତକ ପ୍ରଭୁଙ୍କ ପାଦପଦ୍ମରେ ରଖି ଶ୍ରଦ୍ଧା ଓ ଭକ୍ତିରେ ପ୍ରଣାମ କରି କହିବାକୁ ଆରମ୍ଭ କଲେ—"ପ୍ରଭୋ ! ମନୁପୁତ୍ର ମହାରାଜ ଇକ୍ଷ୍ୱାକୁଙ୍କର ନାମ ଆପଣ ଶୁଣିଥିବେ, ମୁଁ ସେହି ମହାରାଜ ଇକ୍ଷ୍ୱାକୁଙ୍କର ପୁତ୍ର । ମୁଁ ବହୁତଦିନ ଧରି ଏହି ସପ୍ତଦ୍ୱୀପା ମହୀକୁ ଧର୍ମପୂର୍ବକ ପାଳନ କରୁଥିଲି । ମୋତେ ସେତେବେଳେ ପୃଥିବୀର ପ୍ରସିଦ୍ଧ ଦାନୀ ବୋଲି ସମସ୍ତେ ଜାଣିଥିଲେ । ଆପଣ ଦାନୀରାଜାମାନଙ୍କ କଥା ପ୍ରସଙ୍ଗରେ ନିଶ୍ଚୟ 'ନୃଗ' ନାମ ଶୁଣିଥିବେ । ମୁଁ ଥିଲି ସେହି ନୃଗ ।"

ଭଗବାନ୍ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ମହାରାଜ ! ଆପଣ କ'ଣ ତାହାହେଲେ ସେହି ରାଜର୍ଷି ନୃଗ ? ଧନ୍ୟବାଦ, ଧନ୍ୟବାଦ ଆପଣଙ୍କୁ ! ଆପଣଙ୍କର ନାମ ତ ମୁଁ ନିତ୍ୟ ଶୁଣୁଅଛି । ନୃଗଙ୍କ ସମ କିଏ ଅବା ଦାନ କରି ପାରିଲା ? ରାଜନ୍ ! ମୁଁ ଆପଣଙ୍କ ଦାନ ସମ୍ବନ୍ଧରେ କିଛି ଆପଣଙ୍କଠାରୁ ଶୁଣିବାକୁ ଚାହୁଁଛି ? ଆପଣଙ୍କର ନାମ ଏତେ ବିଖ୍ୟାତ କିପରି ହେଲା ? ଆପଣ ଏପରି କି ଦାନ କରୁଥିଲେ ଯେ, ଯେଉଁଥିପାଇଁ ଆଜି ପର୍ଯ୍ୟନ୍ତ ଆପଣଙ୍କର କୀର୍ତ୍ତି ସଂସାରରେ ସେହିପରି ବିଦ୍ୟମାନ ରହିଛି ଓ ଯେପର୍ଯ୍ୟନ୍ତ ସୂର୍ଯ୍ୟ ଚନ୍ଦ୍ର ଓ ତାରାଗଣ ଆକାଶରେ ଥିବେ ସେ ପର୍ଯ୍ୟନ୍ତ ଆପଣଙ୍କ କୀର୍ତ୍ତି ଅକ୍ଷୁଣ୍ଣ ରହିବ ? ଆପଣ ନିଜ ସମ୍ବନ୍ଧରେ ସମସ୍ତ ଘଟଣା ବିସ୍ତାରିତ ଭାବରେ ମୋତେ କୁହନ୍ତୁ ।"

ଭଗବାନଙ୍କଠାରୁ ଆଜ୍ଞା ପାଇଁ ତାଙ୍କ ଚରଣରେ ନତମସ୍ତକ ହୋଇ ମହାରାଜ ନୃଗ କହିବାକୁ ଆରମ୍ଭ କଲେ—"ହେ ଜଗନ୍ନାଥ ! ଆପଣ ସର୍ବାନ୍ତର୍ଯ୍ୟାମୀ ଅଟନ୍ତି । ଜୀବ ଯାହା କିଛି ଶୁଭାଶୁଭ କର୍ମ କରେ ଆପଣ ତାହା ଜାଣନ୍ତି । ତେଣୁ ଆପଣଙ୍କୁ ମୋର କହିବାର କ'ଣ ଅଛି ? ତଥାପି ଆପଣ ଯେତେବେଳେ ଆଗ୍ରହ ପ୍ରକାଶ କରିଛନ୍ତି, ମୁଁ ଆପଣଙ୍କ ଆଜ୍ଞା ପାଳନ କରୁଛି ।

ସ୍ୱାମିନ୍ ! ନିଜ ମୁଖରେ ନିଜ ଦାନ ଧର୍ମ ସମ୍ବନ୍ଧରେ କହିବା ଦ୍ୱାରା ତାହାର ମହତ୍ତ୍ୱ ନଷ୍ଟ ହୋଇଯାଏ । କିନ୍ତୁ ଆପଣ ଯେତେବେଳେ ଆଜ୍ଞା କରୁଛନ୍ତି, ମୋତେ ବାଧ୍ୟ ହୋଇ କହିବାକୁ ପଡ଼ୁଛି । ଗୋ ଦାନ ଏ ସଂସାରରେ ସବୁଠାରୁ ଶ୍ରେଷ୍ଠ ଦାନ । ଗାଈର ଲୋମେ ଲୋମେ ଦେବତାମାନେ ବାସ କରନ୍ତି । ତେତିଶକୋଟି ଦେବତା ଗାଈର ଅଙ୍ଗରେ ଅବସ୍ଥାନ କରନ୍ତି । ଯେଉଁ ଦାତା ଗୋଦାନ କରେ, ସେ ସବୁକିଛି ଦାନ କଲା ବୋଲି ବିଚାର କରାଯାଏ । ମୁଁ କେତେ ଗୋଦାନ କରିଛି, ତାହା କହିପାରିବି ନାହିଁ । ପୃଥିବୀରେ କେତେ ଧୂଳିକଣା ଅଛି, ବର୍ଷା ସମୟରେ କେତେ ଜଳବିନ୍ଦୁ ବୃଷ୍ଟି ହୁଏ, ଆକାଶରେ କେତେ ତାରା ଅଛନ୍ତି, ଏଗୁଡ଼ିକର ସଂଖ୍ୟା ଯେପରି କରିବା ସମ୍ଭବ ନୁହେଁ, ସେହିପରି ମୁଁ ଦାନ କରିଥିବା ଗୋ ସମୂହ ଗଣନା କରି କହିବା ସମ୍ଭବ ନୁହେଁ । ମୁଁ

ଅସଂଖ୍ୟ ଗାଈ ଦାନ କରିଥିଲି । ସେଗୁଡ଼ିକ ବୁଢ଼ୀ କିମ୍ବା ଗ୍ରେଣ୍ଡା ଛେଣ୍ଡା ନଥିଲେ । ମୁଁ ଦୁହାଁଳିଆ ତରୁଣୀ ଗାଈ ଦାନ କରିଥିଲି । ସେଗୁଡ଼ିକ ଦେଖିବାକୁ ଅତ୍ୟନ୍ତ ସୁନ୍ଦର ଥିଲେ । ସେମାନଙ୍କ ମଧ୍ୟରୁ କୌଣସିଟି ମାରଣା ନଥିଲେ । ସବୁଗୁଡ଼ିକ ଧୀରସ୍ଥିର ଓ ଶାନ୍ତ ଥିଲେ । ସେଗୁଡ଼ିକର ଦୁଗ୍ଧ ଖୁବ୍ ବହୁଳ ଥିଲା । ସେଥିରୁ ଏକ ଚତୁର୍ଥାଂଶ ଘିଅ ବାହାରୁଥିଲା । ମୁଁ ଯେ କେବଳ ଗାଈଙ୍କୁ ଦାନ କରୁଥିଲି ତାହା ନୁହେଁ । ସେମାନଙ୍କ ଶିଙ୍ଗରେ ମୁଁ ସୁବର୍ଣ୍ଣ ଆଚ୍ଛାଦିତ କରାଇ ଦାନ କରୁଥିଲି । ସେମାନଙ୍କ ଗୋଡ଼ ଖୁରାରେ ରୌପ୍ୟ ଆଚ୍ଛାଦିତ କରାଉଥିଲି । ସେଗୁଡ଼ିକୁ କେଉଁଠାରୁ ଅନ୍ୟାୟ ଉପାୟରେ ବା ଅନ୍ୟାୟ ଧନରେ ମୁଁ ଆଣୁନଥିଲି, ନ୍ୟାୟୋପାର୍ଜିତ ଧନରେ ସେମାନଙ୍କୁ ମୁଁ କ୍ରୟ କରୁଥିଲି । ସମସ୍ତଙ୍କୁ ଶାଲ ଘୋଡ଼ାଇ ଦେଇ ଦାନ କରୁଥିଲି । ଏଣୁ ତେଣୁ ଅପାତ୍ରରେ ଦାନ ନକରି ବେଦଜ୍ଞ ଗୁଣଶୀଳ, ତପସ୍ୱୀ, ସଦାଚାରୀ, ନିରତ ଶାନ୍ତ-ଦାନ୍ତ ବେଦପାଠୀ ବହୁକୁଟୁମ୍ବୀ ଓ ଶିଷ୍ୟଙ୍କୁ ଶିକ୍ଷାଦାନ କରୁଥିବା ଆଚାର୍ଯ୍ୟ ବ୍ରାହ୍ମଣମାନଙ୍କୁ ଦାନ କରୁଥିଲି । କେବଳ ଯେ ଗୋଦାନ କରୁଥିଲି ତାହା ନୁହେଁ । ମୋର ଦାନ କରିବା ଏକ ବ୍ୟସନ ଥିଲା । ଦାନ ଦେବା ସମୟରେ ମୋ ହୃଦୟ ଅତ୍ୟନ୍ତ ଉଲ୍ଲସିତ ହେଉଥିଲା । ଦାନ କରି କରି ମୋର ତୃପ୍ତି ହେଉ ନଥିଲା । ମୁଁ ସର୍ବଦା ଚିନ୍ତା କରୁଥିଲି, ଏପରି କୌଣସି ଦାନ ଦେବି, ଯେଉଁଥିରେ କି ନେବା ବ୍ୟକ୍ତିର ଅନ୍ତରାତ୍ମା ସୁଖୀ ହେବେ । ଏହି ପ୍ରକାର ଗାଈଙ୍କ ବ୍ୟତୀତ ମୁଁ ବହୁତ ଉର୍ବର ଭୂମି ମଧ୍ୟ ଦାନ କରୁଥିଲି । ବହୁ ସୁବର୍ଣ୍ଣ, ଓ ସୁନ୍ଦର ସୁନ୍ଦର ଭବନ ଆଦି ମୁଁ ସଦାଚାରୀ ଦ୍ୱିଜମାନଙ୍କୁ ବିଧି ଅନୁସାରେ ଦାନ କରୁଥିଲି । ସୁନ୍ଦର ସୁନ୍ଦର ଅଶ୍ୱ, ବଡ଼ ବଡ଼ ଗଜ, ସୁଯୋଗ୍ୟ ବରମାନଙ୍କୁ ଧନଧାନ୍ୟ, ଦାସ ଦାସୀ ଓ ଗୃହୋପଯୋଗୀ ଅନ୍ୟାନ୍ୟ ସମସ୍ତ ସାମଗ୍ରୀ ମୁଁ ସର୍ବଦା ଦାନ କରୁଥିଲି । ଦାନ କରିବା ଛଡ଼ା ମୁଁ ବଡ଼ ବଡ଼ ଯାଗଯଜ୍ଞ କରାଉଥିଲି, ଅନେକ କୂପ ପୁଷ୍କରିଣୀ ଖୋଳାଉଥିଲି ଓ ବୃକ୍ଷ ରୋପଣ କରାଉଥିଲି । ଧର୍ମଶାଳା ଓ ବିଦ୍ୟାଳୟମାନ ପ୍ରତିଷ୍ଠା କରାଉଥିଲି । ସାରକଥା ହେଲା, ଦାନ ଧର୍ମ କରିବାରେ ମୁଁ କେବେହେଲେ କୃପଣ ହେଉନଥିଲି । ଉଦାର ହୃଦୟରେ ଅତ୍ୟନ୍ତ ପ୍ରସନ୍ନତା ପୂର୍ବକ ମୁଁ ଏହି ସବୁ କର୍ମ କରୁଥିଲି । କିନ୍ତୁ ଏସବୁ କରୁଥିଲେ ମଧ୍ୟ ମୋର ପ୍ରାରବ୍ଧ ବଶତଃ ମୁଁ ଏକ ବଡ଼ ଅପରାଧ କରି ପକାଇଲି । ମୋର ଦାନ ଯୋଗୁଁ ଜଣେ ବ୍ରାହ୍ମଣଙ୍କ ମନରେ ଦୁଃଖ ଜାତ ହେଲା । ତାହାର ପରିଣାମ ସ୍ୱରୂପ ମୋତେ ଏହି ଅଧମ ଯୋନି ଗ୍ରହଣ କରିବାକୁ ପଡ଼ିଲା ।"

ଭଗବାନ ପଚାରିଲେ—"ଆପଣ ଏପରି କି ଅପରାଧ କଲେ ଯେ, ଆପଣଙ୍କୁ ଏହି ଅଧମ ଯୋନିରେ ଜନ୍ମଲାଭ କରିବାକୁ ପଡ଼ିଥିଲା ?

ମହାରାଜ ନୃଗ ଦୁଃଖ ପ୍ରକାଶ କରି କହିଲେ—"ଅପରାଧ କଥା କ'ଣ କହିବି ଭଗବନ ! ଥରେ ଜଣେ ଶ୍ରେଷ୍ଠ ଯାଜ୍ଞିକ ବ୍ରାହ୍ମଣଙ୍କର ଏକ ଧେନୁ ଆସି ମୋ ଧେନୁ ଦଳ ସହିତ ମିଶି ଯାଇଥିଲା । ମୋର ତ ପ୍ରତ୍ୟହ ଲକ୍ଷ ଲକ୍ଷ ଗୋଦାନ କରାଯାଉଥାଏ । ସେବକମାନେ ଅନ୍ୟ ଗାଈମାନଙ୍କୁ ଦାନ କରାଯାଉଥିବା ସମୟରେ ସେହି ଯଜ୍ଞୀୟ କାମଧେନୁକୁ ମଧ୍ୟ ଦାନ କରିବା ଉଦ୍ଦେଶ୍ୟରେ ଅଜ୍ଞାତରେ ସଜାଇ ଦେଲେ । ମୁଁ ତ ଏସବୁ କଥା କିଛି ଜାଣି ନଥିଲି, ସହଜ ସ୍ୱଭାବରେ ମୁଁ ଯେପରି ସର୍ବଦା ଦାନ କରିଥାଏ, ସେହିପରି ଅନ୍ୟ ଗାଈଙ୍କ ସହିତ ମୁଁ ତାକୁ ବି ଦାନ କରିଦେଲି । ସେହି ବ୍ରାହ୍ମଣ ଏବେ ସୁନ୍ଦର ଗାଈଟିକୁ ପାଇ ମୁଗ୍ଧ ହୋଇଗଲେ । ସେ ଆନନ୍ଦ ମନରେ ତାହାକୁ ନେଇ ଚାଲିଗଲେ । ଏହାପରେ ଯେଉଁ ବ୍ରାହ୍ମଣଙ୍କର ଗୃହରେ ସେହି ଗାଈ ଥିଲା, ସେ ସର୍ବତ୍ର ଖୋଜିବାରେ ଲାଗିଥିଲେ । କାରଣ ତା ବିନା ତାଙ୍କର ଯଜ୍ଞ ପୂର୍ଣ୍ଣ ହୋଇପାରୁ ନଥିଲା । ଯଜ୍ଞରେ ଯେଉଁ ଧେନୁର ଦୁଗ୍ଧ ଓ ଘୃତରେ ବିଶେଷ ଆହୁତି ଦିଆଯାଏ, ସେହି ଯଜ୍ଞୀୟ ଧେନୁକୁ ରକ୍ଷା କରିବା ଅତି ଆବଶ୍ୟକ । ସେ ହଜିଗଲେ ବା ମରିଗଲେ ବଡ଼ ପାପ ଲାଗେ । ଯଜ୍ଞ ପୂର୍ଣ୍ଣ ହୋଇପାରେ ନାହିଁ । ଦୈବ ଯୋଗକୁ ଯେତେବେଳେ ସେହି ବ୍ରାହ୍ମଣ ଗାଈଟିକୁ ଦାନ ଗ୍ରହଣ କରି ନେଇ ଯାଉଥିଲେ, ସେତେବେଳେ ପଥ ମଧ୍ୟରେ ସେହି ଗାଈର ପ୍ରକୃତ ମାଲିକ ସେହି ଯାଜ୍ଞିକ ବ୍ରାହ୍ମଣ ମିଳିଗଲେ । ନିଜର ଯଜ୍ଞୀୟ ଗାଈକୁ ଦେଖି ଆନନ୍ଦରେ ବ୍ରାହ୍ମଣଙ୍କ ଦେହ ଶୀତେଇ ଉଠିଲା । ସେ ଅତି ସ୍ନେହରେ ତାକୁ ନେଇଯାଉଥିବା ବ୍ରାହ୍ମଣଙ୍କୁ କହିଲେ—"ଅତ୍ୟନ୍ତ ଆନନ୍ଦର କଥା, ଆପଣ ମୋ ଗାଈକୁ ପାଇ ନେଇ ଆସିଛନ୍ତି । ତାକୁ ଖୋଜି ଖୋଜି ମୁଁ ଅତି ବ୍ୟାକୁଳ ହୋଇପଡ଼ିଥିଲି ।"

ଏହା ଶୁଣି ଦାନ ଆଣି ଆସୁଥିବା ବ୍ରାହ୍ମଣ ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ବେଖାତିର ସ୍ୱରରେ କହିଲେ—"ବିପ୍ରବର ! ଆପଣ ଭାଙ୍ଗ ପିଇ ଦେଇଛନ୍ତି ନା କ'ଣ ? ମୋ ଧେନୁକୁ ଆପଣ ନିଜର ବୋଲି କିପରି କହୁଛନ୍ତି ?

ବ୍ରାହ୍ମଣ ଚମକି ପଡ଼ି କହିଲେ—"ବ୍ରାହ୍ମଣ ହୋଇ ତୁମେ ଏତେ ମିଛ କଥା କହୁଛ, ଏହା ଅତ୍ୟନ୍ତ ଲଜ୍ଜାର ବିଷୟ । ଏ ଧେନୁକୁ ଆପଣଙ୍କର ବୋଲି କିପରି କହୁଛନ୍ତି ? ଆପଣ ଏହାକୁ କେଉଁଠୁ କିଣିଲେ ?"

ସେହି ବ୍ରାହ୍ମଣ କ୍ରୋଧ ପ୍ରକାଶ କରି କହିଲେ—"ମୁଁ ମିଥ୍ୟା କହୁନାହିଁ, ଆପଣ ମିଥ୍ୟା କହୁଛନ୍ତି । ମୁଁ ଏହି ଧେନୁକୁ କ୍ରୟ କରି ନେଉ ନାହିଁ । ମୋତେ ମହାରାଜ ନୃଗ ଦାନ କରିଛନ୍ତି ।"

ଅଗ୍ନିହୋତ୍ରୀ ବ୍ରାହ୍ମଣ କ୍ରୋଧରେ କହିଲେ—"ଅନ୍ୟର ଧେନୁକୁ ଦାନ କରିବାକୁ ନୃଗ କିଏ ? ଚାଲନ୍ତୁ ଆଗେ ତାଙ୍କ ପାଖକୁ ଯିବା ?"

ସେହି ବ୍ରାହ୍ମଣ ମଧ୍ୟ ଦୃଢ଼ତାର ସହିତ କହିଲେ—ଚାଲନ୍ତୁ, ମୁଁ ଯିବାପାଇଁ ପ୍ରସ୍ତୁତ ଅଛି । ଏହାପରେ ଦୁହେଁ ସାଙ୍ଗ ହୋଇ ବାକ୍‌ଯୁଦ୍ଧ କରି କରି ମୋ ନିକଟରେ ଆସି ପହଞ୍ଚିଲେ ।

ମହାରାଜ ନୃଗ ଶ୍ରୀକୃଷ୍ଣଙ୍କୁ କହିଲେ—"ପ୍ରଭୋ ! ସେହି ଦାନ ଗ୍ରହଣ କରିଥିବା ବ୍ରାହ୍ମଣ ସଙ୍ଗେ ସଙ୍ଗେ ଆସି ମୋତେ ରାଗରେ କହିଲେ—"ରାଜନ୍ ! ଆପଣ ସତ୍ୟ ସତ୍ୟ କହନ୍ତୁ ଏହି ଧେନୁକୁ ଆପଣ ମୋତେ ଦାନ ଦେଇ ନାହାନ୍ତି ?"

ମୁଁ ତାଙ୍କୁ କପଟ ବା ମନା କରିପାରନ୍ତି, ମୁଁ କହିଲି—"ହଁ ବ୍ରହ୍ମନ୍ ! ମୁଁ ବର୍ତ୍ତମାନ ବିଧିପୂର୍ବକ ସଙ୍କଳ୍ପ ସହିତ ଏହି ଧେନୁକୁ ଆପଣଙ୍କୁ ଦାନ କରୁଛି ।"

ଏହା ଶୁଣି ସେହି ଧେନୁର ପ୍ରକୃତ ମାଲିକ କ୍ରୋଧରେ କହିଲେ—"ରାଜନ୍ ! ଚୋରି କରି ଗୋଦାନ କରିବାରେ କି ପୁଣ୍ୟ ହୁଏ ? ଏଥିରେ ତ ପାପ ହୁଏ ।"

ମୁଁ ତାଙ୍କୁ ହାତଯୋଡ଼ି କହିଲି—"ବ୍ରହ୍ମନ୍ ! ଆପଣ ଶାନ୍ତ ହୁଅନ୍ତୁ, ମୁଁ ତ ଆପଣଙ୍କ ଧେନୁକୁ ମୋ ଜାତସାରରେ ଚୋରିକରି ନାହିଁ ।"

ଏହା ଶୁଣି ଦୃଢ଼ତାର ସହିତ ସେହି ବ୍ରାହ୍ମଣ କହିଲେ—"କପଟ ନୁହେଁ ? ଏହାର ପ୍ରତ୍ୟକ୍ଷ ପ୍ରମାଣ ତ ମୋର ଏହି ଧେନୁ । ଏ ଧେନୁ ମୋର କିନ୍ତୁ ଆପଣ ତାକୁ ଚୋରିକରି ଦାନ କରିଅଛନ୍ତି ।"

ମୁଁ ତାଙ୍କୁ ବିନୀତ ଭାବରେ କହିଲି—ବ୍ରହ୍ମନ୍ ! ମୁଁ ଜାଣିଶୁଣି ତ ଚୋରିକରି ନାହିଁ । ଆପଣ କହୁଛନ୍ତି ଯେ ଏ ଧେନୁ ଆପଣଙ୍କର, ତେଣୁ ମୁଁ ଆପଣଙ୍କ କଥାରେ ଅବିଶ୍ୱାସ କରୁ ନାହିଁ । ଏବେ ମୁଁ ଅନୁସନ୍ଧାନ କରୁଛି, ଏହି ଧେନୁ ମୋ ଧେନୁମାନଙ୍କ ମଧ୍ୟକୁ ଆସିଲା କିପରି ?" ଏହା କହି ମୁଁ ଖବର ନେଲି । ଅନୁସନ୍ଧାନରୁ ସତକଥା ଜଣାପଡ଼ିଲା । ସେବକମାନେ କହିଲେ—"ମହାରାଜ ! ଭୁଲବଶତଃ ଏହି ଧେନୁ ଆମ ଗୋଗୋଷ୍ଠ ମଧ୍ୟରେ ଆସି ମିଶି ଯାଇଥିଲା । ଆମ୍ଭେମାନେ ତାହା ଆମ ଧେନୁ ବୋଲି ଭାବି ତାକୁ ସଜାସଜ କରିଦେଇଥିଲୁ । ଭୁଲ୍ ବଶତଃ ଏହି ଧେନୁ ଦାନ ସ୍ୱରୂପ ଦିଆଯାଇଅଛି ।"

ଏହା ଶୁଣି ମୋ ମୁଣ୍ଡ ଘୂରିଗଲା । ମୁଁ ଧର୍ମ ସଙ୍କଟରେ ପଡ଼ି ସେହି ଧେନୁର ମାଲିକ ବ୍ରାହ୍ମଣଙ୍କୁ କହିଲି—"ବ୍ରହ୍ମନ ! ମୋର ଭୁଲ୍ ହୋଇଯାଇଛି, ମୋତେ କ୍ଷମା କରନ୍ତୁ । ଏହି ଧେନୁ ବଦଳରେ ମୁଁ ଆପଣଙ୍କୁ ଏକଲକ୍ଷ ଧେନୁ ଦେଇ ଦେଉଛି ।"

ବ୍ରାହ୍ମଣ ରାଗିଯାଇ କହିଲେ—"ରାଜନ ! ଆପଣ କ'ଣ ମୋତେ ଲୋଭି ବୋଲି ଭାବୁଛନ୍ତି ନା କ'ଣ ? ମୁଁ କ'ଣ ଗୋରୁବେପାରି ହୋଇଛି ? ଏହି ଗାଈ ମୋର ଯଜ୍ଞୀୟ ଧେନୁ । ଆପଣ ଯଦି ଏହା ବଦଳରେ ମୋତେ ଆପଣଙ୍କ ରାଜ୍ୟ ବି ଦିଅନ୍ତି, ତାହାହେଲେ ମୁଁ ନେବି ନାହିଁ ।"

ଏହା ଶୁଣି ମୁଁ ଜବୁଥବୁ ହେଲି । ତାହା ପରେ ମୁଁ ସେହି ଦାନଗ୍ରହଣ କରିଥିବା ବ୍ରାହ୍ମଣଙ୍କୁ କହିଲି—"ବ୍ରହ୍ମନ ! ମୁଁ ଅଜ୍ଞାନରେ ଏହି ଅପରାଧ କରି ପକାଇଛି । ଆପଣ ଦୁଇଜଣଙ୍କ ମଧ୍ୟରୁ କେହିହେଲେ ମୋ ଉପରେ କୃପା କରନ୍ତୁ । ମୁଁ ଆପଣ ଉଭୟଙ୍କର ଶରଣ ନେଉଛି, ମୋତେ ଘୋର ନରକରେ ପଡ଼ିବାରୁ ବଞ୍ଚାନ୍ତୁ । ଯଦି ଧେନୁର ମାଲିକ ଏହା ପରିବର୍ତ୍ତେ ଏକଲକ୍ଷ ଧେନୁ ନେବାକୁ ଇଚ୍ଛା କରୁ ନାହାନ୍ତି, ତାହାହେଲେ ଆପଣ ଏକଲକ୍ଷ ଧେନୁ ମୋଠାରୁ ନେଇ ଉକ୍ତ ଧେନୁକୁ ସେ ମହାଶୟଙ୍କୁ ଦେଇ ଦିଅନ୍ତୁ ।"

ସେହି ବ୍ରାହ୍ମଣ କହିଲେ—"ରାଜନ୍ ! ଦେବାକୁ ତ ମୁଁ ଆପତ୍ତି କରୁ ନାହିଁ; କିନ୍ତୁ ଯେତେବେଳେ ମୋର ପ୍ରତିପକ୍ଷୀ ବ୍ରାହ୍ମଣ ଲକ୍ଷେ ଧେନୁ ବଦଳରେ ଏହାକୁ ଦେବାକୁ ରାଜି ନୁହଁନ୍ତି, ନିଜକୁ ବେପାରୀ ନୁହନ୍ତି ବୋଲି କହୁଛନ୍ତି, ସେତେବେଳେ ମୁଁ ତାଙ୍କର ଆଗରେ ଆପଣଙ୍କଠାରୁ ଏକଲକ୍ଷ ଧେନୁ ନେଇ ଏହାକୁ କିପରି ଦେଇ ପାରିବି ? ଆପଣ ତ ରାଜା, ଆପଣ ଚାହିଁଲେ ଆପଣଙ୍କ ଧେନୁ ସେମିତି ନେଇ ପାରନ୍ତି; କିନ୍ତୁ ଯଦି ଅଦଳବଦଳ କରି ମୂଲଚାଲ କରିବା କଥା ନେଇ ଆପଣ କଥାବାର୍ତ୍ତା କରନ୍ତି, ତାହାହେଲେ ଲକ୍ଷେ କ'ଣ, ଆହୁରି ଅଧିକ ଦଶ ସହସ୍ର ଧେନୁ ଦେଲେ ବି ମୁଁ ନେବି ନାହିଁ । ଆପଣ କ'ଣ ଚାହାନ୍ତି ବ୍ରାହ୍ମଣ ସମାଜରେ ମୋତେ ଅପମାନିତ କରାଇବେ ? ଆପଣ ଆପଣଙ୍କ ଧେନୁକୁ ରଖନ୍ତୁ, ମୁଁ ଯାଉଛି ।" ଏହା କହି ସେହି ବ୍ରାହ୍ମଣ ଅସନ୍ତୁଷ୍ଟ ହୋଇ ଧେନୁକୁ ଛାଡ଼ି ଚାଲିଗଲେ । ଅନ୍ୟ ବ୍ରାହ୍ମଣ ମଧ୍ୟ କିଛି ନ ନେଇ ଚାଲିଗଲେ । ଏହି ଘଟଣାରେ ମୁଁ ଅତ୍ୟନ୍ତ ମର୍ମାହତ ହେଲି । ସେହି ସମୟରେ ମୋର ମୃତ୍ୟୁ ଘଟିଲା । ଯମଦୂତଗଣ ମୋତେ ନେଇ ଯିବାକୁ ଆସିଲେ । ସେମାନେ ମୋତେ ଆଦରପୂର୍ବକ ଧର୍ମରାଜ ଯମଙ୍କ ପାଖକୁ ନେଇଗଲେ । ଯମ ମୋର ସ୍ୱାଗତ ସତ୍କାର କଲେ ଓ ଅତି ସ୍ନେହରେ କହିଲେ —"ରାଜନ୍ ! ଆପଣ ଏତେ ଅଧିକ ପୁଣ୍ୟ କରିଛନ୍ତି ଯେ ତାହାର କୌଣସି ସୀମା ନାହିଁ ।

ଆପଣଙ୍କୁ ଅନନ୍ତକାଳ ପର୍ଯ୍ୟନ୍ତ ଅକ୍ଷୟ ଦିବ୍ୟତେଜୋମୟ ଲୋକ ପ୍ରାପ୍ତି ହେବ । ପୁଣି ସହିତ ଆପଣଙ୍କର କିଛି ପାପ ମଧ୍ୟ ରହିଛି । ସେ ପାପ ଆପଣଙ୍କ ପୁଣ୍ୟ ତୁଳନାରେ କିଛି ବି ନୁହେଁ । ତାହା ସୁମେରୁ ନିକଟରେ ସୋରିଷ ଭଳି । ତଥାପି ଆପଣଙ୍କ ପାପ ଓ ପୁଣ୍ୟ ଉଭୟର ଫଳ ଭୋଗ କରିବାକୁ ପଡ଼ିବ । ତେଣୁ ଆପଣ ପ୍ରଥମେ ପାପର ଫଳ ଭୋଗ କରିବେ କି ପୁଣ୍ୟଫଳ ଭୋଗ କରିବେ କୁହନ୍ତୁ ? ଆପଣ ଯେପରି ଆଜ୍ଞା କରିବେ, ମୁଁ ସେହିପରି ବ୍ୟବସ୍ଥା କରିବି ।”

ମୁଁ ମନେ ମନେ ଚିନ୍ତାକଲି—“ପ୍ରଥମେ ସୁଖ ଭୋଗ କରି ପରେ ଦୁଃଖ ଭୋଗ କରିବା ଅତ୍ୟନ୍ତ କଷ୍ଟପ୍ରଦ । ପ୍ରଥମେ ସୁନ୍ଦର ସ୍ୱାଦଯୁକ୍ତ ପଦାର୍ଥ ଖାଇ ପରେ ଖରାପ ଜିନିଷ ଖାଇଲେ ମନ ଖରାପ ହୋଇଯାଏ ଓ ବଡ଼ କଷ୍ଟ ହୁଏ । ତେଣୁ ଯଦି ଉଭୟ ପ୍ରକାର ଖାଦ୍ୟ ଖାଇବା ଅନିବାର୍ଯ୍ୟ, ତାହା ହେଲେ ପ୍ରଥମେ ଖରାପ ଅସ୍ୱାଦୁ ଜିନିଷ ଖାଇ ପରେ ସମସ୍ତ ମଧୁର ସ୍ୱାଦିଷ୍ଟ ଖାଦ୍ୟ ଖାଇବା ଭଲ । ସେହିପରି ପ୍ରଥମେ ଦୁଃଖ ଭୋଗି ତାହାପରେ ସୁଖ ଭୋଗ କରିବା ଉଚିତ ।” ଏହି ପ୍ରକାର ଚିନ୍ତା କରି ମୁଁ ଯମରାଜଙ୍କୁ କହିଲି, “ଦେଖନ୍ତୁ ଦେବ ! ପ୍ରଥମେ ମୁଁ ପାପ କର୍ମର ଫଳ ଭୋଗ କରିବାକୁ ଚାହୁଁଛି । ଆପଣ ଏପରି ବ୍ୟବସ୍ଥା କରନ୍ତୁ ଯେ, ମୋର ପ୍ରଥମେ ମନ୍ଦ କର୍ମଫଳ ଭୋଗ ହୋଇଯାଉ ।”

ଯମରାଜ କହିଲେ—“ତାହା ହେଲେ ଠିକ୍ ଅଛି, ‘ଗିରସ୍ୱ’ ଅର୍ଥାତ୍ ମନ୍ଦକର୍ମ ଫଳ ପ୍ରଥମେ ଭୋଗ କରନ୍ତୁ ।”

ଯମରାଜଙ୍କର ‘ଗିରସ୍ୱ’ ଏହି କଥାର ସଙ୍କେତ ତାତ୍ପର୍ଯ୍ୟ ଥିଲା ଯେ, ମୁଁ ଶୀଘ୍ର ପୃଥିବୀରେ ଯାଇ ଜନ୍ମଗ୍ରହଣ କରେଁ, କିନ୍ତୁ ମୁଁ ସଙ୍ଗେ ସଙ୍ଗେ ପୃଥିବୀରେ କୃକଳାସ ଗିରଗିଟ୍ ବା ପୋହଳା ଏଣ୍ଡୁଅ) ହୋଇ ଜନ୍ମ ହେଲି । ପାପ ଦୁଇ ପ୍ରକାରରେ ହୋଇଥାଏ । ଗୋଟିଏ ଜ୍ଞାତସାରରେ ଓ ଅନ୍ୟଟି ଅଜ୍ଞାତ ସାରରେ । ମୋର ଅଜ୍ଞାତ-ସାରରେ ପାପ ହୋଇଥିଲା । ଏଥିପାଇଁ ମୋତେ ପୋହଳା ଏଣ୍ଡୁଅ ଯୋନିରେ ଜନ୍ମଗ୍ରହଣ କରିବାକୁ ପଡ଼ିଥିଲେ ମଧ୍ୟ କୌଣସି କଷ୍ଟ ହେଲାନାହିଁ । କେବଳ ସେତିକି ନୁହେଁ, ମୋତେ ପୁଣ୍ୟ କ୍ଷେତ୍ରରେ ନିବାସ ମିଳିଥିଲା । ଛଅମାସ ପର୍ଯ୍ୟନ୍ତ ମୁଁ ଗଡ଼ମୁକ୍ତେଶ୍ୱରର ଗଙ୍ଗାଙ୍କର ଏକ କୁଣ୍ଡରେ ରହିଥିଲି ଓ ଏବେ ଛଅମାସ ହେବ ଏହି ପରମପୁଣ୍ୟମୟୀ ଦ୍ୱାରକାପୁରୀରେ ରହୁଛି । ଏହି ପୋହଳା ଏଣ୍ଡୁଅ ହୋଇ ଜନ୍ମଲାଭ କରି ମୋତେ କୌଣସି କଷ୍ଟ ହୋଇ ନାହିଁ । ଏହି ଶରୀରରେ ବି ମୁଁ ସର୍ବଦା ଆପଣଙ୍କୁ ଚିନ୍ତାକରି ଆସୁଛି । ମୁଁ ପୂର୍ବରୁ ବ୍ରାହ୍ମଣଙ୍କର ଭକ୍ତ ଥିଲି, ଆପଣଙ୍କର ସେବା କରୁଥିଲି ଓ ଦାନଧର୍ମ କରି ଦିନ କାଟୁଥିଲି । ଏହିସବୁ ପୁଣ୍ୟ ପ୍ରଭାବରୁ ମୋର ସମସ୍ତ କଥା ସ୍ମରଣ ଅଛି । ପୁଣ୍ୟ କ୍ଷେତ୍ରରେ ବାସ ମିଳିବା ଓ ସମସ୍ତ ଦାନ ଧର୍ମ ପୁଣ୍ୟ ଓ ଶୁଭକର୍ମର ଫଳ ମୋତେ ଏହିପରି ମିଳିଲା ଯେ, ଆପଣଙ୍କୁ

ଦେବଦୁର୍ଲଭ ଦର୍ଶନ ମୁଁ ପାଇପାରିଲି । ଯଦି ପୁଣ୍ୟ ଲୋକକୁ ଯାଇ ସୁଖ ଭୋଗ କରୁଥାଆନ୍ତି, ତାହାହେଲେ ସେଠାରେ ଅପ୍ସରାମାନେ ମିଳିଥାଆନ୍ତେ ଓ ମୁଁ ସମସ୍ତ ପ୍ରକାର ସ୍ୱର୍ଗସୁଖ ଭୋଗ କରୁଥାଆନ୍ତି । ସଂସାର ସାଗରରୁ ସବୁ ସମୟ ପାଇଁ ଉଦ୍ଧାର କରିବା ବାଲା ଆପଣଙ୍କ ପାଦପଦ୍ମ ଦର୍ଶନ ତ ମୋତେ ମିଳିପାରି ନଥାନ୍ତା । ସେହି ସ୍ୱର୍ଗୀୟ ଭୋଗଠାରୁ ଏହି ଘୋଡ଼ିଲା ଏଣ୍ଡୁଅ ଜନ୍ମ କୋଟିଗୁଣରେ ଶ୍ରେଷ୍ଠ, ଯଦ୍ଦ୍ୱାରା କି ସଂସାର ପାଶକୁ ଛେଦନକାରୀ ଆପଣଙ୍କ ଦର୍ଶନ ମୋତେ ମିଳିଗଲା ।

ଭଗବାନ୍ ଦୁଃଖ ପ୍ରକାଶ କରି କହିଲେ—"ରାଜନ୍ ! ଏତେ ବଡ଼ ଧର୍ମାତ୍ମା ହୋଇ ମଧ୍ୟ ଆପଣଙ୍କୁ ଏତେ କଷ୍ଟ ଭୋଗିବାକୁ ପଡ଼ିଲା । ଆପଣଙ୍କୁ କାହିଁକି ଘୋଡ଼ିଲା ଏଣ୍ଡୁଅ ଯୋନିରେ ଜନ୍ମଗ୍ରହଣ କରିବାକୁ ପଡ଼ିଲା ?"

ମହାରାଜ ନୃଗ କହିଲେ—"ଜନ୍ମ ତ ସବୁ ଏକାଭଳି । ସବୁ ଜନ୍ମରେ ଆହାର, ନିଦ୍ରା ଓ ମୈଥୁନ ସୁଖ ମିଳିଥାଏ । ବାସ୍ତବରେ ବିପତ୍ତି ତ ଏହି ଯେ, ଆପଣଙ୍କ ଚରଣ କମଳକୁ ଭୁଲିଯିବା ଓ ବାସ୍ତବ ସୁଖ ହେଉଛି ସର୍ବଦା ଆପଣଙ୍କ ଚିନ୍ତା କରିବା । ଆପଣଙ୍କ କୃପାରୁ ଆଜି ପର୍ଯ୍ୟନ୍ତ ମୋର ପୂର୍ବ ସ୍ମୃତି ନଷ୍ଟ ହୋଇ ନାହିଁ । ଆପଣ ପରମାତ୍ମା ଅଟନ୍ତି । ବିଷୟୀ ମନୁଷ୍ୟ ଆପଣଙ୍କୁ କେବେହେଲେ ପାଇପାରେ ନାହିଁ । ଯାହାଙ୍କର ବିଶୁଦ୍ଧ ଚିତ୍ତ ହୋଇପାରିଛି, ସେହି ଯୋଗୀଜନହିଁ ନିଜର ଉପନିଷଦ ରୂପକ ଦିବ୍ୟଦୃଷ୍ଟିରେ ଆପଣଙ୍କୁ ଲାଭ କରିଥାନ୍ତି । ସେମାନେହିଁ ନିରନ୍ତର ନିଜ ନିଜର ହୃଦୟକମଳ ମଧ୍ୟରେ ଆପଣଙ୍କର ତେଜୋମୟ ରୂପକୁ ଧ୍ୟାନ କରୁଥାଆନ୍ତି । ହେ ଅଧୋକ୍ଷଜ ! ମୁଁ ତ ଆଶ୍ଚର୍ଯ୍ୟ ହେଉଛି ଯେ, ମୋ ଭଳି ମନ୍ଦମତିର ସମ୍ମୁଖରେ ଆପଣ କିପରି ଆବିର୍ଭାବ ହେଲେ ? ମୋର ମନ ତ ଅନେକ ବିଷୟ ଇଚ୍ଛାରେ ସର୍ବଦା ମୋତେ ଅନ୍ଧ, ବୁଦ୍ଧିହୀନ ଓ କର୍ତ୍ତବ୍ୟା-କର୍ତ୍ତବ୍ୟ ବିମୂଢ଼ କରି ରଖିଅଛି । ମୋଭଳି ବ୍ୟକ୍ତି ପକ୍ଷେ ତ ଆପଣଙ୍କର ଦର୍ଶନ ମିଳିବା ସମ୍ଭବ ନୁହେଁ । ଯାହାଙ୍କର ସଂସାର ଚକ୍ରରୁ ନିବୃତ୍ତି ମିଳିଛି, ସେହିମାନେହିଁ ଆପଣଙ୍କ ଦର୍ଶନ ପାଇ ପାରନ୍ତି ।"

ଏହା ଶୁଣି ଭଗବାନ ହସି ହସି କହିଲେ—"ରାଜନ୍ ! ନିରନ୍ତର ଦାନ ଧର୍ମ କରିବା ଫଳରେ ଆପଣଙ୍କ ବୁଦ୍ଧି ଅତ୍ୟନ୍ତ ବିମଳ ହୋଇ ଯାଇଛି, ତେଣୁ ଆପଣ ଏତେ ରହସ୍ୟପୂର୍ଣ୍ଣ କଥା କହୁଅଛନ୍ତି ।"

ମହାରାଜା ନୃଗ ହାତଯୋଡ଼ି କରି କହିଲେ—"ହେ ଦେବାଧିଦେବ ! ମୁଁ ଆପଣଙ୍କୁ ଦର୍ଶନ କରି କୃତାର୍ଥ ହେଲି । ହେ ଜଗନ୍ନାଥ ! ଆପଣ ମୋ ଉପରେ ବଡ଼ କୃପା କରିଛନ୍ତି । ହେ ଗୋବିନ୍ଦ ! ମୁଁ ଆପଣଙ୍କୁହିଁ ପ୍ରତୀକ୍ଷା କରିଥିଲି । ହେ

ପୁରୁଷୋତ୍ତମ ! ଆପଣ ମୋତେ ନିଜର କରକମଳରେ ସ୍ପର୍ଶକରି ମୋର ସମସ୍ତ ପାପତାପ ନଷ୍ଟ କରିଦେଲେ । ହେ ନାରାୟଣ ! ଆପଣ ନିତ୍ୟ ଶୁଦ୍ଧ-ବୁଦ୍ଧ ସ୍ୱରୂପ ଅଟନ୍ତି । ହେ ହୃଷିକେଶ ! ଆପଣ ମାୟା ନାଶକାରୀ ଅଟନ୍ତି । ହେ ପୁଣ୍ୟଶ୍ଳୋକ ! ଆପଣଙ୍କ ଶରଣ ପଶିଲେ କୌଣସି ପ୍ରକାରର ଶୋକସନ୍ତାପ ରହେ ନାହିଁ । ହେ ଅଚ୍ୟୁତ ! ଆପଣ ଭକ୍ତଙ୍କୁ ସୁଖଦେବା ପାଇଁ ହିଁ ଅବତାର ହୋଇଛନ୍ତି । ହେ ଅବିନାଶିନ୍ ! ଆପଣଙ୍କର ଲୀଳା ନିତ୍ୟ । ହେ ଶ୍ରୀକୃଷ୍ଣ ! ଆପଣ ନିଜର ଆଶ୍ରିତଙ୍କୁ ନିଜ ଆଡ଼କୁ ଆକର୍ଷିତ କରନ୍ତି । ହେ ନାଥ ! ମୁଁ ଏବେ ଦେବଲୋକକୁ ଗମନ କରୁଛି । ସେଠାରେ ମୁଁ ମୋର ପୁଣ୍ୟକର୍ମର ଫଳ ଭୋଗ କରିବି । ଆପଣ ମୋତେ ଯିବାକୁ ଆଜ୍ଞା ଦିଅନ୍ତୁ ଓ ତା ସଙ୍ଗେ ସଙ୍ଗେ ଏକ ଭିକ୍ଷା ମଧ୍ୟ ଦିଅନ୍ତୁ ।"

ଭଗବାନ୍ ପଚାରିଲେ—"କୁହନ୍ତୁ, ଆପଣଙ୍କର କ'ଣ ଆବଶ୍ୟକ ?"

ମହାରାଜ ନୃଗ କହିଲେ—"ହେ ଅଶରଣର ଶରଣ ! ମୁଁ ଆପଣଙ୍କୁ ଏତିକି ମାଗୁଛି ଯେ, କର୍ମାନୁସାରେ ମୋତେ ଶ୍ରେଷ୍ଠ ନିକୃଷ୍ଟ, ଉତ୍ତମ, ଅଧମ ଯେକୌଣସି ଯୋନିରେ ଜନ୍ମ ଦିଅନ୍ତୁ ପଛକେ, ମୁଁ ସ୍ୱର୍ଗ ନରକ ଯେଉଁଠାରେ ରହୁଥାଏ ପଛକେ ମୋର ଚିତ୍ତ ଯେପରି ସର୍ବଦା ଆପଣଙ୍କ ଚରଣରେ ରହେ ।"

ଭଗବାନ୍ କହିଲେ—"ଏବମସ୍ତୁ, ତାହା ହିଁ ହେବ ।"

ସୂତ କହିଲେ—"ମୁନିଗଣ ! ମହାରାଜ ନୃଗ ଏହା ଶୁଣି ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ସାଷ୍ଟାଙ୍ଗ ପ୍ରଣାମ କରି କହିଲେ—"ହେ ସମସ୍ତ ବିଶ୍ୱବ୍ରହ୍ମାଣ୍ଡର ଉତ୍ପତ୍ତିର ସ୍ଥଳ ! ହେ ପରଂବ୍ରହ୍ମ ସ୍ୱରୂପ ! ହେ ଅନନ୍ତ ଶକ୍ତିସମ୍ପନ୍ନ ! ହେ ନିତ୍ୟାନନ୍ଦ ସ୍ୱରୂପ ! ହେ ବାସୁଦେବ ! ଆପଣଙ୍କ ଚରଣାରବିନ୍ଦରେ ମୋର ପ୍ରଣାମ ।" ଏହା କହି ଦେବତା ହୋଇ ଯାଇଥିବା ମହାରାଜ ନୃଗ ଭଗବାନଙ୍କୁ ତିନିଥର ପରିକ୍ରମା କଲେ । ତାହାପରେ ତାଙ୍କ ଚରଣରେ ଶିର ରଖି, ତାଙ୍କଠାରୁ ଆଜ୍ଞାପାଇ ସମସ୍ତେ ଦେଖୁ ଦେଖୁ ଦିବ୍ୟବିମାନରେ ବସି ଦିବ୍ୟଲୋକକୁ ଚାଲିଗଲେ । ଏହାପରେ ଏହି ବୃତ୍ତାନ୍ତକୁ ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ସମସ୍ତେ ଚକିତ ଦୃଷ୍ଟିରେ ଭଗବାନଙ୍କ ମୁଖାରବିନ୍ଦକୁ ଚାହିଁବାକୁ ଲାଗିଲେ । ଭଗବାନ ସମସ୍ତଙ୍କ ଭାବ ବୁଝିଗଲେ । ସେମାନେ ଏହି ଘଟଣାରୁ ଯେଉଁ ଯେଉଁ ଶିକ୍ଷା ଗ୍ରହଣଯୋଗ୍ୟ ତାହା ନିଜ ନିଜର ପୁତ୍ର ଓ ପରିବାରବର୍ଗଙ୍କୁ ଉପଦେଶ ଦେଲେ । ସେହି ବିଷୟରେ ମୁଁ ଆପଣମାନଙ୍କୁ ପରବର୍ତ୍ତୀ ପ୍ରସଙ୍ଗରେ କହିବି ।"

## ଛପ୍ପଯ଼

କରତ କୃଷ୍ଣ କର ପରଶ ତୁରତ ସୁର ତନୁ ସୋ ଧାରେଯା ।
ପୃଚ୍ଛେଯା ପରିଚଯ଼ ଶ୍ୟାମ କହେ ହୋଁ ଦାସ ତହ୍ମାରେ ।।
ନୃପ ଇକ୍ଷ୍ୱାକୁ କୁମାର ନାମ ନୃଗ ମେରେ ସ୍ୱାମୀ ।
କରୁଁ ଧେନୁ ଜତ ଦାନ ଆପୁ ତୋ ଅନ୍ତର୍ଯ୍ୟାମୀ ।।
ଦ୍ୱିଜ ଗୈଯ଼ା ଇକ ଭୁଲ ତେଁ, ଦୂସର ଦ୍ୱିଜ କୁଁ ହୋଁ ଦଇ ।
ଦେଯଉ ଦ୍ୱିଜ ମମ ଢିଂଗ ଲଡ଼େ, ତାତେଁ ମମ ଦୁରଗତି ଭଇ ।।